**ଜଙ୍ଗଲର ଜମାନବନ୍ଦୀ**

ରାଧାମୋହନ ମହାପାତ୍ର
'ପ୍ରତିଭାନୀ' ୧୪୭, ବୁଦ୍ଧେଶ୍ୱରୀ ପୋଷ୍ଟଅଫିସ୍ ଲେନ୍, ଭୁବନେଶ୍ୱର-୬,
ମୋ ନଂ-୯୮୬୧୧୮୯୯୩୬

ପ୍ରକାଶକ: ଦକ୍ଷ ବୁକ୍ସ, କଟକ
ମୁଦ୍ରଣ: ଜଗନ୍ନାଥ ପ୍ରୋସେସ୍ ପ୍ରା. ଲି, କଟକ

Published by
Dakshya Books
(A unit of Dakshya Venture Pvt. Ltd.)
Flat No-305, 3rd Floor,
Sidhivinayak Residency, Mahadev Nagar, Lane-2,
Jharpada, Bhubaneswar, Khurdha, Odisha
Mob.: 9778311533
E-mail: dakshyaodisha@gmail.com



ISBN - 978-93-84902-46-9

Printed at Jagannath Process Pvt. Ltd
Dagarapada, Cuttack-02





**JANGALARA JAMANBANDI**

*NOVEL*

by Radhamohana Mohapatra

First Edition : 1994

Second Edition: **2017**

Price : **99/-**

# ପଦେ

ଯାହା ଲେଖୁଛି, ସତ୍ୟ ଲେଖୁଛି, ସେତେବେଳେ ମୁଁ ଲେଖକ ନଥିଲି, ଥିଲି ବନ୍ଧୁକଧରା ଶିକାର ଅନ୍ୱେଷୀ ଜଣେ ଉଦାମ ବନଚାରୀ । ଘଞ୍ଚ ଅରଣ୍ୟ ଭିତରେ ପାଦରେ ଘୂରିବା ମୋର ଥିଲା ପ୍ରବଳ ଝୁଙ୍କ । ସେତେବେଳେ ବନବନାନୀର ଘନଗହଳ ଭିତରେ ଦିନ ରାତିର ତଫାତ୍ ବୁଝୁନଥିଲି । ବନାକର୍ଷଣ ମୋତେ ବାନ୍ଧି ରଖିଥିଲା, ଅରଣ୍ୟଚାରଣ ମୋର ପ୍ରିୟାଦପ୍ରିୟ ଥିଲା । କିନ୍ତୁ ଘଟଣାର ପ୍ରବହମାନ ପ୍ରକ୍ରିୟା ଓ ପରିସ୍ଥିତିର ପରିବର୍ତ୍ତନରେ ପରମେଶ୍ୱର ମୋ ହାତରୁ ବନ୍ଧୁକ ଛଡାଇନେଇ କଲମଟିଏ ଧରାଇ ଦିଅନ୍ତି; ଜଙ୍ଗଲକୁ ଆଖି ଆଗରୁ ଦୂରେଇ ନେଇ ଥୋଇଦିଅନ୍ତି କାଗଜର ବିସ୍ତୀର୍ଣ୍ଣ ବନାନୀଟିଏ- କଲମକୁ ସେଥିରେ ପରୀକ୍ଷା କରିବାକୁ ଯୋଗାଇ ଦିଅନ୍ତି ଲେଖନୀର କଳାକାରସାଦୀ ଶବ୍ଦଗୋଳା । ଜାଣେନା ମୋ ପରୀକ୍ଷାଗାରରେ ମୁଁ କେତେ ଦୂର ସଫଳ । ତଥାପି ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ମୋ ପରୀକ୍ଷାଗାରରେ ନିମଜ୍ଜିତ ରହିବି ବୋଲି ସଂକଳ୍ପ କରିଛି । ଉତ୍ତୀର୍ଣ୍ଣତାର ଆଶା ରଖିନି, ବିଫଳତାର ଗ୍ଲାନି ମନକୁ ସ୍ପର୍ଶ କରିନି, ଗୋଟାଏ ଆନ୍ତରିକ ଆକର୍ଷଣରେ ଯେମିତି ସମ୍ମୋହିତ । ଆଶା ପାଠକେ 'ଜଙ୍ଗଲର ଜମାନବନ୍ଦୀ'ର ଏହି ଦ୍ୱିତୀୟ ସଂସ୍କରଣକୁ ମଧ୍ୟ ପୂର୍ବବତ୍ ଗ୍ରହଣ କରିବେ ।

- **ରାଧାମୋହନ**

**ଶ୍ରୀମାନ୍ ପ୍ରେମ୍ ସାଗର ତିୱାରୀ**
**ବୁର୍ଲା, ସମ୍ବଲପୁର**

**ସଖା ପ୍ରେମ୍,**

ତମେ ଜଣେ ବନପ୍ରେମୀ ମଣିଷ । ବନସ୍ତର ଆକର୍ଷଣ ତମକୁ ବାୟା କରିଛି । ଜାଙ୍ଗଲିକ ପରିବେଶରେ ତୁମେ ହୋଇଯାଅ ତନ୍ମୟ ଓ ତଲ୍ଲୀନ । ନିରନ୍ତର ଜଙ୍ଗଲ ଭିତରେ ବାସ କରିବାକୁ ତମେ ବ୍ୟାକୁଳ । ଏଇ ଉପନ୍ୟାସରେ ବର୍ଣ୍ଣିତ ପ୍ରତ୍ୟେକ ଘଟଣାର ପ୍ରତ୍ୟକ୍ଷଦର୍ଶୀ ତମେ । କାୟା ସହିତ ଛାୟା ଭଳି ବନସ୍ତର ଘନ ପାଦପଘେରା ବନ୍ଧୁର ପଥରେ ବନ୍ୟ ପଶୁପକ୍ଷୀମାନଙ୍କୁ ସାମ୍ନା କରି ତମେ ମୋ ସହିତ ବାଟ ଚାଲିଛ । ତମର ଅଫୁରନ୍ତ ଉତ୍ସାହ ଓ ଅପୂର୍ବ ସାହସ ଲାଗି ବହୁତ ବଧାଇ ଜଣାଉଛି । ଆଜି ଏହି ପୁସ୍ତକର ଉନ୍ମୋଚନ ଅବସରରେ ତମର ଉପସ୍ଥିତି ମୋ ପାଇଁ ଅବର୍ଣ୍ଣନୀୟ ଆନନ୍ଦର ଉତ୍ସ । ସେ ବେଳର ବନଭ୍ରମଣର ଅପ୍ରମିତ ଆନନ୍ଦ ଓ ଉନ୍ମାଦ ଆଜି ଜଙ୍ଗଲ ପରିସର ମଧ୍ୟରୁ ବାହାରି ଆସି ସତେ ଯେପରି ପ୍ରେକ୍ଷାଳୟର ଚାରିକାନ୍ଥ ମଧ୍ୟରେ କେନ୍ଦ୍ରୀଭୂତ ହୋଇପଡିଛି । ଏଇଭଳି ଜଣେ ହୃଦୟର ଅନ୍ତରଙ୍ଗ, ଅବିଚ୍ଛେଦ୍ୟ ବନ୍ଧୁଙ୍କୁ ମୁଁ ଖାଲି ସ୍ମରଣ କରୁନାହିଁ, ଆମର ସେଇ ଅତୀତର ସ୍ମାରକୀ ଭାବେ ତମକୁ ବି ପାଠକମାନଙ୍କ ସାମ୍ନାରେ ଟୋଳି ଧରିବାର ଲୋଭ ସମ୍ବରଣ କରିପାରୁନାହିଁ ।

-ମୋହନ

ସେଦିନ ମୋ କାର୍ ପୋର୍ଟିକୋ ତଳେ ପ୍ରବେଶ କଲାମାତ୍ରେ ମୋ ସାନ ଝିଅ ଗୁଡୁନା ଗାଡ଼ି ହର୍ଣ୍ଣ ଶୁଣି ପାଖକୁ ଦୌଡ଼ି ଆସିଲା ଏବଂ ଆହ୍ଲାଦିତ ହୋଇ କହିଲା- "ବାପା, ବାବା, ଗଙ୍ଗାର ଦି'ଟା ଛୁଆ ହୋଇଛି। ଅବି ଫୋନ୍ ଆସିଥିଲା ତୁମ ପାଖକୁ। ମୁଁ ଫୋନ୍ ଧରିଲି। ଯୋଗେନ୍ଦ୍ର ମଉସା ଖବରଟି ତୁମକୁ ଜଣାଇ ଦେବାକୁ କହିଛନ୍ତି।... ବାପା, ବାଣା, ତୁମେ ଭାରି ଖୁସି ନା? ତୁମେ ପରା କୁହ, ଗଙ୍ଗା ଆଉ ବନରାଜ ଆମର ବୋଲି! ବାପା ଚାଲ, ସେ କୁନି ଛୁଆ ଦି'ଟାକୁ ଆମ ଘରକୁ ନେଇ ଆସିବା..."

ଏପରି ଏକ ଶୁଭ ସମ୍ବାଦ ମୁଁ ପ୍ରତି ମୁହୂର୍ତ୍ତରେ ଆଶା କରୁଥିଲି। ମୁଁ କାର୍‌ର ଡୋର୍ ବନ୍ଦ କରି ତାଲା ପକାଇବା ଅବସରରେ ଗୁଡୁନା ତା ଶିଶୁ ସୁଲଭ ଲଳିତ ସ୍ୱରରେ ଛୁଆ ଦି'ଟା ପାଇଁ ଅଳି କରି ଚାଲିଥିଲା।

ସମ୍ବାଦଟିରେ ନିଶ୍ଚୟ ମୋ ପାଇଁ ଆନନ୍ଦ ଓ ଆଶ୍ୱସନାର ବାର୍ତ୍ତା ଥିଲା। ମୋଠୁଁ ଆସ୍ତିବାଚକ ଉତ୍ତର ଆଶା କରି ଗୁଡୁନା ତା ଅଳି ପୁନଃ ପୁନଃ ଜାରି ରଖୁଥାଏ। ଅଝଟିଆ ଗେହ୍ଲାଝିଅ ଗୁଡୁନା ମୋର।

ମୁଁ ହସି ହସି କହିଲି- " ସେ ଛୁଆଙ୍କୁ ଆମେ କ'ଣ ଘରେ ପୋଷି ପାରିବା? ଏଠି ସେମାନଙ୍କ ପାଇଁ ସୁବିଧା କାହିଁ? ଆମ ଡେସାନ୍ 'ହନି' ସଙ୍ଗେ ସେମାନେ କ'ଣ ମିଳି ମିଶି ଚଳି ପାରିବେ? ସେମାନେ ପରା ବାଘ ଛୁଆ! ଏମିତି ଘରେ ପୋଷି ହୁଏ ନାହିଁ। ସେମାନଙ୍କ ପାଇଁ ପରିବେଶ ଅଲଗା। ବାଘ ବଡ଼ ହେଲେ ଭାରି ଭୟଙ୍କର। ତା' ସ୍ଥାନ ଆମ ମଣିଷ ସମାଜରେ ନୁହେଁ, ଜଙ୍ଗଲରେ। ଜଙ୍ଗଲର ରାଜା ସେ।"

ଗୁଡୁନା ନଛୋଡ଼ବନ୍ଧା ନ୍ୟାୟରେ କହିଲା- "ବାପା ତୁମେ କ'ଣ ଭୁଲି ଯାଉଛ ବାଘୁଣୀ ରାଣୀ ରଞ୍ଜୁର କାହାଣୀ? ତୁମେ ପରା ରଞ୍ଜୁକୁ ବହୁତ ଭଲ ପାଅ! ତା' ଫଟୋ ଆଲ୍‌ବମରୁ କାଢ଼ି ବାରମ୍ବାର ଦେଖ। ତା' କଥା ସବୁ ବେଳେ ମନେ ପକାଅ। ସତରେ

ରଞ୍ଜୁ କେତେ ଭଲ ଆଉ ସୁନ୍ଦରୀ ! ସର୍କସରେ ସେ ଦିନ ମୁଁ ତାକୁ ସାଉଁଳି ଥିଲି । ସେ ମୁଣ୍ଡ ତଳକୁ କରି ଲାଞ୍ଜ ଲହ ଲହ କଲା । ବାପା, ତୁମେ ମୋତେ ଭୁଲାଇ ଦେଉଛ !"

ଗୁଡୁନାର ଦାବି ମିଶ୍ରିତ ଶିଶୁ ସରଳ ଯୁକ୍ତିକୁ ମୁଁ ମନେ ମନେ ସମର୍ଥନ କରୁଥିଲି । ଟିକିଏ ଚିନ୍ତା କରି ବୁଝାଇବା ଢଙ୍ଗରେ କହିଲି- "ସବୁ ବାଘ ରଞ୍ଜୁ ନୁହନ୍ତି ମା' । ରଞ୍ଜୁ ମହାବଳ ବାଘୁଣୀ । ତାକୁ ବହୁ ଯତ୍ନ ଓ ସାବଧାନରେ ପାଳିଛନ୍ତି ମାଲିକ ବାଙ୍ଗରପ୍ପା ଏକ ଭିନ୍ନ ପରିବେଶ ଭିତରେ । ଝିଅଠୁଁ ଆହୁରି ଅଧିକ ସ୍ନେହ କରନ୍ତି ତାକୁ । ସେଥିପାଇଁ ରଞ୍ଜୁ ହୋଇଛି ଭାରତ ସର୍କସର ରାଣୀ । ଆମର ଏ କିନ୍ତୁ ଚିତା ବାଘର ଛୁଆ, ଚିଡିଆଖାନାରେ ଜନ୍ମିତ । ଘର ପରିବେଶ ସେମାନଙ୍କୁ ପୋଷାଇବ ନାହିଁ । ବିପଦ ମଧ । ନିଆଁ ସଙ୍ଗେ ଖେଳିବା ଯାହା, ଘରେ ବାଘ ପୋଷିବା ତାହା । କେତେବେଳେ କୋଉ କାଣ୍ଡ କରି ବସିବ, କିଏ ସମ୍ଭାଳିବ ? ସେଦିନ ଟିକିଏ ଅସାବଧାନତା ଯୋଗୁଁ ରଞ୍ଜୁ ମଧ ସର୍କସରୁ ଖସି ଆସିଥିଲା । ବାଙ୍ଗରପ୍ପାଙ୍କୁ ଦାୟୀ କରାଯାଇ ଗିରଫ କରାଗଲା । ପୋଲିସ ତାଙ୍କୁ ବହୁ ହରକତ କଲା । ସର୍କସର ଶୋ' ବାତିଲ କରାଯାଇ ତାଙ୍କୁ ଓଡ଼ିଶା ଛାଡ଼ିବାକୁ ନିର୍ଦ୍ଦେଶ ହୋଇଥିଲା । ଏଣୁ ଜାଣି ଜାଣି ଆମେ ଏତେ ବଡ ଦାୟିତ୍ୱର ବୋଝ କାହିଁକି ମୁଣ୍ଡାଇବା ?"

ଆଠ ବର୍ଷର ବାଳିକା ମୋ ଝିଅ ଗୁଡୁନା- ବୁଦ୍ଧିମତୀ ଓ ମେଧାବିନୀ । ଷ୍ଟୁଆର୍ଟରେ ପଢୁଛି । ବୟସ ଓ ଶିକ୍ଷା ତୁଳନାରେ ଅନେକ ବିଷୟ ଜାଣେ । ଖବର କାଗଜ ଓ ପତ୍ରିକା ପଢ଼େ, ଟି.ଭି. ଦେଖେ । ଟି.ଭି.ର ଦୈନିକ କାର୍ଯ୍ୟସୂଚୀ ତା ଜିହ୍ୱାଗ୍ରେ । ମୁଁ ଘରେ ରହିବା ସମୟରେ ବିଭିନ୍ନ କଥାନେଇ ଆଳାପ ଆଲୋଚନା କରେ । ସୁଖ ଲାଗେ ମୋତେ ।

ଏବେ ବନ୍ୟଜନ୍ତୁ ଶିକାର କରିବା, ଘରେ ପୋଷିବା, ପାଳିବା ଆଇନ ବିରୁଦ୍ଧ; ସମ୍ପୂର୍ଣ୍ଣ ନିଷିଦ୍ଧ । ଏଥିପାଇଁ ସରକାରଙ୍କ ଅନୁମତି ନେବାକୁ ପଡ଼େ । ଗୁଡୁନା ଏସବୁ ଆଇନ କାନୁନର ଗୂଢ଼ କଥା ବୁଝିବାକୁ ନାରାଜ । ବାଳସୁଲଭ ଉତ୍ସୁକତା ତା'ର । ଘରେ ଗୋଟେ ଜଙ୍ଗଲୀ ଜନ୍ତୁ ଅଥବା ଗୃହପାଳିତ ପଶୁ କିମ୍ବା ପକ୍ଷୀ ପୋଷିବା ମଣିଷର ଆଦିମ ସଉକ । ମଣିଷ ସମାଜ ଓ ପଶୁପକ୍ଷୀ ଜଗତର ସମ୍ପର୍କ ନିବିଡ । ଦିନେ ଆଦିମ ମଣିଷ ପଶୁ ଭଳି ବଣରେ ରହି ଯାଯାବର ଜୀବନ ଯାପନ କରୁଥିଲା । କ୍ରମଶଃ ସମୟ ଅତିବାହିତ ହୁଏ, ସାମାଜିକ ଜୀବନ ସଂଘଟିତ ହେଲା । ବୁଦ୍ଧିର ବିକାଶ ବଳରେ ନାନାଦି ବିଦ୍ୟା ଉଦ୍ଭାବନ କରି ଆଜି ମଣିଷ କମ୍ପ୍ୟୁଟର ଯୁଗରେ ପାଦ ଥୋଇଛି- ଅଜଣାରୁ ଜଣାକୁ ମାନବର ଅନନ୍ତ ଅନ୍ୱେଷଣ । କିନ୍ତୁ ଜନସଂଖ୍ୟା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ପଶୁମାନଙ୍କ ପରିମାଣ ଠିକ୍ ବିପରୀତ ଦିଗରେ ଗତି କରୁଛି ଗୋଟାଏ ଜ୍ୟାମିତିକ ଧାରାର ବ୍ୟବଧାନ ପରି । ବନ୍ୟପ୍ରାଣୀମାନେ ନିର୍ବିଘ୍ନରେ ବାସ କରିବା

ପାଇଁ ଅଗନାଅଗନି ବନସ୍ତ ଆଉ ନାହିଁ। ପ୍ରବଳ ଜନସଂଖ୍ୟା ବିସ୍ଫୋରଣରେ ଅରଣ୍ୟ ବିପର୍ଯ୍ୟସ୍ତ, ବନ୍ୟପ୍ରାଣୀ ବିପଦଗ୍ରସ୍ତ। ଅବଶ୍ୟ ଅଖିଳ ବିଶ୍ୱ ଆଜି ଏଥିପାଇଁ ଚିନ୍ତିତ, ବ୍ୟଥିତ। ଏଣୁ ପୃଥିବୀ ସାରା ଗଢ଼ି ଉଠିଛି ଅନେକ ଅନୁଷ୍ଠାନ, ବହୁ ଆଭିମୁଖ୍ୟ। ମୁଁ ନିଜେ ମଧ୍ୟ ବିଶ୍ୱ ବନ୍ୟଜନ୍ତୁ ସଂରକ୍ଷଣ ସଂଘର ଜଣେ ସକ୍ରିୟ ସଭ୍ୟ। ଯେଉଁଭଳି ଅତୀତର ମନ୍ଦିର ଓ ଚାରୁ କୀର୍ତ୍ତିମାନଙ୍କ ସଂରକ୍ଷଣ ପାଇଁ ପ୍ରତ୍ନତତ୍ତ୍ୱ ବିଭାଗ ତତ୍ପର ହୋଇ ଉଠିଛି, ଧ୍ୱଂସାବଶେଷଗୁଡ଼ିକୁ କାଳର କରାଳ ଗତିରୁ ରକ୍ଷାକରି ସାଇତି ରଖିବା ପାଇଁ ଶତତ ଚେଷ୍ଟିତ; ସେଇଭଳି ଚିନ୍ତାଶୀଳ ବନବିଶାରଦମାନେ କ୍ଷୟିଷ୍ଣୁ ଜନ୍ତୁ ଓ ଉଦ୍ଭିଦମାନଙ୍କୁ ରକ୍ଷା କରିବା ପାଇଁ ପ୍ରଣାନ୍ତକ ଉଦ୍ୟମ କରି ଆସୁଛନ୍ତି। ପ୍ରଦୂଷଣ ରୋକିବା ଓ ପରିବେଶ ସୁରକ୍ଷା କରିବା ଆଧୁନିକ ସମାଜର ଆବଶ୍ୟକତା ହୋଇ ପଡ଼ିଛି। ଏସବୁ ଗୂଢ଼ ଗହନ କଥା ମୋ ଟିକି ଝିଅ ବୁଝିବ କାହୁଁ? ଅତଏବ ସାପ ମରିବ ନାହିଁ, ବାଡ଼ି ଭାଙ୍ଗିବ ନାହିଁ ବ୍ୟାୟରେ କହିଲି- " ହାତୀ ବନସ୍ତରେ ବୁଲୁଥିଲେ ବି ରଜାଙ୍କର। ସେଇଭଳି ଆମ ଗଙ୍ଗା ଆଉ ବନରାଜ। ସେମାନଙ୍କୁ ଆମ ପାଖେ ରଖିବା ସମ୍ଭବ ହେଲାନି ବୋଲି ସିନା ଆମେ ପ୍ରାକୃତିକ ଚିଡ଼ିଆଖାନା ନନ୍ଦନକାନନରେ ଛାଡ଼ିଛେଁ! ସେମାନେ ସେଠି ଯେଉଁ ତାର ଘେରା ଅଞ୍ଚଳରେ ରହୁଛନ୍ତି ସେଠାରେ ଲେଖା ଅଛି- ' ମୋହନଙ୍କ ବାଘ'। ଆମେ ତ ମଝିରେ ମଝିରେ ଯାଇ ସେମାନଙ୍କୁ ଦେଖି ଆସୁଛେଁ। ନୁହେଁ? କେତେ ସୁସ୍ଥରେ ଅଛନ୍ତି ସେମାନେ ସେଠି! ସେଦିନ କେମିତି ମୋ ହାତରୁ ଦୁଇ ଡବା ଅମୂଲ ଚାଟି ଖାଇଗଲେ? ଟିଣକଯାକ ବିସ୍କୁଟ ସଙ୍ଗେ ସଙ୍ଗେ ଖତମ କରିଦେଲେ?"

ଗୁଡୁନା ମୁଣ୍ଡ ଟୁଙ୍ଗାରି କହିଲା- "ହଁ।

- "ତେବେ!! ତୁ ବ୍ୟସ୍ତ ହୁଅନା। ଆମ ଗଙ୍ଗା ମା' ହୋଇଛି। ଭଲ ଖବର। ମା' ଓ ଛୁଆଙ୍କୁ ଦେଖି ଆସିବା ନିଶ୍ଚୟ!"

- "କେବେ?" (ଗୁଡୁନାର ଉତ୍କଣ୍ଠା)

- "ଖୁବ୍ ଶୀଘ୍ର। ଏଇ କାଲି ପଅରିଦିନ ଆଉକୁ।"

- "ନାଇଁ ବାପା, କାଲି।"

ମୁଁ ଦୋ ଦୋ ପାଞ୍ଚ ହୋଇ କହିଲି- "କାଲି ବହୁତ ଅଫିସ କାମ। ମୋ ଅଫିସ ଟେବୁଲ ଉପରେ ଖୁନ୍ଦା ଖୁନ୍ଦି ଫାଇଲ। ଫୁରୁସତ୍ ମିଳିବନି ଆଦୌ। ତେବେ ପଅରଦିନ ନନ୍ଦନକାନନ ନିଶ୍ଚୟ ଯିବା।"

ଗୁଡୁନା ଖୁସି ହେଲା, ଡେଇଁଲା। ମୁଁ ଯୋଗେନ୍ଦ୍ର ବାବୁଙ୍କୁ ଟେଲିଫୋନ୍ କଲି ଧନ୍ୟବାଦ ଅର୍ପଣ କରିବା ଉଦ୍ଦେଶ୍ୟରେ। ସେ ମିଳିଲେ ନାହିଁ, ଅଫିସ କୋଠରି ଛାଡ଼ି ଚିଡ଼ିଆଖାନାର ଜନ୍ତୁଜନ୍ତାମାନଙ୍କ ଭଲମନ୍ଦ ବୁଝିବାକୁ ବାହାରି ଯାଇଥିଲେ।

ଅପରାହ୍ନର ଘରଟା ନିରୋଳା ଥିଲା। ଶ୍ରୀମତୀ (ଗୁଡୁନାର ବୋଉ) ଘରେ ନ ଥିଲେ। ମାସିକିଆ ସଉଦା କରିବାପାଇଁ ଲାଲ୍ ଚାନ୍ଦ ବଜାର ବାହାରି ଯାଇଥିଲେ। ସଉଦା କାମ ସାରି ରିକ୍ସାରୁ ଓହ୍ଲାଇବା କ୍ଷଣି ଡାକବାଜି ଯନ୍ତ୍ର ପରି ଗୁଡୁନା ଉଚ୍ଛୁଳି କହିଲା- "ଗଙ୍ଗାର ଦୁଇଟି ଛୁଆ ହୋଇଛି ବୋଉ। ଅବି ଯୋଗେନ୍ଦ୍ର ମଉସା ଫୋନ୍ କରିଥିଲେ। ମୁଁ ଫୋନ୍ ଧରିଥିଲି।"

ଶ୍ରୀମତୀ ସହସା ଅଭିନନ୍ଦନ ଜଣାଇବା ସ୍ୱରରେ କହିଲେ- "ବଢ଼ିଆ ଖବର। ଆମେ ଖୁସି।" ପୁଣି ସହାସ୍ୟ ବଦନରେ ମୋ ଆଡକୁ ଲକ୍ଷ୍ୟ କରି କହିଲେ- "ତୁମେ ଚିନ୍ତିତ ଥିଲ ନା ଗଙ୍ଗାର କାହିଁକି ଛୁଆ ହେଉ ନାହିଁ? ବାରମ୍ବାର ତଦାରଖ କରି ବୁଝୁଥିଲ ତା' ଗର୍ଭାବସ୍ଥା। ପଶୁ ଡାକ୍ତର ପରାମର୍ଶ କରୁଥିଲ। କିନ୍ତୁ ସବୁଥର ନିରାଶ ହୁଅ। ଏଥର କିନ୍ତୁ ତୁମ ଫର୍ମୁଲା କାମ ଦେଇଛି। ଗଙ୍ଗା ବନରାଜଠୁଁ ଦୂରେଇ ନେଇ ଅନ୍ୟ ବାଘ ସଙ୍ଗେ ସହବାସ କଲାରୁ ଯାଇଁ ଛୁଆ ହୋଇଛି। ନୁହେଁ?"

ମୁଁ ଟିକିଏ ଚିନ୍ତା କଲି। ସତ କଥା। ଗଙ୍ଗା ଓ ବନରାଜ ଭାଇ ଭଉଣୀ ଗୋଟିଏ ମା'ର ସନ୍ତାନ। ପଶୁପକ୍ଷୀମାନେ ବଡ଼ ହେଲେ ସ୍ୱାମୀ ସ୍ତ୍ରୀ ହୋଇଯା'ନ୍ତି। କିନ୍ତୁ ଏ ଧାରଣା ଆମର ହୁଏତ ଭୁଲ। ପଶୁ ହେଲେ ମଧ୍ୟ ଗୋଟିଏ ମା' ପେଟରୁ ଛୁଆମାନେ ବୟଃପ୍ରାପ୍ତ ହୋଇ ସହବାସ କଲେ ଫଳପ୍ରାପ୍ତି ହୁଏ ନାହିଁ ସବୁ କ୍ଷେତ୍ରରେ। ଗଙ୍ଗା ଓ ବନରାଜ ତାହା ପ୍ରମାଣ କରି ଦେଇଛନ୍ତି ଆଜିର ଖବରରୁ। ଗଙ୍ଗାର ବାରମ୍ବାର ଗର୍ଭପାତ ହେଉଥିବାରୁ ମୁଁ ଯୋଗେନ୍ଦ୍ର ବାବୁଙ୍କୁ ପରାମର୍ଶ ଦେଇଥିଲି- ଗଙ୍ଗାର ଋତୁ ସମୟରେ ତାକୁ ବନରାଜଠୁଁ ଦୂରେଇ ରଖି ଆଉ ଏକ ବୟସ୍କ ପୁରୁଷ ଚିତା ସହିତ ସହବାସ କରିବା ପାଇଁ। ଯୋଗେନ୍ଦ୍ର ବାବୁ ମୋ ପରାମର୍ଶ ଗ୍ରହଣ କରି ଏଥର ଭିନ୍ନ ବ୍ୟବସ୍ଥା କରିଥିଲେ। ଗଙ୍ଗାକୁ ନେଇ ସୁବଳ ସହିତ ମଧୁଶଯ୍ୟା କରାଇଲେ କେଇଦିନ। ସେଥିରେ ବନରାଜ ଅବଶ୍ୟ କ୍ଷୁବ୍ଧ ହୋଇଥିଲା। ତା'ର କ୍ରୋଧ ପ୍ରଶମିତ ହେବା ପାଇଁ କନ୍ୟାଟିଏ ବାଛିବାକୁ ପଡ଼ିଥିଲା। କିନ୍ତୁ ବାଘ ପରିବାରରେ ମନୋନୀତ ବାଘୁଣୀ କନ୍ୟାଟିଏ ହଠାତ୍ ମିଳିବ କାହୁଁ? ଏଣେ ବନରାଜ ପାଇଁ କନ୍ୟା ଖୋଜିବା ଅବସରରେ ଦିନ କିଛିଟା ବିତିଯାଏ, ଗଙ୍ଗା ଅନ୍ତଃସତ୍ତ୍ୱା ହୋଇ ସୁବଳ ପାଖେ ରହିଲା। ବନରାଜ ବରଦାସ୍ତ ନ କରି ପାରି ଆଉରି କ୍ରୁଦ୍ଧ ହେଲା, ଉତ୍ପାତ କଲା, କିଛିଦିନ ଖାଇଲା ପିଇଲା ନାହିଁ; ଯେମିତି ବିରହ ବିଚ୍ଛେଦ ବେଦନାରେ ମର୍ମାହତ! ରାଗରେ ତାର ଘେରା ଜାଲିକୁ ବାରମ୍ବାର ଦାନ୍ତରେ ଆଘାତ କଲା; ତା' ମୁହଁ ଖଣ୍ଡିଆ ଖାବରା ହେଲା, ରକ୍ତ ଝରିଲା। ନନ୍ଦନକାନନରେ ତା'ର ଉପଯୁକ୍ତ ମହିଳା ସାଥୀ ମିଳିଲେ ନାହିଁ- କିଏ ବୃଦ୍ଧା, ଖୁବ୍ ବଡ, ବୟସ୍କ ଓ ରୁଗ୍ଣ, ଆଉ କିଏ ବା ନାବାଳିକା ଶିଶୁ। ଏମିତି କନିଆଁ ଖୋଜା ଖୋଜି ବେଳେ କଲିକତାସ୍ଥିତ ଆଲିପୁର ଚିଡ଼ିଆଖାନାରେ 'ରିମା'ର ସନ୍ଧାନ ମିଳିଲା।

ବଦଳ ସୂତ୍ରରେ ତାକୁ ସେଠୁଁ ଅଣାଯାଇ ବନରାଜ ସହିତ ବିବାହ କରାଇ ଦିଆଗଲା। ବନରାଜ ଏଥର ଶାନ୍ତ- ରିମା ସହିତ ସୁଖ ଦାମ୍ପତ୍ୟ ଜୀବନ ଯାପନ କରୁଛି। ରିମା ମଧ୍ୟ ଏବେ ପ୍ରସବ ପ୍ରତୀକ୍ଷାରେ...

ତେବେ ଗଙ୍ଗା ଓ ବନରାଜ ସହିତ ମୋର ସମ୍ପର୍କ କ'ଣ ?

ଶୁଣନ୍ତୁ ଏଥର ଗଙ୍ଗା ଓ ବନରାଜର କାହାଣୀ। ଏକ ଚରମ ଦୁଃସ୍ଥିତିର ସମ୍ମୁଖୀନ ହୋଇ ଅଗତ୍ୟା ମୁଁ ସେମାନଙ୍କର ମା'କୁ ବଧ କରିଥିଲି, ବଧ କରିବାକୁ ବାଧ ହୋଇଥିଲି। ସେଇ କାରଣରୁ ଗଙ୍ଗା ଓ ବନରାଜକୁ ପାଳିବାର ଦାୟିତ୍ୱ ନେଇଥିଲି- ଏହା ଥିଲା ବିଧିର ନିର୍ଦ୍ଦେଶ, ମାତୃହନ୍ତା ଶିକାରୀ ଉପରେ କର୍ତ୍ତବ୍ୟର ଆହ୍ୱାନ। ଗଙ୍ଗା ଓ ବନରାଜର ମା' ଚିତା ବାଘୁଣୀ ପରିସ୍ଥିତି କ୍ରମେ ଦୁଷ୍ଟ ଦୁର୍ଦ୍ଦାନ୍ତ ଏବଂ ଭୟଙ୍କର ହୋଇ ଉଠିଥିଲା। ଅଞ୍ଚଳର ଧନ ଜୀବନ ବିବାକେ ବିପନ୍ନ ହୋଇ ପଡ଼ିଥିଲା।



ସମ୍ବଲପୁର ଜିଲ୍ଲାର ହେମଗିରି ବନ ଭୂଖଣ୍ଡର ସେ କାହାଣୀ। ହେମଗିରିଠାରୁ 'ଡାଘୋରା' ପ୍ରାୟ ପଇଁତିରିଶ କିଲୋମିଟର ଦୂର। ହିଲ୍ ଷ୍ଟେସନ କହିଲେ ତ ଏକଦମ୍ ଠିକ୍ ହେବ ନାହିଁ, କିନ୍ତୁ ସେଇଭଳି ଏକ ପ୍ରକୃତିଭରା ଛୋଟ ରେଳ ଷ୍ଟେସନଟିଏ। ଏଠି ରେଳ ବିଭାଗର ସେମିତି କିଛି ଆଖି ଦୃଶିଆ ସେଡ୍ ନିର୍ମାଣ ବା ଷ୍ଟଲ୍ ନାହିଁ। ନାହିଁ କୌଣସି ମୁସାଫିରଖାନା। କେବଳ ପଚିଶ ମିଟର ଲମ୍ବ ଆଜ୍‌ବେଷ୍ଟସର ଏକ ପାଖିଆ ଛାଉଣିଟିଏ। ପ୍ରଥମେ ଏଠି ମାଲ୍ ବୋଝେଇ ରେଳଗାଡ଼ି ରହୁଥିଲା କେବଳ ଗରକାଠ ଓ ବାଉଁଶ ବୋଝେଇ ପାଇଁ। ଏବେ ପାସେଞ୍ଜର ଟ୍ରେନ୍ ଖୁବ୍ ଅଳ୍ପ ସମୟ ପାଇଁ ରହି ଆସୁଛି। ରେଳ ଲାଇନର ଧାରେ ଧାରେ ଘୋର ନଟାବୁଦା ଜଙ୍ଗଲ। ଉଭୟ ପାଖେ ବାଉଁଶ ଗଛର ନୀରନ୍ଧ୍ର ରୋଶଣି। ଜଣାପଡ଼େ ସ୍ୱର୍ଗ ପର୍ଯ୍ୟନ୍ତ ଏକ ଚିର ସବୁଜିମାର ବଳୟ। ଜଙ୍ଗଲକୁ କାଟି ରେଳପଥ ବ୍ୟାପୀ ଯାଇଛି ବହୁ ଦୂରକୁ। ଲୌହ ରେଳ ଲାଇନ ଉପରେ ଦନ୍ତାହାତୀ ଶୁଣ୍ଢକୁ ଶୁଣ୍ଢ ଲଗାଇ ଲଢ଼େଇ କରୁଥିବାର ପ୍ରତ୍ୟକ୍ଷ ବିବରଣୀ ରେଳ ଚାଳକ ମୁହଁରୁ ଶୁଣିବାକୁ ମିଳେ। ତୀବ୍ର ବେଗରେ ରେଳ ଧାଉଁଥିବା ବେଳେ ଅନେକ ବନ୍ୟଜନ୍ତୁ କଟିଥିବାର ଦୃଶ୍ୟ ବହୁବାର ଦେଖା ଯାଇଛି। ନିକଟ ଅତୀତର ଘଟଣା। ରେଳ ଇଞ୍ଜିନ୍ ଧକ୍କାରେ ହାତୀଛୁଆଟିଏ ମରିଯିବା ପରେ ମା' ହାତୀ କ୍ରୋଧରେ ଜର୍ଜରିତ ହୋଇ ପରବର୍ତ୍ତୀ ରେଳ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରି ରହିଲା। କିଛି ସମୟ ପରେ ଠିକ୍ ସେହି ଦିଗରୁ ପରବର୍ତ୍ତୀ ରେଳ ଆସିବାରୁ ମା' ହାତୀ ଧାରଣା ଉପରେ ରହି ଟ୍ରେନ୍‌ଟିକୁ ଅଟକାଇଲା ଏବଂ ପନ୍ଦର ମିନିଟ ପର୍ଯ୍ୟନ୍ତ ଇଞ୍ଜିନ୍ ଉପରେ ଆକ୍ରମଣ କରି ଏହାକୁ ଲାଇନଚ୍ୟୁତ କରି ଜଙ୍ଗଲକୁ ପଳାଇ ଯାଇଥିଲା। ନିଜର ଜୀବନ ରକ୍ଷା କରିବାକୁ ଖଲାସୀ ଏବଂ ଚାଳକ ରେଳ ଛାତ ଉପରକୁ ଚଢ଼ିଯାଇଥିଲେ। ଏଣୁ ଘଞ୍ଚ ଜଙ୍ଗଲର ଘନତ୍ୱ ସମ୍ବନ୍ଧରେ ଉକ୍ତ ଘଟଣାଗୁଡ଼ିକ ସାକ୍ଷ୍ୟ ଗ୍ରହଣ କରନ୍ତି। ବନଭୂଖଣ୍ଡଟିର ବ୍ୟାପ୍ତି ଅନ୍ୟୂନ ତିନିଶହ ବର୍ଗ ମାଇଲ- ଦକ୍ଷିଣ ପଶ୍ଚିମ

ଆଡକୁ ଲମ୍ବିଯାଇ ଓଡ଼ିଶା ପରିସୀମା ଟପି ମଧ୍ୟ ପ୍ରଦେଶର ସାରଙ୍ଗଗଡ଼ ଓ ରାଇଗଡ ଛୁଇଁଛି । ଜଙ୍ଗଲର ବୈଶିଷ୍ଟ୍ୟ ହେଉଛି ପ୍ରଚୁର ଶାଳିଆ ବାଉଁଶ, ଶାଳ କାଠ, ଦୀର୍ଘକାୟ କଙ୍ଗଡା, ବାନ୍ଧଣ; କୁରୁମ, ବୃହତ୍ ଡାଉରଙ୍ଗ ଓ ଶିମିଳି ବୃକ୍ଷରାଜି । ମଝିରେ ଠାଏ ଠାଏ ପାହାଡ଼ର ପାଦ ପାଖରେ ଛୋଟ ଉପତ୍ୟକାମାନ ଠିକ୍ ମରୁଦ୍ୟାନ ଭଳି ତିଷ୍ଠିତ । ପର୍ବତ ଝରଣାରୁ ଜଳ ବୋହି ଆସି ସମତଳ ଜାଗାମାନଙ୍କରେ ଫସଲ ପାଇଁ ଖୋରାକ ଯୋଗାଇ ଦିଏ । ଏଇ ଫସଲ ଚକଡ଼ା ଭିତରକୁ ତୃଣଭୋଜି ବନ୍ୟ ପ୍ରାଣୀମାନେ ଆହାର ଉଦ୍ଦେଶ୍ୟରେ ପଶି ଆସି ଫସଲ ଖା'ନ୍ତି, ନଷ୍ଟ କରନ୍ତି । ଲୋକମାନେ ଉଜାଗର ରହି ଜନ୍ତୁ ହୁରୁଡ଼ାନ୍ତି, ବର୍ଷକର ଦାନାପାଣି ପାଇଁ ସତର୍କ ରହନ୍ତି ।

ଡାଘୋରା ଷ୍ଟେସନଠୁଁ ଅନ୍ତତଃ ଚଉଦ ପନ୍ଦର କିଲୋମିଟର ଦୂରରେ ଦୁର୍ଗମ ବନସ୍ତ ଘେର ଭିତରେ ଚିର୍ମିରା ଗାଁ । ଏଇ ପାର୍ବତ୍ୟ ଗାଁମାନଙ୍କ ମଧ୍ୟରେ ଚିର୍ମିରା ଅପେକ୍ଷାକୃତ ବଡ଼ । ଗାଁର ବିଶେଷତ୍ୱ ହେଉଛି ଏଠି ବାସକରନ୍ତି ମଣ୍ଡଳର ଭୂମଧ୍ୟପତି ଗୌନ୍ତିଆ- ଲୋକଙ୍କର ପ୍ରଭୁ । ପର୍ବତ ତଳ ଉପତ୍ୟକା ସମତଳ ଅଞ୍ଚଳମାନଙ୍କରେ ତାଙ୍କର ବହୁ ଜମି । କେତେ ଜମିର ଅଧିକାରୀ ସେ ତା'ର ହିସାବ ରଖି ନାହାନ୍ତି, ବାପ ଅଜା କାଳରୁ ମାଲିକାନା ଗଢ଼ି ଆସୁଛି । ସ୍ଥାନୀୟ ବାସିନ୍ଦା କିସାନ୍, ଗଣ୍ଡ, ବିଞ୍ଝାଳ, ଗୌଡ଼, ସହଁରା, ଲୁହୁରା, ଭୂୟାଁ ଆଦି ଗିରିଜନମାନେ ଗୌନ୍ତିଆଙ୍କ ଜମିରେ ଫସଲ ଉପୁଜାଇ ରୟତ ସୂତ୍ରରେ ଚଳନ୍ତି । ଅଲିଖିତ ପରମ୍ପରା ନେଇ ରାଜା ଓ ପ୍ରଜାର ସମ୍ପର୍କ ପରିଚାଳିତ ଏଠି । ସମ୍ପର୍କରେ ଆବିଳତା ପ୍ରବେଶ କରି ନାହିଁ- ମନ ଆକାଶ ଭଳି ନିର୍ମଳ । ଅମଳର ମୋଟା ଅଂଶ ମାଲିକର । ତେବେ ଜନସଂଖ୍ୟା ଓ ଚାହିଦା ଅନୁଯାୟୀ ଚାଷ ଜମି କମ୍ । ଏଣୁ ଅଧିକାଂଶ ଗିରିଜନ ଆଦିବାସୀମାନେ ନିର୍ଭର କରନ୍ତି ଜଙ୍ଗଲଜାତ ଦ୍ରବ୍ୟ ଓ କାଠ ଉପରେ । ପ୍ରକୃତି ସେମାନଙ୍କ ପାଇଁ ସାଇତି ରଖିଛି ଅନେକ ଉପାଦାନ । ସ୍ମରଣାତୀତ କାଳରୁ ଏଠି ଗଢ଼ି ଆସିଛି ସରଳ ଆଦିବାସୀ ଜୀବନ, ବଢ଼ି ଉଠିଛି ନିରଳସ ଆଦିବାସୀ ସଭ୍ୟତା । ମୁଁ ଏବଂ ମୋ ଶିକାରୀବନ୍ଧୁ କ୍ୟାପ୍‌ଟେନ୍ ପ୍ରେମ୍ ସାଗର ତିୱାରୀ ଅନେକ ଥର ଚିର୍ମିରା ଗାଁରେ ରାତ୍ର ଯାପନ କରିଥାଉଁ । ଗୌନ୍ତିଆ ଶ୍ରୀଚରଣ ଶର୍ମାଙ୍କ ଅତିଥି ହୋଇଥାଉଁ । କେଇଦିନ ଶିକାର ଓ ବନଭ୍ରମଣର ଆଡ୍‌ଡା ଜମେ । ନିଃଶବ୍ଦ ଅଞ୍ଚଳ କିଛି ସମୟ ଚେଇଁଉଠେ ।

ଏଠାରେ ବହୁତ ବାର୍‌ହା, ସମ୍ବର, ଶିଙ୍ଗାଳ ଦେଖାଯା'ନ୍ତି । କ୍ୱଚିତ ମିରିଗ ଏବଂ ଅଳ୍ପ ସଂଖ୍ୟାରେ କୁଟୁରା । ମିରିଗମାନେ ପଥୁରିଆ ଦନ୍ତୁରିତ ବନାଞ୍ଚଳମାନଙ୍କରେ ବାସ କରିବାକୁ ସୁଖ ପାଆନ୍ତି ନାହିଁ, ସମତଳ ଘନ ବନ ସେମାନଙ୍କ ଅଭୟ ବାସସ୍ଥଳୀ । ଏ ଅଞ୍ଚଳରେ ଶାଳିଆ ବାଉଁଶବୁଦାମାନ ଖୁନ୍ଦାଖୁନ୍ଦି ଛନ୍ଦାଛନ୍ଦି ହୋଇ ବସ୍ତାରି ଯାଇଛନ୍ତି ବହୁ ବାଟକୁ- ସୂର୍ଯ୍ୟ କିରଣ ପ୍ରାୟତଃ ଭୂଇଁ ଛୁଏଁନି- ଦିନବେଳେ ବି ରାତିର ଭ୍ରମ ସୃଷ୍ଟି

ହୁଏ- ଝିଙ୍କାରିର ଝିଁ ଝିଁ ସୁର ଅହରହ ଲାଗି ରହିଥାଏ। ରାତିରେ ଉଜ୍ଜ୍ୱଳ ସଟ୍ ଲାଇଟ୍ ପଡିବା ମାତ୍ରେ କୁଟୁରା ସମ୍ବର ବା ବାରହା ଆଖି ଦପ୍ ଦପ୍ କରେ। ବିଶେଷ ଶ୍ରମ ନ କରି ଅନାୟାସରେ ଜନ୍ତୁମାନେ ମିଳିଯା'ନ୍ତି। ଗାଁବାସୀମାନେ ଖୁସି; ଯୁବ ଗୌନ୍ତିଆ ଶ୍ରୀଚରଣ ଶର୍ମାଙ୍କର ବେଶୀ ଆନନ୍ଦ; ତାଙ୍କର ମହାଜନୀ ଭାଗ ସବୁଠୁଁ ମୋଟା। ଜଙ୍ଗଲ ମାସଂର ମାଦକତାରେ ସମସ୍ତେ ଆପ୍ୟାୟିତ। ମାଂସ ଟିକିଏ ପାଇଁ ସମସ୍ତଙ୍କର ଆଗ୍ରହ। ଏହା ବ୍ୟତୀତ ଜଙ୍ଗଲ ଇଲାକାର ବାସିନ୍ଦାମାନଙ୍କ ପାଇଁ ଆଉ କ'ଣ ସ୍ୱାଦିଷ୍ଟ ଖାଦ୍ୟ ଅଛି ଯେ! ଶିକାର ମିଳିବା ଦିନଟି ସେମାନଙ୍କର ପ୍ରମୋଦର ଦିନ ଚିତ୍ତବିନୋଦନ ପାଇଁ ରାନ୍ଧିଥାନ୍ତି ମହୁଲି କିମ୍ବା କୁସ୍ନା (ଚାଉଳି)। ମସ୍ତ ହୋଇ ଧାଙ୍ଗଡ଼ା ଧାଙ୍ଗଡ଼ୀ ନାଚରେ ମାତନ୍ତି। ଆମେ ଆମୋହିତ ହେଉ। ମୁଁ ରହେ ସମ୍ବଲପୁର ସହରରେ। ଚିର୍ମିରାଠାରୁ ସମ୍ବଲପୁର ଅନେକ ଦୂର- ଶହେ ତିରିଶ କିଲୋମିଟର ରାସ୍ତା। ଯାତାୟାତର ସୁବିଧା ନାହିଁ। ଶିକାର ମାଂସ ସଢ଼ିଯିବାର ଶତକଡା ଶହେ ସମ୍ଭାବନା। ଏଣୁ ଆମର ମାଂସ ପାଇଁ ଲାଳସା ନଥାଏ, କେବଳ ଅନ୍ୱେଷଣର ଉଦ୍ଦାମତା।

ସମ୍ବଲପୁର। ରବିବାରୀୟ ସାପ୍ତାହିକ ଛୁଟି ଦିବସ, ହାଲୁକା ପରି ପରିବେଶ। ସକାଳ ସମୟ। ନିର୍ମେଘ ଆକାଶ। ଶୀତଋତୁର ଆରମ୍ଭ କାଳ। ସମ୍ବାଦପତ୍ର ଓଲଟାଉଥିଲି। ମଝି ପୃଷ୍ଠାର ଏକ ସ୍ତମ୍ଭରୁ ପଢ଼ିଲି- ଡାଘୋର ବନାଞ୍ଚଳରେ ଦୁଇଟା ଚିତା ବାଘ ମାତିଛନ୍ତି କେଇଦିନ ହେଲା। ବହୁ ଗୃହପାଳିତ ପଶୁ, ବିଶେଷ କରି ଛେଳି, ମେଣ୍ଢା ଓ ଗାଈଗୋରୁମାନଙ୍କୁ ଗୁହାଳରେ ପଶି ମାରି ପକାଉଛନ୍ତି। ଏପରିକି ଗୋଟିଏ ରାତିରେ ଏକାଧିକ ସ୍ଥାନରେ ଦଶ ପନ୍ଦର ଗୃହପାଳିତ ପ୍ରାଣୀ ମରିବାର ଖବର ମିଳିଛି। ସେମାନେ ମାରି ଦେଉଛନ୍ତି, କିନ୍ତୁ ସବୁଗୁଡ଼ିକ ନେଇ ପାରୁ ନାହାନ୍ତି ବା ଖାଇପାରୁ ନାହାନ୍ତି। ଚିର୍ମିରା, ଡାଙ୍ଗେଡ଼ୀବସା, ଡେର୍‌ବା, ଢୋଲପାଣି ଚେମେଣି, କେଲୁପଡ଼ା, ସରପା, ଉଅଁରଖୋଲ ଆଦି ଗାଁମାନଙ୍କରେ ବାଘର ଆତଙ୍କରାଜ ଖେଳି ଯାଇଛି, ସଞ୍ଜବେଳୁ ତାଟି କବାଟ ପଡ଼ିଯାଉଛି। ଏଠାକାର ବନବାସୀମାନେ ଭୀତତ୍ରସ୍ତ, ଜୀବନ ବିପନ୍ନ...

ସମ୍ବାଦଟି ମୋତେ ଚାଉଁ କଲା! ଯା ଭିତରେ ଡାଘୋରା ବନ ଭୂଖଣ୍ଡରେ ବାଘ ମାତି ଉପଦ୍ରବ କଲାଣି!! ଆଶ୍ଚର୍ଯ୍ୟ ହେଲି। ସଙ୍ଗେ ସଙ୍ଗେ ସାଥୀ ପ୍ରେମଙ୍କୁ ଫୋନ୍ କଲି। ପ୍ରେମ୍ ମିଲିଟାରୀ ଚାକିରିରୁ ଅବସର ନେଇ ବୁର୍ଲାରେ ନିଜ ଘରେ ରହୁଛନ୍ତି। ସେଠି ସେ ସ୍ୱରୁଚି ଅନୁଯାୟୀ ହୀରାକୁଦ ନଦୀବନ୍ଧ ସନ୍ନିକଟ ପର୍ବତ ପାର୍ଶ୍ୱରେ ମନୋରମ ବାସଗୃହଟିଏ ବନାଇଛନ୍ତି। ଏକ ମହଲା ପକ୍‌କା ଘର, ପ୍ରଶସ୍ତ ବାରଣ୍ଡା, କିଛି ଆଜବେଷ୍ଟସ୍ ଛାଉଣି, ସମ୍ମୁଖ ଓ ପଶ୍ଚାତ୍‌ଭାଗରେ ବିସ୍ତୃତ ବଗିଚା- ସଜନା, ଆମ୍ବ, କଦଳୀ ପିଜୁଳିଠୁଁ ଆରମ୍ଭ କରି ପଣସ ପର୍ଯ୍ୟନ୍ତ। ବଗିଚାରେ ମଧ୍ୟ ବହୁ ଜଙ୍ଗଲୀ ବୃକ୍ଷ ଯତ୍ନରେ ରୋପିଛନ୍ତି; ସେଗୁଡ଼ିକ ଶାଖା ପ୍ରଶାଖା ମେଲି ଏବେ ଉଦୀୟମାନ- ଗୋଟାଏ

କ୍ଷୁଦ୍ର ନକଲି ଜଙ୍ଗଲ ସୃଷ୍ଟି କରିବାକୁ ପ୍ରୟାସୀ ଯେମିତି ! ଯେ କୌଣସି ଲୋକ ଦେଖିଲେ, ପ୍ରେମ୍ ଜଙ୍ଗଲକୁ ଭାରି ଭଲପା'ନ୍ତି ବୋଲି ବିନା ଦ୍ୱିଧାରେ ଭାବିନେବ।

ମୋଠୁଁ ଜରୁରୀ ଫୋନ୍ ପାଇ ପ୍ରେମ୍ ଅବିଳମ୍ବେ ତାଙ୍କ ପୁରୁଣା ଅଷ୍ଟିନ୍ କାର୍ ଧରି ମୋ ପାଖେ ପହଞ୍ଚିଲେ। ଆମେ ଦୁହେଁ ଚିତାର କାର୍ଯ୍ୟକଳାପ ସମ୍ବନ୍ଧରେ ପ୍ରାରମ୍ଭିକ ଆଲୋଚନା କରି ବସିଲୁ। ଡାଘୋରା ଅଞ୍ଚଳରେ ହଠାତ୍ ବାଘ ମାତିବାର କାରଣ ଓ ଜନସଂକଟର ନିରାକରଣ ନେଇ ସମ୍ଭାବ୍ୟ ଚିତ୍ରମାନ ଆଙ୍କିଲୁ। ତାଜୁବ ମଧ୍ୟ ହେଲୁ। ସେଠାରେ ପାର୍ବତ୍ୟାଞ୍ଚଳରେ ଘୋର ଅନ୍ଧାର ରାତିରେ ମୁଣ୍ଡରେ ହେଡ୍ ଲାଇଟ୍ ବାନ୍ଧି ଶିକାର ଖୋଜିଲା ବେଳେ କେଉଁ ବାଘ ଦେଖି ନ ଥିଲୁ। ଆମେ ଏକ ପ୍ରକାର ଧରି ନେଇଥିଲୁ ଯେ ଏ ଅଞ୍ଚଳରେ ବାଘ ନାହାନ୍ତି। କ୍ୱଚିତ୍ ଚିତାବାଘ ଅଛନ୍ତି ବୋଲି ଅନୁମାନ କରିଥିଲୁ ଯାହା। କିନ୍ତୁ ଚିତାବାଘର ନୀଳାଭ ଉଜ୍ଜ୍ୱଳ ଆଖି ଆମ ନଜରକୁ ଆସି ନ ଥିଲା। କେବଳ ସେମାନଙ୍କ କାଁ ଭାଁ ପାଦଚିହ୍ନରୁ ଠଉରେଇଥିଲୁ ଯାହା।

ଦିନେ ଏହି ଅଞ୍ଚଳରେ ମହାବଳ ବାଘମାନେ ହାଉଯାଉ ହେଉଥିଲେ। କ୍ରମଶଃ ଗୋରା ଶିକାରୀମାନେ ସଉକରେ ବାଘମାନଙ୍କୁ ମାରି ବସିଲେ। ସେମାନଙ୍କୁ ଆଞ୍ଚଳିକ ରାଜାମାନେ ମଧ୍ୟ ସହଯୋଗ କଲେ, ବାଘକୁ ମାରି ପୌରୁଷ ଓ ପରାକ୍ରମର ପ୍ରତିଷ୍ଠା ପ୍ରକଟିତ କଲେ। ବାଘମାନେ ପ୍ରାୟତଃ ନିପାତ ହୋଇଗଲେ। ଯେଉଁ କେତେକ ମୁଷ୍ଟିମେୟ ମହାବଳ ବର୍ତ୍ତି ଯାଇଥିଲେ, ସେମାନଙ୍କୁ 'ଏନ୍‌ଡ୍ରିନ୍' ଦେଇ ଲୋକମାନେ ମାରି ବସିଲେ ଚମଡ଼ା ଲୋଭରେ। ରସାୟନ ବିଦ୍ୟାର ନୂତନ ଉଦ୍ଭାବନ ବିଷାକ୍ତ 'ଏନ୍‌ଡ୍ରିନ୍' କୃଷି ପ୍ରୟୋଗ ଅପେକ୍ଷା ବାଘ ମାରିବା ପାଇଁ ବନବାସୀଙ୍କୁ ବେଶୀ ଆକୃଷ୍ଟ କଲା। ଫଳତଃ ଏ ଅଞ୍ଚଳର ମହାବଳ ବାଘ ହୋଇଗଲେ ସମ୍ପୂର୍ଣ୍ଣ ନିଶ୍ଚିହ୍ନ। କାଁ ଭାଁ ଚିତା ବାଘ ଥା'ନ୍ତି। କିନ୍ତୁ ସେମାନେ ଜଙ୍ଗଲର ସଂଖ୍ୟାଲଘୁ ସମ୍ପ୍ରଦାୟ ଭଳି ଚୁପ୍‌ଚାପ୍ କାଳାତିପାତ କରୁଥା'ନ୍ତି। ତେବେ ଏ ଅଞ୍ଚଳରେ ହଠାତ୍ ଚିତାବାଘ ମାତି ଉଠି ଉପଦ୍ରବ କରି ବସିଲା କେବେଠୁଁ ଓ କାହିଁକି ? ସମ୍ବାଦଟି ଆମ ପାଇଁ ଚିନ୍ତାର ବିଷୟ ହୋଇଥିଲା।

କେଇ ମାସ ଡାଘୋରା ଯାଇ ନ ଥିଲୁ, କାରଣ ବର୍ଷା ଲାଗି ରହିଥିଲା ଅନବରତ। ବର୍ଷା ଅନ୍ତେ ହେମନ୍ତ ଆସନ୍ତେ ଆମେ ଦୁଇ ବନ୍ଧୁ ସମ୍ବଲପୁର ଆଖପାଖ ଅଞ୍ଚଳ, ବଡ଼ରମା ଅଭୟାରଣ୍ୟ, କୁଚିଣ୍ଡା, ବାରପାହାଡ଼, ଜମନକିରା, ଧମା, ରେଢାଖୋଲ, ଚାରମାଳ, ମୃଗାବାଡ଼ି ଆଦି ବନବହୁଳ ଇଲାକାମାନଙ୍କରେ ସୀମାବଦ୍ଧ ଥିଲୁ। ଚିର୍ମିରା ଯିବାର ଯୋଜନା କରୁଥିଲୁ।

ଡାଘୋରାରେ ବାଘ ମାତିବା ସମ୍ବାଦ ପ୍ରେମ୍‌ଙ୍କୁ ଉଷ୍ମ କରି ଦେଇଥିଲା ଠିକ୍ ଶୀତ ସକାଳ ଗରମ ଚା' ଭଳି। ଶୀଘ୍ର ସେଠାକୁ ଯିବା ପାଇଁ ପ୍ରେମ୍ ପ୍ରସ୍ତାବ ବାଢ଼ିଲେ। ମୁଁ ତ ମନା କରିବା ପ୍ରଶ୍ନ ଉଠୁ ନ ଥିଲା, କିନ୍ତୁ ଆଶ୍ୱିନ ଶୁକ୍ଳ ପକ୍ଷ ଚାଲିଥାଏ। ପୂର୍ଣ୍ଣମୀ

ଆଉରି ତିନିଦିନ ବାକି। କୃଷ୍ଣ ପକ୍ଷ ଅଷ୍ଟମୀ ପରେ ଯାଇ ଶିକାରୋପଯୋଗୀ ଅନ୍ଧାର ରାତି ଆସିବ। ଅନ୍ଧାର ପକ୍ଷ ନ ହେଲା ପର୍ଯ୍ୟନ୍ତ ଜହ୍ନାଲୋକରେ କେବଳ ଜଙ୍ଗଲ ବୁଲିବା ସାର, ଦେହ ଦରଜ କରିବା କଥା ମାତ୍ର। କାରଣ ଜନ୍ତୁମାନେ ଆଲୋକ ପକ୍ଷରେ ପ୍ରାୟତଃ ଖୋଲାଜାଗାକୁ ଆସନ୍ତି ନାହିଁ। ବର୍ତ୍ତମାନ କିନ୍ତୁ ଅନ୍ଧାରପକ୍ଷ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବା ପ୍ରଶ୍ନ ଉଠୁ ନାହିଁ। ତେଣେ ଆମ ଜଙ୍ଗଲବାସୀମାନେ ବିପଦର ବଳୟ ଭିତରେ। ବିପଦ ଆପଦ ବେଳେ ସେମାନଙ୍କ ପାଖେ ଠିଆ ହେବା ଆମର ନୈତିକ କର୍ତ୍ତବ୍ୟ। ପ୍ରେମ୍ ମୋତେ ପ୍ରବର୍ତ୍ତାଇବାରେ ଲାଗିଲେ। ସେ ସିନା ଅବସରପ୍ରାପ୍ତ ସ୍ୱାଧୀନ ଜୀବନ ବିତାଉଛନ୍ତି, ସ୍ୱଇଚ୍ଛା ଭ୍ରମଣରେ ତାଙ୍କର ନାହିଁ କୌଣସି ପ୍ରତିବନ୍ଧକ- ଆକାଶର ଚଢ଼େଇ ପରି ମୁକ୍ତ। ତାଙ୍କ କଥା ତେଣୁ ଦୁସୁରା। କିନ୍ତୁ ମୋର ଚାକିରି କଥା; ଦାୟିତ୍ୱ ଓ ଦାନାପାଣିର ବୋଝ। ମୁଁ ସରକାରଙ୍କ ପାଖେ ବନ୍ଧା ପଡ଼ିଛି। ସ୍ୱୀକୃତିପ୍ରାପ୍ତ ଶିକାରୀ ହେଲେ ହେଁ, ମୋର ଛୁଟି ସମସ୍ୟା ରହିଛି, ଉପରିସ୍ଥ ହାକିମଙ୍କ ମତିଗତି, ଅନୁମତି ଆଦି ଅନେକ କଟକଣା ଅଛି। ପ୍ରେମ୍ ଯୁକ୍ତି ବାଢ଼ିଲେ- " ଏମିତି ସୁଯୋଗ କମ୍ ଆସେ ମୋହନ୍। ପୁଣି ଆମ ଚିହ୍ନା ଜଣା ଜଙ୍ଗଲରେ କୌଣସି ପ୍ରତିଦ୍ୱନ୍ଦ୍ୱୀ ଶିକାରୀ ଭାଇ ହାତକୁ ଏ ସୁଯୋଗଟା ଟେକି ଦେବା ଅନୁଚିତ ହେବ।"

ମୁଁ ପ୍ରେମ୍‌ଙ୍କ ପ୍ରସ୍ତାବରେ ରାଜି ହୋଇଗଲି ଇଚ୍ଛାଥିଲେ ଉପାୟ ଆପେ ଆପେ ଆସିଯିବା ନ୍ୟାୟରେ। ମୋର ତ ଶହେ ପଣ ଇଚ୍ଛା। ଛୁଟି ଦରଖାସ୍ତଟେ କାର୍ଯ୍ୟାଳୟକୁ ପଠାଇ ଦେଲି। ଅଭିଯାନ ପାଇଁ ପ୍ରସ୍ତୁତି ପର୍ବ ଆରମ୍ଭ ହୋଇଗଲା।

ତହିଁ ପରଦିନ ଗୌନ୍ତିଆ ଶ୍ରୀଚରଣ ଶର୍ମାଙ୍କଠୁଁ ଚିଠିଟିଏ ପାଇଲି। ଲେଖାଥିଲା – "ତିନି ମାସ ହେବ ଆମେମାନେ ବଡ ବିପଦରେ ଅଛୁ ମହାପ୍ରୁ। ଏଠି ଦୁଇଟା ଚିତାବାଘ ସାଙ୍ଗ ହୋଇ ମାତିଛନ୍ତି। ପ୍ରଥମେ ଛପି ଛପି ଛେଳି ମେଣ୍ଢା ମାରିଲେ, ମୁହଁ ବଢ଼ିଯିବାରୁ ଜବରଦସ୍ତ ଗୁହାଳରେ ପଶି ବାଛୁରୀ ଟାଣିନେଲେ, ଗୋରୁ ଗାଈଙ୍କୁ ମୃତାହତ କଲେ। ଏବେ ନଜର ମଣିଷ ଉପରେ। ମେଲୁଆପଡ଼ାର ଆମ ଚିମା ଭୋତ୍ରା ବାଘ ମୁହଁରେ ମଲା। ପରେ ପରେ ଝିଙ୍କାରୀ, ମେଣ୍ଟୁଆ, ସୁନ୍ଦେଇବାହାଲ, ଭମରଖୋଲ ଗାଁମାନଙ୍କରୁ ଜଣେ ଲେଖାଏଁ ଲୋକଙ୍କୁ ଖାଇଲାଣି। ଏଠି କୋକୁଆ ଭୟ ପଡ଼ିଛି। ଗାଁ ବଏଗା (କାଳିସୀ) କହୁଛନ୍ତି, ଯେ ବାଘ ନୁହେଁ, 'କଳିସୁର'। କାଳ ଖରାପ ପଡ଼ିଛି, କଳି ଏଥର ସମସ୍ତଙ୍କୁ ନିପାତ କରିବ। ଶୀଘ୍ର ଆସନ୍ତୁ ମହାପ୍ରୁ। ତମେ ଆମର ସାହା ଭରସା, ରକ୍ଷାକର୍ତ୍ତା।"



ଚିଠିଟିରେ ଲୋକମାନଙ୍କ ଆର୍ତ୍ତ ମୁଁ ଶୁଣି ପାରୁଥିଲି। ଚିମା ଭୋତ୍ରା ବାଘର ଶିକାର ହୋଇଛି। ହୃଦୟରେ ଶକ୍ତ ଆଘାତ ଅନୁଭବ କଲି। ଖୁବ୍ ଦୁଃଖ ଲାଗିଲା ! ସରଳ ଜଙ୍ଗଲୀ ଲୋକଟିଏ ଚିମା ଭୋତ୍ରା। ଭେଣ୍ଡା ବୟସ ତା'ର, ଚେମେଡ଼ା ଦେହ, ସରୁ ଗୋଡ, କିନ୍ତୁ ଅତ୍ୟନ୍ତ ସାହସୀ। ରାତି ଶିକାର କାଳରେ ଆମକୁ ଦୁର୍ଗମ ଜଙ୍ଗଲ ପଥରେ ବାଟ କଢ଼େଇ ନେବା ପାଇଁ ଦିଗବାରେଣୀ ଯନ୍ତ୍ରଟିଏ। ସବୁବେଳେ ଆମ ପାଖେ ପାଖେ ଥାଏ ଜାଗ୍ରତ ପ୍ରହରୀ ଭଳି। ଖାଲ ଖୋଲା, ସମତଳ ଅସମତଳ, ଉଚ୍ଚ ନୀଚ କିଛି ନ ମାନି ତରୀ ପରି ଆଗକୁ ମାଡ଼ିଯାଏ- ପଛେ ଥାଇଁ ଆମେ ଶିକାର ଅନ୍ୱେଷୀ ବନ୍ଧୁ ଦୁଇ ଜଣ ଆଗ ପଛ ହୋଇ। ଚିମା ସମ୍ଭାଳି ଥାଏ ଆମ ବ୍ୟାଗ୍ ବୁଜୁଲି- ପାଣି ବୋତଲ, ଥର୍ମୋ ଫ୍ଲାସ୍କ, ଔଷଧ ବାକ୍ସ ଇତ୍ୟାଦି ଶିକାରୀର ସାଜ ସରଞ୍ଜାମ। ଆମେ ହାଲୁକା ହୋଇ ହାତରେ ଧରିଥାଉ ନିଜ ନିଜ ବନ୍ଧୁକ, ଅଣ୍ଟାରେ ବନ୍ଧାଥାଏ କାର୍ତ୍ତିକ ବେଲ୍ଟ ଓ ମୁଣ୍ଡରେ ହେଡ୍ ଲାଇଟ୍। ଚିମା ଭୋତ୍ରା ଜନ୍ତୁମାନଙ୍କର ସଂଖ୍ୟା, ଲିଙ୍ଗ, ଚାରଣ ଭୂଇଁ, ରହିବା ସ୍ଥାନ, ଆକାର ଆକୃତି ଆଦିର ନିର୍ଭୁଲ ତଥ୍ୟ ଦେଇଥାଏ। ଏ ଅଞ୍ଚଳରେ ସେ ଆମ ପାଇଁ ହୋଇଥାଏ ଏକ ଜଙ୍ଗଲ- ଅଭିଧାନ। ଆମ ସଫଳତାର କାହାଣୀ ପଛରେ ତା'ର ଅଦୃଶ୍ୟ ଅବଦାନ ଅପରିମିତ। ତା'ର ସମୟୋଚିତ ପରାମର୍ଶ ଆମ ପାଇଁ ଗୁରୁବାଣୀ ସଦୃଶ। କେତେ ନିର୍ଭେଜାଲ, ନିରୀହ, ନିର୍ଭୀକ ଗ୍ରାମ୍ୟ ଜୀବଟିଏ ! ବଣ ବନ ପାହାଡର ମଣିଷ ସେ। ଜଙ୍ଘଂଲୁଚା କରିଆଟେ, ଦେହରେ ଗାମୁଛାଟେ, ହାତରେ ଧାରୁଆ କୁରାଢ଼ି- ସେଇ ତା'ର ବର୍ଷତମାମ ପରିଧାନ, ଚିର ବସନ। ଖରା, ବର୍ଷା, ଶୀତକୁ ଖାତିର ନାହିଁ; କେମିତି ଅକାଟ୍ଟୁ ମଣିଷଟେ ଯେ ! କେଉଁ ଧାତୁରେ ତା'ର ଦେହ ଗଢ଼ା ! ଆଶ୍ଚର୍ଯ୍ୟ ଲାଗେ। ଦିନ ବେଳେ ଗାଈ ଚରାଏ। ଗୋପାଳନ ତା'ର ମୁଖ୍ୟ ଜୀବିକା। ଏମିତି ମଝିରେ ମଝିରେ ଆମେ ଜୁଟିଗଲେ, ଖୁସି ହୋଇଯାଏ ଖୁବ୍, ତତ୍ପରତାର ସହିତ ଯୋଗଦିଏ ଆମ ସଙ୍ଗେ। ନିଶାଚର ଜୀବ ଭଳି ଆମ ସଙ୍ଗେ ରାତି ସାରା ବୁଲେ; ପୁଣି

ସକାଳ ହେଲେ ଆମେ ଯେତେବେଳେ ବିଶ୍ରାମ କରିବାକୁ ଯାଉଁ ରାତ୍ର ଉଜାଗର କ୍ଳାନ୍ତି ମେଣ୍ଟାଇବାପାଇଁ, ସେ ବାହାରିଯାଏ ତା' ଗାଈ ଗୋଠ ସହିତ। ତା' ନିରଳସ ଜୀବନ ଆମକୁ ପ୍ରୀତ କରାଏ। ଶିକାର ଅଭିଯାନ ପରେ ମଧ ଆମର ସେବା କରିବାକୁ ସେ ଭୁଲି ନ ଥାଏ। ଆମେ ଥକି ପଡିଥାଉଁ। ଆମ ଦେହରେ ତୈଳ ମର୍ଦ୍ଦନ, ଉଷୁମ ପାଣି ଗାଧୁଆ ଆଦି ଆରାମଦାୟକ କାର୍ଯ୍ୟମାନ ସ୍ୱତଃ କରିପକାଏ। ପୁରସ୍କାର ସ୍ୱରୂପ ଟେନାଏ ମାଂସ ପାଇଗଲେ ସେ ମହାର୍ଘ ମଣେ। ଆମ ଭଳି ପଦଚାରୀ ବଣ ବୁଲାଳିଙ୍କ ପାଇଁ ସେ ଗୋଟାଏ ଆଶୀର୍ବାଦ ଯେମିତି ! ଦୟାପରବଶ ହୋଇ ମୁଁ ମୋର ପୁରୁଣା କୁର୍ତ୍ତାଟିଏ ଓ ଚଦର ଖଣ୍ଡେ ତାକୁ ବ୍ୟବହାର କରିବାକୁ ଦେଇଥିଲି; କିନ୍ତୁ ତାକୁ ସେ ବ୍ୟବହାର କରିବାରେ କେବେ ମୁଁ ଦେଖି ନାହିଁ। ତା'ର ସେଇ ଚିର ପରିଚ୍ଛଦ- କରିଆ ଓ ଗାମୁଛାଟେ। ବାହାର ଜଗତର ପଦାର୍ଥ ପ୍ରତି କେତେ ଅନାସକ୍ତ ! ପ୍ରକୃତି କୋଳରେ ପାଳିତ ଏହି ନିରୀହ ନିର୍ମଳ ଗିରିଜନମାନଙ୍କ ପ୍ରତି ମନରେ ଶ୍ରଦ୍ଧା ସ୍ୱତଃ ଜାତ ହୋଇଯାଏ।

ଶ୍ରୀଚରଣ ଶର୍ମାଙ୍କ ମର୍ମାନ୍ତିକ ଚିଠିକୁ ବିଶ୍ୱାସ କରି ପାରିଲିନି। ଚିମାଭୋତ୍ରାର ମୁହଁ, କାନ, ତା'ର ଚୁପି ଚୁପି କଥା (ଭୂମିଜ ଭାଷା) ମୋ ଆଖି ଆଗରେ ନାଚି ଉଠିଲା। କ୍ରୋଧରେ ମୁଁ ଉତପ୍ତ ହେଲି। ଆଉ ମୁହୂର୍ତ୍ତେ ଥୟ ଧରି ରହି ପାରିଲି ନାହିଁ। ସାଜ ସରଂଜାମ ଧରି ସରଜମିନ୍ ତଦନ୍ତ ପାଇଁ ବନ୍ଧୁଦ୍ୱୟ ଟ୍ରେନ୍ ଧରିଲୁ। ସମ୍ବଲପୁରରୁ ଝାରସୁଗୁଡ଼ା ରେଳ ଜଙ୍କସନ୍ ପର୍ଯ୍ୟନ୍ତ, ସେଠୁଁ ପାଲଟା ପାସେଞ୍ଜର ଗାଡ଼ି ନାଗପୁର୍ ଆଡକୁ, ବାଟରେ ଡାଘୋରା।

ଡାଘୋରା। ଏଥର ଡାଘୋରା ରେଳ ଷ୍ଟେସନ କିନ୍ତୁ ଅଲଗା ଲାଗିଲା। ଆଗରୁ ସଉକରେ ଶିକାର କରିବାକୁ ଏଠାକୁ ଆସୁଥିଲୁ। ଏଥର ଉଦ୍ଦେଶ୍ୟ ଥିଲା ଭିନ୍ନ। କର୍ତ୍ତବ୍ୟ ଏବଂ ଦାୟିତ୍ୱରେ ଗୁରୁ ବୋଝ। ନରହନ୍ତା ଚିତାକୁ ହତ୍ୟା ନ କରି ଏଠାରୁ ଫେରିବା ଅସମ୍ଭବ- ସିଦ୍ଧାନ୍ତ କରିଥିଲି ମନେ ମନେ।

ପ୍ରେମ୍ କିନ୍ତୁ ଘଟଣାକୁ ଏତେ ଗୁରୁତ୍ୱ ସହିତ ଗ୍ରହଣ କରି ନ ଥା'ନ୍ତି। ସେ ନିଶ୍ଚିତ ଯେ, ଦୁଷ୍ଟ ଜାନୁଆରଟା ମୋ ଆଖିକୁ ଦୃଶ୍ୟ ହେବା ମାତ୍ରେ ଇ ତା'ର ପରମାୟୁ ଶେଷ ବୋଲି ଜାଣ। ମୋର ନିଶାଣ ଓ ଗୁଳିଚାଳନାରେ ତାଙ୍କର ଅଖଣ୍ଡ ବିଶ୍ୱାସ। ମୋ ଦ୍ୱିନଳିଆ ମ୍ୟାନଲିକର ବନ୍ଧୁକ ଓ ଆଲ୍‌ଫା ମ୍ୟାକ୍‌ସ କାର୍ତ୍ରିଜର ସଂଯୋଗ ମଣି କାଞ୍ଚନର ସମନ୍ୱୟ ଭଳି। ପ୍ରେମ୍ ଅବଶ୍ୟ ବ୍ୟବହାର କରନ୍ତି ତାଙ୍କ ୩୦୦ ସ୍ୟାଭେଜ ରାଇଫଲକୁ। ଯେଉଁଠି ମୋ ୧୨ ବୋର ବନ୍ଧୁକର କ୍ଷେପଣସୀମା ବହିର୍ଭୂତ ହୁଏ, ସେ ସ୍ୟାଭେଜକୁ ସଜାଗ ରଖିଥାନ୍ତି ଯାନର ଜରୁରୀକାଳୀନ ଟଙ୍କ ଭଳି– ଆବଶ୍ୟକ ସ୍ଥଳେ ବ୍ୟବହାର ପାଇଁ ମାତ୍ର। ଏଣୁ ବନ୍ଧୁ କ୍ଷେତ୍ରରେ ପ୍ରେମ୍‌ଙ୍କ ଭୂମିକା ଜଣେ ସାଥୀ ସାରଥୀ ପରି। ଯୋଡ଼ାକୁ ଘୋଡ଼ା ସରି ହୁଏନି ଭଳି ଆମର ବନ୍ଧୁତ୍ୱ ଗଢ଼ି ଉଠିଥାଏ ନିବିଡ଼ ଭାବେ।

ରେଳରୁ ଓହ୍ଲାଇବା ମାତ୍ରେ ପ୍ରେମ୍ ମୁହଁରେ ଫିଲ୍‌ଟର କିଙ୍ଗ୍ ସିଗାରେଟ ଖଞ୍ଜିଲେ ଏବଂ ତାଙ୍କ ପେଟ୍ରୋଲ ଚାଳିତ କ୍ଷୁଦ୍ର ଲାଇଟର ବ୍ୟବହାର ଓ ତହିଁରେ ଅଗ୍ନି ସଂଯୋଗ କଲେ। ଦୁଇ ହାପୁକା ଜୋର୍ କରି ସିଗାରେଟ ଟାଣିଲେ। ପିଠିରେ ଝୁଲାମୁଣି, ହାତରେ ବନ୍ଧୁକ ଓ ଶିକାରର ଆନୁଷଙ୍ଗିକ ଉପକରଣମାନ ଧରି ଆମେ ଚିର୍ମରା ଅଭିମୁଖେ ପାଦରେ ଆଗେଇଲୁ। ଏଠାରୁ କୌଣସି ଯାନରେ ଚିର୍ମରା ଯିବା ସମ୍ଭବ ନୁହେଁ। ଅଣଓସାରିଆ ବନ୍ଧୁର ରାସ୍ତା; ମଝିରେ ନଣ୍ଡା ହାଡୁଆ ପାହାଡ଼ଟା- ଗୋଟିଏ ହେଲେ ଗଛ ନାହିଁ ସେଥିରେ। କିଏ ଯେମିତି କ୍ଷୁରରେ ଖିଅର କରି ଦେଇଛି ଚନ୍ଦାମୁଣ୍ଡ ଭଳି। ପାହାଡ ନୁହେଁ ତ ପଥରର ଲମ୍ୱା ପଟୁଆର। ନଣ୍ଡା ପାହାଡ଼ ପର୍ଯ୍ୟନ୍ତ ରାସ୍ତା ଖୁବ୍ ସଂକୀର୍ଣ୍ଣ। ରାସ୍ତାର ଉଭୟ କଡରୁ କଣ୍ଟାଗଛମାନେ ଆକ୍ରମଣାତ୍ମକ ଭଙ୍ଗୀରେ ହାତ ପ୍ରସାରି ଥା'ନ୍ତି, ଟିକିଏ ଅସାବଧାନ ହେଲେ ପୋଷାକରେ ବନ୍‌ସୀ କଣ୍ଟାଭଳି ଲାଗି ଯିବାର ଯଥେଷ୍ଟ ସମ୍ଭାବନା। ରାଜରାସ୍ତାର ଗତିରୋଧକ ହମ୍ପସମାନଙ୍କ ପରି କଣ୍ଟକିତ ବୃକ୍ଷମାନେ ଆମ ଗତିରୋଧ କରୁଥା'ନ୍ତି। ଭୟସଙ୍କୁଳ ଗିରିପଥ। ଆମେ ଚାଲିଥାଉଁ ଧୀରେ ଧୀରେ। ପ୍ରେମ୍ ସାବଧାନତାର ଘଣ୍ଟ ବଜାଇଲେ। କହିଲେ, "ଦିନ ହେଲେ ମଧ୍ୟ ଅନ୍ୟ ଦିନମାନଙ୍କ ପରି ଏଠି ବେପରବାୟ ଭାବେ ବାଟ ଚାଲିବା ଉଚିତ ନୁହେଁ ମୋହନ୍। ବାଘ ମାତିଛନ୍ତି, ସାମଧାନ! ବାଘ କେଉଁଠି ହୁଏତ ଲୁଚିଛପି ଥାଇପାରେ ଏଇ ନଟାମାନଙ୍କ ଭିତରେ, ଭୁସ୍ କରି କୁଦା ମାରିବେ ଅତର୍କିତ ଭାବେ। ସାବଧାନ!!"

ସତକଥା। ପ୍ରେମ୍‌ଙ୍କ ପରାମର୍ଶ ଖୁବ୍ ମୂଲ୍ୟବାନ। ଉପସ୍ଥିତ ବୁଦ୍ଧି ସମ୍ପନ୍ନ ବାସ୍ତବବାଦୀ, ଦୂରଦର୍ଶୀ ବ୍ୟକ୍ତି ଜଣେ। ଆମେ କ୍ଷଣେ ଅଟକି ଗଲୁ ସମ୍ଭାବ୍ୟକୁ ଆଖି ଆଗରେ ରଖି। ଖୋଳ ସାଇତା ବନ୍ଧୁକକୁ ଖୋଳ ଭିତରୁ ବାହାର କରି ସେଥିରେ ଗୁଳିଭର୍ତ୍ତି କଲୁ। ଏବେ ଦେହରେ ଓ ମନରେ ବିପୁଳ ବଳ ଏବଂ ଅମାପ ଶକ୍ତି କେଉଁଠୁ ମାଡି ଆସିଲା। ନିର୍ଭୟ ପ୍ରଦାୟକ ଅସ୍ତ୍ର ହାତରେ ଥିଲେ ଶାରୀରିକ ଶକ୍ତି ଓ ମନୋବଳ ଆପେ ଆପେ ମଜବୁତ୍ ହୋଇଥାଏ ସିନା।

ଆଗରେ ବଙ୍କିଲ ଉଚ୍ଚାନୀଚା ପାଦଚଲା ପଥୁରିଆ ରାସ୍ତା। ଆଉ ଅଭ୍ୟସ୍ତ। କଷ୍ଟ ଅପେକ୍ଷା ଆନନ୍ଦର ପ୍ରାବଲ୍ୟ ଆମେ ସର୍ବଦା ଅନୁଭବ କରୁ। ଆମର ଏଇ ପାଦଚଲା ଜଙ୍ଗଲ ଯାତ୍ରାରେ। ମନ ଥାଏ ରୋମାଞ୍ଚିତ, ତନୁ ପୁଲକିତ। ଶାରୀରିକ ଶ୍ରମ ଜଣା ପଡେ ନାହିଁ। ଗପସପ କରିବାଟ ଚାଲିଥାଉଁ। ପ୍ରେମ୍‌ଙ୍କ ମୁହଁର ସିଗାରେଟ ନିଆଁ, ତହିଁରୁ ଉଦ୍‌ଗତ ଧୂମ୍ରକୁଣ୍ଡଳୀ ନିକଟ ଗଗନକୁ ଚକ୍ରାକାର ଚୁମା ଦେଇ ଚାଲିଥାଏ ଧୀର ମନ୍ଥର କୋଇଲା ଚାଳିତ ରେଳଯାନ ଭଳି।

ପାହାଡ ପାଦର ସଙ୍ଗମସ୍ଥଳୀରେ ସଂକୀର୍ଣ୍ଣ ଫାଙ୍କ ରାସ୍ତା। ସଂଲଗ୍ନ ଗାଡରେ ଆଶ୍ରିତ ସ୍ତର ସ୍ତର ପାଦପରାଜିକୁ ଲକ୍ଷ୍ୟ କରି ପ୍ରେମ୍ ଉଲ୍ଲସିତ ହୋଇ କହିଲେ- " ଦେଖୁଛ ମୋହନ, ସେଇ ଯେଉଁ ଉଚ୍ଚା ସମିଳି ଗଛ ଆକାଶକୁ ଲାଗିଛି! କ'ଣ ଦେଖୁଛ ?"

ମୁଁ ନଜର ଗଭୀର କରି ଦୃଷ୍ଟି ସ୍ଥିର କଲି। ସିମିଳି ବୃକ୍ଷର ଦୋକେନା ସ୍ଥାନର ଥୁଣ୍ଟା ଡାଳରେ ବସିଛି ବୃହତ୍ ରାଜ କୋଚିଲାଖାଇ ପକ୍ଷୀଟିଏ। ନିଃସଙ୍ଗ ସତେ ତ ! ବନ୍ଧୁକଟି ଆପେ ଆପେ ପକ୍ଷୀ ଆଡକୁ ମୁହାଁଇଲା, କିନ୍ତୁ କ୍ଷେପଣସୀମା ବହିର୍ଭୂତ ପରି ମନେ ହେଲା। ପକ୍ଷୀଟିକୁ କରାୟତ କରିବାକୁ ହେଲେ ପାହାଡ଼ର ଛାତି ପର୍ଯ୍ୟନ୍ତ ଚଢ଼ିବାକୁ ହେବ। ଏଣେ ବେତ ଗଛର କଣ୍ଟାଡାଳ ନଟାଭଳି ମାଡିଛି ସବୁଆଡେ। ଦୁର୍ଲ୍ଲଭ ପକ୍ଷୀଟିର ଲୋଭ ସମ୍ବରଣ କରି ପାରୁ ନ ଥିଲି। ବହୁ କଷ୍ଟ କଲେ ଯାଇଁ ଏ ପକ୍ଷୀ ପ୍ରାପ୍ୟ ହୁଏ। ଥରେ ବଡରମା ଅଭୟାରଣ୍ୟରୁ ମାରିଥିଲି। ସେତେବେଳେ ସେମାନେ ଗୋଟିଏ ଗହଳ ଗଛ ଭିତରେ ଦଳେ ଥିଲେ। ଅନେକ ଦିନ ହେବ ଏ ପକ୍ଷୀର ଆବଶ୍ୟକତା ଥିଲା। ମୋ ସ୍ତ୍ରୀ ଆଣ୍ଠୁ ଗଣ୍ଠି ବାତରେ ଆକ୍ରାନ୍ତ ଥା'ନ୍ତି। ଅନେକ ଡାକ୍ତରୀ ଔଷଧ ଖାଇ ମଧ ଉପଶମ ମିଳି ନ ଥିଲା। କବିରାଜଙ୍କ ପରାମର୍ଶ ଅନୁଯାୟୀ କୋଚିଲାଖାଇ ଚଢ଼େଇଟିଏ ଖୋଜୁଥିଲି। ଦୈବାତ୍ ବଡରମା ଅରଣ୍ୟରେ ହଠାତ୍ ଦେଖି ଖୁସି ହୋଇଥିଲି ଏବଂ ସାବଧାନତାର ସହିତ ସେମାନଙ୍କ ପାଖକୁ ଯାଇ ଶକ୍ତିଶାଳୀ 'ଡବଲ' ବି ଛର୍‌ରାଟିଏ ଛାଡ଼ି ଦେଇଥିଲି। ଥରକେ ଦୁଇଟି ପକ୍ଷୀ ତଳକୁ ଟଳି ପଡ଼ିଥିଲେ। ମାଂସ, ହାଡ଼ ଓ ପର ଆଦିରେ ସ୍ତ୍ରୀଙ୍କ ପାଇଁ ଔଷଧ ପ୍ରସ୍ତୁତ ହୋଇଥିଲା। ଔଷଧ କେତେଦୂର କାଟୁ କଲା ଜାଣିନି; କିନ୍ତୁ ଡାକ୍ତରୀ ଔଷଧ ସହିତ କୋଚିଲାଖାଇ ବନୌଷଧି ବୋଧହୁଏ ମିଳିମିଶି ବାତ ବିରୁଦ୍ଧରେ ସଂଗ୍ରାମ କରିଥିଲେ। ଶ୍ରୀମତୀଙ୍କର ଗଣ୍ଠି ପୀଡ଼ା କ୍ରମଶଃ ଦୂର ହୋଇଥିଲା। ସେ ସୁସ୍ଥ। ଅବଶ୍ୟ କାକତାଳୀୟ ଘଟଣା ହୋଇପାରେ। କିନ୍ତୁ ଦେଶୀ ଔଷଧର କାର୍ଯ୍ୟକାରିତା ସମ୍ପୂର୍ଣ୍ଣ ଭାବରେ ଅସ୍ୱୀକାର କରିହେବ ନାହିଁ। ଏବେ ଅନେକ ଦିନ ପରେ ପୁଣି ଗୋଟିଏ କୋଚିଲାଖାଇ ପକ୍ଷୀ ଦେଖି ଲୋଭ ଏଡ଼ାଇ ପାରିଲି ନାହିଁ। ମୁଣ୍ଡିଆ ଚଢ଼ିବାକୁ ବାହାରିଥିଲି। ପ୍ରେମ୍ ବାରଣ କରି କହିଲେ- " ଅବି ତା ପଛରେ ଧାଇଁବା ଅନୁଚିତ ମୋହନ। ଯାତ୍ରା ବେଳେ ମୁଖ୍ୟ ଉଦ୍ଦେଶ୍ୟରେ ଲକ୍ଷ୍ୟ ରହିବା ଉଚିତ। ନଚେତ୍ କାମ ଭଣ୍ଡୁର ହୋଇଯିବା ଯଥେଷ୍ଟ ସମ୍ଭାବନା। ମୂଳକୁ ଛାଡ଼ି ଡାଳ ପ୍ରତି ଆକୃଷ୍ଟ ହେଲେ ଫଳପ୍ରାପ୍ତି ଦୁରୂହ ହୋଇଯାଏ। କିଏଜାଣେ କୋଚିଲାଖାଇ ଆମର ଦିନଯାକର ସମୟ ନେଇଯାଇପାରେ ? ଆମେ ଶୀଘ୍ର ଚିର୍ମିରା ପହଞ୍ଚିବା ଜରୁରୀ..."

ପ୍ରେମ୍‌ଙ୍କ ସମୟୋଚିତ ପରାମର୍ଶ ମାନିଲି। ଲୋଭକୁ ମନରୁ ଦୂର କରି ବାଟ ଆଗେଇଲୁଁ। ଗ୍ରୀଷ୍ମ ଦିନରେ ହାଲୁକାଏ ଶୀତଳ ପବନ ଗବାକ୍ଷ ବାଟେ ଘର ଭିତରକୁ ପଶି ଆସିଲା ଭଳି କୋଚିଲାଖାଇ ସମ୍ବନ୍ଧରେ ଆଲୋଚନା ଚାଲିଲା କିଛି ସମୟ। ଚଢ଼େଇର ନାଁ 'କୋଚିଲାଖାଇ'। ଇଂରାଜୀରେ 'ହର୍ଣ୍ଣବିଲ୍' କହନ୍ତି। କୋଚିଲାଖାଇର ଓଡ଼ିଆ ନାମକରଣ ମଧ ଅଦ୍ଭୁତ। କୋଚିଲା ଫଳ ଖାଆନ୍ତି ବୋଲି ହୋଇପାରିଥାଏ। କିନ୍ତୁ ଏପରି ଧାରଣା ହୁଏତ ଠିକ୍ ନୁହେଁ। ଯେଉଁ ଅଞ୍ଚଳରେ କୋଚିଲା ଗଛ ପ୍ରଚୁର,

ସେଠାରେ ଏ ପକ୍ଷୀ ଦୁଷ୍ପ୍ରାପ୍ୟ। ଫଳାହାରୀ ପକ୍ଷୀଟିଏ ନିଶ୍ଚୟ। ବରଫଳ, ଓସ୍ତଫଳ, ଚାର୍‌ଫଳ ତା'ର ପ୍ରିୟ। କିନ୍ତୁ ଝିଣ୍ଟିକା, କଙ୍କି, ଉଇ, ବିରୁଡ଼ି, ଭଅଁର, ଝରିପୋକ ଆଦି ପତଙ୍ଗ ଆହାର କରେ। କୋଚିଲା ଫଳ ସହିତ ବିଶେଷ ସମ୍ବନ୍ଧ ନ ଥାଏ। ବଡ ବିଚିତ୍ର ଏହାର ପ୍ରକୃତି ଓ ସୃଷ୍ଟି। ପ୍ରାୟ ଚିଲ ଆକାରର ଲମ୍ବା, କିନ୍ତୁ ଚିଲଠୁ ପତଳା। ରଙ୍ଗ ଧୂସର ବାଦାମି। ପରରେ ଓ ଛାତିରେ ଧଳା ପରର ଛିଟା। ଲମ୍ବ ପୁଚ୍ଛଟିରେ ପରଗୁଡ଼ିକ ସାନରୁ ବଡ କ୍ରମେ ଖଞ୍ଜା ହୋଇଥାଏ ଓ ପ୍ରତ୍ୟେକ ପରର ଅଗ୍ରଭାଗର ଠିକ୍ ଉପରକୁ କଳା ପଟିଟିଏ ଥାଏ। ଉଡ଼ିଲା ବେଳେ ବା ଲାଞ୍ଜକୁ ଉପରକୁ ଟେକି ଭୂଇଁରେ ଚାଲି ଚାଲି ହୁଙ୍କାରୁ ବାହାରୁଥିବା ଝିଡ଼ିପୋକ ଧରୁଥିବା ବେଳେ ଏହି ପୁଚ୍ଛଟି ପଙ୍ଖା ଭଳି ଖୋଲିଯାଇ ସୁନ୍ଦର ଦିଶିଯାଏ। ଦେହ ତୁଳନାରେ ଖୁବ୍ ବଡ ଶୁଆ ନାକିଆ ଓସାରିଆ ତୀକ୍ଷ୍ଣ ଫିକା ହଳଦିଆ ଚଞ୍ଚୁ। ଲମ୍ବା ବେକ। ରାଜକୀୟ ଠାଣିରେ ଚାହେଁ। ମାଈ ଓ ଅଣ୍ଡିରା ଯୋଡି ହୋଇ ରହନ୍ତି। ମାଈ ଗର୍ଭ ହେଲେ, ପୁରୁଷ ପକ୍ଷୀ ତା' ପାଇଁ ଗଛ କୋରଡରେ ବସା ପ୍ରସ୍ତୁତ କରେ। ସେଥିରେ ମାଈ ଡିମ୍ବ ଦେବା ପାଇଁ ଆବଦ୍ଧ ରହେ। ତା' ଚତୁର୍ଦ୍ଦିଗ ପୁରୁଷ ପକ୍ଷୀ ମାଟି ଦ୍ୱାରା ବନ୍ଦ କରିଦିଏ ପାଟିର ଲାଳ ମିଶାଇ, ଠିକ୍ ଯେମିତି କାଠ ବା କାନ୍ଥରେ ଭଅଁର ବସା ବାନ୍ଧିଥାଏ। କିନ୍ତୁ ତଫାତ୍ ଏତିକି ଯେ ଚଞ୍ଚୁଟି ଦିଶିବା ପାଇଁ ମାତ୍ର କ୍ଷୁଦ୍ର କଣାଟିଏ ରଖିଥାଏ ଖୁବ୍ କୌଶଳରେ। ଏଇ କଣା ବାଟେ ପୁରୁଷ ପକ୍ଷୀ ଗର୍ଭିଣୀ ସଙ୍ଗିନୀ ପାଇଁ ଖାଦ୍ୟ ଆଣି ସ୍ତ୍ରୀ ଚଞ୍ଚୁରେ ଦେଇଥାଏ ପାରା ଯୁଗଳଙ୍କ ପ୍ରେମାଭିସାର ଭଳି। ବନ୍ଦିନୀ ସ୍ତ୍ରୀ ପକ୍ଷୀ ବାହାର ଜଗତ ଆଦୌ ଦେଖିପାରେ ନାହିଁ। ସେ ବନ୍ଦୀଶାଳାରେ ଡିମ୍ବ ପାରି ଛୁଆ ଫୁଟାଏ ଏବଂ ଶାବକ ବଡ଼ ହେଲା ପର୍ଯ୍ୟନ୍ତ ସେଠି ରହିବାକୁ ହୁଏ- ଦୀର୍ଘ ଅଢ଼େଇ ମାସ ସ୍ତ୍ରୀ କୋଚିଲାଖାଇର କାରାବାସ କାଳ। ଏଣୁ ବଡ଼ ବିଚିତ୍ର ଲାଗେ ଏଇ ପକ୍ଷୀ ଜାତିର ଦାମ୍ପତ୍ୟ ଚରିତ୍ର- ଅଦ୍ଭୁତ ଏ ସ୍ତ୍ରୀ ପକ୍ଷୀର ସତୀତ୍ୱ। ଆଶ୍ଚର୍ଯ୍ୟ ଲାଗେ ଏମାନଙ୍କ ଆଗରେ ମାନବୀର ସତୀତ୍ୱ ହାର ମାନିଯିବ। ଏହି ଦୁର୍ଲ୍ଲଭ ପକ୍ଷୀମାନଙ୍କ ସଂଖ୍ୟା କ୍ରମଶଃ କମି ଆସିଲାଣି, ହୁଏତ ସମ୍ପୂର୍ଣ୍ଣ ଲୋପ ପାଇଯିବ। ଜଙ୍ଗଲର ଦ୍ରୁତ ଅବକ୍ଷୟ ଏହାର କାରଣ।

ଏମିତି ଗପୁ ଗପୁ ପନ୍ଦର କିଲୋମିଟର ରାସ୍ତା ଅତିକ୍ରମ କରି ସାରିଥିଲୁ, ବାଟଚଲା ଜଣାପଡି ନ ଥିଲା। ଚିର୍ମିରା ପହଞ୍ଚୁ ପହଞ୍ଚୁ ମଧ୍ୟାହ୍ନ ଅତୀତ। ଆମକୁ ଦେଖି ଆନନ୍ଦ ଅଧୀର ହୋଇ ଶର୍ମା କହି ଉଠିଲେ- "ଆମେ ସବୁ ତୁମକୁ ଅପେକ୍ଷା କରି ବସିଛୁ। ଏଠି ବାଘ ବହୁତ ଉତ୍ପାତ କଲାଣି। ଲୋକ ଖାଇଲାଣି। ଯାକୁ ଶେଷ ନ କଲେ ଆଉ ରକ୍ଷା ନାହିଁ..."

◆

ଆମକୁ ପାଇ ଶର୍ମା ହତାଶା ଭିତରେ ସାହସ ବାନ୍ଧିଲେ- ତାଙ୍କ ମୁହଁରୁ ମୁଁ ଅନୁମାନ କଲି। ସେ ଉତ୍‌ଫୁଲ୍ଲ ଦିଶିଲେ। ତାଙ୍କ ଦମ୍ଭ ଦ୍ୱିଗୁଣିତ ହୋଇ ଉଠିଲା। ଗାଁର ଆଦିବାସୀ ମର୍ଦ୍ଦମାନେ ବେଢ଼ି ଆସିଲେ। ଅଳ୍ପ ଦୂରରେ ମାଇଝି ଓ ଧାଙ୍ଗଡୀମାନେ ରୁଣ୍ଡହୋଇ ଆମକୁ ଅଭ୍ୟର୍ଥନା ଭଙ୍ଗୀରେ ଅନାଇ ଥା'ନ୍ତି। ଇଲାକାର ଲଙ୍ଗଳା, ଅର୍ଦ୍ଧଲଙ୍ଗଳା ଆଦିବାସୀ ଶିଶୁମାନେ କ'ଣ ଗୋଟେ ଘଟିବାକୁ ଯାଉଛି ଆବେଗରେ ଆମ ଆଡ଼କୁ ଆଶ୍ଚର୍ଯ୍ୟ ଆଖିରେ ଚାହିଁଥାନ୍ତି। ସଭିଙ୍କ ମୁହଁରେ ବାଘ ଉପଦ୍ରବର ଭୟ ଛାପ, ଆତଙ୍କ ଲହରୀ। ବିଷାଦ ବିବର୍ଣ୍ଣ ମୁହଁଗୁଡିକୁ ମୁଁ ପଢ଼ି ପାରିଥିଲି। ଶୁଣିଲି ଦିନବେଳେ ମଧ ଲୋକମାନେ କାମଧନ୍ଦା ଛାଡ଼ି ପଦାକୁ ବାହାରିବା ବନ୍ଦ କରିଦେଲେଣି। ଆଉ ମଧ ଜାଣିଲି, ସ୍ୱଚ୍ଛ ଦିବାଲୋକରେ ବାଘ ଗାଁ ଭିତରକୁ ପଶି ଆସି ପିଲା ଟାଣି ନେଉଛି। ଲୋକମାନଙ୍କର ଏଠାରେ ତ୍ରାହି ତ୍ରାହି ଡାକ; ଚତୁର୍ଦ୍ଦଗ ଜାରି ରହିଛି ବ୍ୟାଘ୍ର ଆତଙ୍କ। ଆମେ ଏଇ ଉପଦ୍ରୁତ ଅଞ୍ଚଳରେ ପହଞ୍ଚିବା ମାତ୍ରେ ମନେହେଲା ଯେମିତି ମ୍ରିୟମାଣ ନିର୍ଜ୍ଜୀବ ମଣିଷ ଦେହରେ ଜୀବନ ସଞ୍ଚାରିତ ହେଲା!

ଗାଁ ଦାଣ୍ଡର ବୃହତ୍ ତେନ୍ତୁଳି ବୃକ୍ଷ ମୂଳେ ତକ୍ତପୋଷ ଉପରେ ପ୍ରେମ୍ ଓ ମୁଁ ଚକା ପକାଇ ବସିଥିଲୁ। ଆମକୁ ଘେରି ରହିଥିଲେ ବନବାସୀ ଗାଉଁଲୀ ଲୋକମାନେ। ଗୋଟିକ ପରେ ଗୋଟିଏ ଘଟଣା ଲୋକମୁଖରୁ ଶୁଣିବାକୁ ଲାଗିଲୁ।

ମାତ୍ର ଗତକାଲିର ଘଟଣା। ଚିର୍ମିରାଠାରୁ ଦୁଇ କିଲୋମିଟର ଦୂରରେ ଭଅଁରଖୋଲ। ଛୋଟ ବଣୁଆ ଗାଁଟିଏ- ତେମେଣି ମୁଣ୍ଡିଆର ପାଦ ଦେଶରେ। ଘର ବୋଲି ମାତ୍ର ସାତ ଆଠଟି। ଭୂୟାଁ ପଡା। ସ୍ତ୍ରୀ, ପିଲା, ପୁରୁଷ ମିଶି ଜନସଂଖ୍ୟା ଷାଠିଏ ସତୁରି ଭିତରେ। ଚିତା ଭୟରେ ଗାଁରୁ ଗାଈଗୋରୁ ଜଙ୍ଗଲକୁ ଚରିବାକୁ ଯାଉନାହାନ୍ତି ହପ୍ତାଏ ହେବ। କିନ୍ତୁ ଆହାର ବିନା ପ୍ରାଣୀ କ'ଣ ବଞ୍ଚି ପାରେ! ବାଘ ଅତ୍ୟାଚାର ଯୋଗୁଁ ଜଙ୍ଗଲ ବୁଲିବା ନିଷିଦ୍ଧ ବୋଲି ଗୋରୁମାନେ ବୁଝିବେ କାହିଁ? ସେମାନେ ଖାଦ୍ୟ

ପାଇଁ ହମ୍ବାରଡ଼ି ଦେଲେ। କା' କଥା ନ ମାନି ବାଧ୍ୟ ହୋଇ ଶୁକ୍ରୁ ଗାଈପଲ ଫିଟେଇ ଦେଇଥିଲା ଘଡିଏ ପାଇଁ। ଖାଉନ୍ଦର କଥା ନ ମାନି ସେମାନେ ଏକମୁହାଁ ଧାଇଁଲେ ବଣ ଭିତରକୁ ଯେଉଁଠି ଅଛି ସେମାନଙ୍କ ନିତିଦିନିଆ ଚରାଭୂଇଁ- ପ୍ରଚୁର କଅଁଳ ଘାସ ଓ ପତ୍ର। ଶୁକ୍ରୁର ନିଷେଧାଜ୍ଞା ସେମାନେ ଆଦୌ ମାନିଲେ ନାହିଁ। ଭୋକ ବେଳରେ କଟକଣା ଶୁଣୁଛି କିଏ ? ପ୍ରତି ଜୀବନର ପ୍ରଥମ ଓ ପରମ ଆବଶ୍ୟକତା- ଖାଦ୍ୟ। ଶୁକ୍ରୁ ବାଧ୍ୟ ହୋଇ ଧାରୁଆ ହତିଆର ଓ ଠେଙ୍ଗା ଧରି ଗୋରୁଙ୍କ ପଛେ ଧାଇଁଲା। ଶୁକ୍ରୁର ମାଇଜି (ସ୍ତ୍ରୀ) ନାହିଁ। ଦୁଇ ବର୍ଷ ତଳେ ଅଜଣା ରୋଗରେ ଆକ୍ରାନ୍ତ ହୋଇ ମରିଛି। ଛାଡ଼ି ଯାଇଛି ଗୋଟେ ତିନି ବର୍ଷର ଛୁଆ। ପୁଅକୁ ପାଖ ପଡ଼ିଶା ସୁକ୍‌ଟା ଭୂୟାଁ ଘରେ ଛାଡି ଗୋରୁ ଗୋଠ ପଛରେ ଚାଲିଯାଇଥିଲା ଶୁକ୍ରୁ। ଗୋରୁମାନେ ତା'ର ସର୍ବସ୍ୱ- ଜୀବନ ଓ ଜୀବିକା। ଏଣେ ବାଘ ଭୟ। ବେଳ ବୁଡ଼ ହୋଇ ହୋଇ ଆସୁଛି। ତରବର ହୋଇ ଗାଈମାନଙ୍କୁ ଅଧା ଚରାରୁ ଅଡ଼େଇ ଆଣି ଘରବାହୁଡ଼ା ହେଲା। ଗୁହାଳରେ ସେମାନଙ୍କୁ ଖଟାଇ ଦେଇ ପୁଅକୁ ଆଣିବା ପାଇଁ ପଡ଼ିଶା ଘରକୁ ଗଲା। କିନ୍ତୁ ପୁଅ କାହିଁ ? ପଡ଼ୋଶୀ ସୁକ୍‌ଟାକୁ ବିକଳ ହୋଇ ପଚାରିଲା। ସେ କହିଲା- " ତୁ ଗଲା ପରେ ଭୁଜା ଖାଇ ସେଇଠି ଖେଳୁଥିଲା, ଏବେ ଥିଲା... । ଗଲା କୁଆଡ଼େ ?" ଶୁକ୍ରୁର ହାଲକ ଶୁଖିଲା। ତା'ର ଆର୍ତ୍ତ ଚିତ୍କାର ଶୁଣି ଗାଁ ଲୋକେ ରୁଣ୍ଡ ହୋଇଗଲେ। ସମସ୍ତେ ଗାଁ ସାରା ଖୋଜି ଆସିଲେ- ଦାଣ୍ଡ, ବାଡ଼ିପଟ, ପଥର ତଳ, ବୃକ୍ଷମୂଳ। ପୁଅର ପତ୍ତା ନାହିଁ, ସତ୍ତା ମଧ୍ୟ ନାହିଁ। ତାକୁ ବାଘ ଝାମ୍ପି ନେଇଥିବାର କେହି ଦେଖି ନାହିଁ। କିନ୍ତୁ ବାଘ ଛଡ଼ା ଅନ୍ୟ କେହି ନୁହେଁ ବୋଲି ସମସ୍ତଙ୍କ ଧାରଣା ଦୃଢ଼ ହେଲା। ସମସ୍ତେ ମିଶି ବୋବାଳି ଛାଡ଼ି ରଡ଼ିଲେ। କେବଳ ଶବ୍ଦର ପ୍ରତିଧ୍ୱନି ଛଡା କିଛି ଉତ୍ତର ମିଳିଲା ନାହିଁ ଆରପଟ ପର୍ବତ ଶିଖର ଆଡୁ। ପାହାଡ଼ିଆ ଅନ୍ଧାର ପକ୍ଷ ମେଲି ମାଡି ଆସୁଥିଲା। ଅନ୍ଧାରମଖା ଉଚ୍ଚ ପାହାଡ଼ ଉପରୁ ଭୟର କଳା ବଉଦ ଘୋଟି ଆସୁଥିଲା ମୁଲକ ଯାକରେ। ବାଘ ପାଟିରେ ଶୁକ୍ରୁର ଏକମାତ୍ର ପୁଅ ରାତିକର ଆହାର ହୋଇ ସାରିଛି। ଚିତ୍କାର କେବଳ ବୃଥା।

ଶୁକ୍ରୁ ଭୂୟାଁ ମୋର ଗୋଡତଳେ ପଡି ବହେ ବାହୁନି କାନ୍ଦିଲା। ତା' କ୍ରନ୍ଦନରେ ମେଦିନୀ ଥରିଲା। କାନ୍ଦି କାନ୍ଦି ତା ସମ୍ବଲପୁରୀ ମିଶା ଭୂମିଜ ଭାଷାରେ କହିଲା- "ସାହେବ୍, ମୋର, ଯୁଆନ୍ ମାଇଝି ମରିଗଲା ଏଡିକି ଟିକେ ଛୁଆକେ ଛାଡ଼ିକରି। ମୁଇଁ ଆଉ ଗୁଟେ ମାଇଝି ନାଇଁ ଆନି, ଇ ଛୁଆର ଲାଗି। ମା' ନାଇଁଥିବା ଛୁଆକେ ବଡ ଦୁଃଖେ ପାଲିଛେଁ। ହେଲେ, ତା'ର୍ ମା' ମୋର୍ ପାଖେ ନାଇଁ ରଖିଲା। ଏତାର୍ ମା' ପେଟେନ୍ ହଇକିରି ବୁଲୁଥିବାର ମୁଇଁ ଦେଖିଛେଁ। ମୋର ଡର୍‌ହେ କିଛି ନାଇଁ କରୁଥିଲା। ମୁଇଁ ଇ ଶଳାର୍ ଛୁଆଲାଗି କେନ୍‌ସି ଆଡେ ନାଇଁ ଯାଇ ପାରୁଥିଲି। ବହୁତ

ଦିନ ହେଲା ବାଘର ଡର୍ ହେ ଗାଈ ଗୋରୁମାନେ ଜଙ୍ଗଲକେ ନାଇଁ ଯାଇ ପାରୁଥିଲେ ଚର୍‌ବାକେ। ହେଲେ ଗାଁ ଲୋକର୍ କଥା ନାଇଁ ମାନି କରି ଗାଈଗୋରୁକେ ବର୍‌ବାକେ ଛାଡି ଦେଲି। ଗୁହାଲନୁ ଢ଼ିଲି ଦେଲା ମାତ୍ରେ ସିଧା ଧାଇଁ ପସାକେ ପଲାଲେ। ସେନେ ବଢ଼ିଆ ଘାସ ପତର୍ ଥିସି। ଯେନ୍ତା ବେଲ୍ ବୁଡ଼୍‌ବାକେ ବସୁଛେ, ସାଙ୍ଗେ ସାଙ୍ଗେ ସେମାନକେ ପିଟି ପିଟି ଘର ମୁହାଁ କରିଦେଲି। ହେଲେ ମୋର୍ ଛୁଆ ଇ ସଂସାର୍‌ନେ ନାଇଁ ଥିଲା। ତାର୍ ମା' ପେତେନ୍ ହଇକିରି ବଘିଆ ହେଲା, ଆଉ ତାକେ ସାଥେ ନେଇଗଲା। ବଡ଼ ମୁସ୍କିଲଆଏ, ସାହେବ, ମୋର୍ ସବୁ ସରିଗଲା। ଆଉ କାଣା କର୍‌ବି, କେନ୍ତା ବଞ୍ଚିମି ? ପେତେନ୍ କେ ତୁମ୍‌ହେଁ ମାରିପାରିବ ଭାଏଲ୍ ସାହେବ୍ ?"

ଭୋ ଭୋ ହେଇ କାନ୍ଦୁଥିଲା ଶୁକୁ ଭୁୟାଁ। ମୁଁ ତାକୁ ସାନ୍ତ୍ୱନା ଦେଲି। କହିଲି- " ଏ ଜଙ୍ଗଲର ମଣିଷ ତୁ। ବାଘ ଭାଲୁ ସଙ୍ଗେ ଯୁଝିଛୁ। ଆଉ ପେତେନ୍‌କୁ କ'ଣ ମାରିପାରିବୁନି ? ପେତେନ୍‌ଟା କି ଛାର ଜନ୍ତୁ ଯେ ! ତୁ ମୋ ସଙ୍ଗେ ଆସ୍। ଗୋଟାଏ ଗୁଳିରେ ଶେଷ କରିଦେବି।"

ଆଖି ପୋଛି କହିଲା ଶୁକୁ- " ସାହେବ୍ ବାଘ ଭାଲୁକେ ଗୁଳିନେ କାନ୍ ମାରିଦେବ ସିନା, ହେଲେ ପେତେନ୍ ନାଇଁ ମରେ। ତା'ର୍ ଦେହେଁ ନାଇଁଥାଏ, ସେଟା ତ ଖାଲି ଛାଏଁ, ଆଉ ପବନ ଆଏ। ମର୍‌ଲା ପରେ, ଦିନେ ଜନକ ରାଏତ୍‌ନେ, ହାମ୍‌ର ଘର୍ ଦୁଆରେ ଠିଆ ହଇକରି ମୋର୍ ପୁଅକୁ ଡାକ୍‌ଲା। ସାଙ୍ଗେ ସାଙ୍ଗ୍ ଇ ମନ୍ତର୍‌ଲା ବାଡ଼ିକେ ଧରି ଧରି ଦୌଡ଼ିଲି ତା'ର୍ ପଛେ। ଯେତେଭି କଲି ବାଡିକେ ତା'ର୍, ଦେହେନେ ଛୁଆବାକେ, ନାଇଁ ପାର୍‌ଲି। ଗଛ୍ ଉପର୍‌କେ ଧଡାକ୍ ପଲେଇଗଲା, ଶୂଇନ୍ କେ ଉଡିଗଲା ବଁଗ୍ ଢ଼ଙ୍ଗର୍। ଜନକ ରାଏତନେ ମୁଇଁ ନିଜେ ଦେଖିଛେଁ ଯୁଡେ ବଁଗ୍ ଢଙ୍ଗର ଉଡିଗଲା।"

ବଡ଼ ଅଦ୍ଭୁତ ଏ ବନବାସୀମାନଙ୍କର ବଦ୍ଧ ଧରଣା, ଅନ୍ଧ ଭାବନା ଓ ଭୌତିକ ଚେତନା। ପୁରୁଷ ପୁରୁଷ ଧରି ଏମାନଙ୍କ ବିଶ୍ୱାସ ଓ ଚିନ୍ତାଧାରା ନଦୀର ଚିର ପ୍ରବାହିତ ସ୍ରୋତଭଳି ବହି ଚାଲିଛି। ବଡ ସରଳ ବିଶ୍ୱାସୀ ଏମାନେ। ଭୂତ ଗୋଟାଏ ମନର କଳ୍ପନା- ଯେତେ ବୁଝାଇବାକୁ ଚେଷ୍ଟା କଲି, ସେମାନେ ମାନିବାକୁ ପ୍ରସ୍ତୁତ ନୁହନ୍ତି। ଭୂତ, ହାଡ଼ବାଇ, ଡାହାଣୀ, ଚିରୁଗୁଣୀ, ପେତାଶୁଣି ଆଦି ପ୍ରେତାତ୍ମାର ଅସ୍ତିତ୍ୱରେ ପଲ୍ଲୀଜୀବନ ପ୍ରବାହିତ। ଅତୃପ୍ତ ଯୁଆନ ମଣିଷ ବା ଯୁବତୀ ସ୍ତ୍ରୀ ଯଦି ଅକାଳରେ ମୃତ୍ୟୁବରଣ କରେ ତା'ର ପ୍ରେତ ଜୀବନର ଅପୂରଣ ଇଚ୍ଛା ସକାଶେ ନାନା କାଣ୍ଡ ଭିଆଏ। ଏମିତି ବେଳେବେଳେ ଧୂଳିବାଲି ହୋଇ ପବନରେ ଶବ୍ଦ କରି ଉଡ଼େ, ଗୋଡ଼ି ପଥର ହୋଇ ଘର ଭିତରେ ଗଦା ହୋଇଯାଏ; ପୁଣି କେତେବେଳେ ସୁସୁ ବତାସ ହୋଇ ଅନେକ କ୍ଷତି ଘଟାଏ ଅଥବା ପ୍ରେତ ବାଘ ହୋଇ ମଣିଷ ଖାଏ; ବହୁ

ନାରଖାର କରେ। ମୋର ବନସ୍ତ ଗସ୍ତ କାଳରେ ଏମିତି ଅନେକ କଥା ମୁଁ ଲୋକ ମୁଖରୁ ଶୁଣିଛି। ଆଶୁଭକୁ ଦୂର କରିବା ପାଇଁ ବନବାସୀମାନେ ରକ୍ତରେ ବିଶ୍ୱାସ କରନ୍ତି- ପଶୁ ହେଉ ବା ନରର ହେଉ। ଏମାନଙ୍କ ଦୃଢ଼ ବିଶ୍ୱାସ ଯେ ପ୍ରେତର କୋପ ଦୃଷ୍ଟି ଯୋଗୁଁ ଶରୀର ଅସୁସ୍ଥ ହୁଏ। ସୁସ୍ଥ ହେବା ପାଇଁ ଗୁଣିଗାରୁଡ଼ି ଫୁମନ୍ତ ଦରକାର ହୁଏ। ବୁଢ଼ାରାଜା ଠାକୁର କିମ୍ୱା ମଙ୍ଗଳା ଠାକୁରାଣୀଙ୍କ ପାଖେ ବଏଗା (କାଳିସୀ) ଲାଗେ। ବଂଏଗା ପଶୁ ଅବା ପକ୍ଷୀର ରକ୍ତ ପିଏ। ବଳାକା ଅଇଁଠା ରକ୍ତ ଘରେ ସିଞ୍ଚି ଶୌଚ ହୁଅନ୍ତି ସମସ୍ତେ। ତା'ପରେ ଘର ଲୋକଙ୍କୁ ଜ୍ୱର ହୁଏ। ବଏଗାଠୁ ପତ୍ର, ପାଦୁକ ଖାଇ ଜ୍ୱର ଭଲ ହୁଏ। ଯାହାକୁ ମନ୍ତ କାଟୁ କରି ନ ଥାଏ ସେ ମରେ। ଯିଏ ବଞ୍ଚିଯାଏ, ସେ ନୂଆ ଜନମ୍ ପାଏ। ମନ୍ତୁରା ଡେଉଁରିଆ ହାତରେ ବାନ୍ଧେ। ପ୍ରେତ ଶାନ୍ତି ପାଏ, ଶାନ୍ତି ପା'ନ୍ତି ଲୋକମାନେ; ରକ୍ଷା ପାଆନ୍ତି ବନବାସୀମାନେ।

ବସନ୍ତ ବା ହଇଜା ରୋଗରେ ମୃତ୍ୟୁବରଣ କରିଥିବା ମହିଳାକୁ ଏମାନେ ପୋଡନ୍ତି ନାହିଁ ବା ପୋତନ୍ତି ନାହିଁ। ମଡ଼ାଙ୍କୁ ମା' ବୋଲି ସମ୍ବୋଧନ କରି ପାହାଡ଼ କଡ଼ ବା ଝରଣାକୂଳ କୌଣସି ବୃକ୍ଷମୂଳେ ଫୋପାଡ଼ି ଦେଇଥାନ୍ତି। ତା'ର ମଡ଼ା ଶ୍ୱାନ, ଶ୍ୟେନ, ଶୃଗାଳମାନଙ୍କର ଆହାର୍ଯ୍ୟ ହୁଏ। କିନ୍ତୁ ଗର୍ଭବତୀ ସ୍ତ୍ରୀ ପିଲା ପ୍ରସବ ନ କରି ପାରି ଯଦି ମରିଯାଏ, ତା'ର ଶବକୁ ସେପରି ଫୋପାଡ଼ି ନ ଦେଇ, ତାକୁ ଉଲଗ୍ନ କରି ଗଛରେ ଟାଙ୍ଗି ଦିଅନ୍ତି ଅତି ବୀଭତ୍ସ ଭାବେ। ବଡ଼ ଭୟାନକ ସେ ଦୃଶ୍ୟ। ଝୁଲନ୍ତା ଶବକୁ କାଉ ଓ ଶାଗୁଣାମାନେ ଖାଆନ୍ତି। ସେଥିରୁ ପଚା ମାଂସ ଖଣ୍ଡ ଖଣ୍ଡ ହୋଇ ଭୂଇଁରେ ଗଳି ପଡ଼େ; କୁକୁର, ବିଲୁଆ, ଗଧିଆମାନଙ୍କ ଆହାର ହୁଏ। ବୃକ୍ଷରେ କଙ୍କାଳ ଝୁଲୁଥାଏ ବହୁଦିନ ପର୍ଯ୍ୟନ୍ତ। ମୃତ ମହିଳାର ପ୍ରେତ ବାସ କରେ ସେଇ ବୃକ୍ଷରେ। କେବଳ ରାତିରେ ସେ ଦୃଶ୍ୟ ହୁଏ ବିଭିନ୍ନ ବେଶରେ, ରୂପରେ, ସ୍ୱରରେ। ସେଇ ବାଟେ ରାତିରେ ପଥଚାରୀମାନେ ଅତିକ୍ରମ କଲାବେଳେ ପଛରୁ ଶୁଣନ୍ତି ତା'ର ବିକଟାଳ ସ୍ୱର- ରହ ରହ ମୁଇଁ ଆସୁଛି, ମୁଇଁ ଆସୁଛି, ମତେ ଦେ, ମତେ ଦେ ଇତ୍ୟାଦି। ଏହା ପରେ ଇଲାକାରେ ବହୁ ଅଘଟଣ ଘଟେ। ଅନାବୃଷ୍ଟି, ମରୁଡି, ବାତ୍ୟା ଆଦି ବହୁ ପ୍ରାକୃତିକ ବିପର୍ଯ୍ୟୟ ସଂଘଟିତ ହୁଏ, ବାଘମାନେ ମାତନ୍ତି, ଲୋକମାନଙ୍କର ଅନେକ ଅନିଷ୍ଟ ହୁଏ, ଅଜଣା ବ୍ୟାଧିରେ ଲୋକେ ମରନ୍ତି- ପ୍ରେତ ଶାନ୍ତି ପାଇବା ପର୍ଯ୍ୟନ୍ତ। ଏପରିସ୍ଥଳେ ପ୍ରେତ ସନ୍ତୁଷ୍ଟ ହେବା ପାଇଁ ଜଘନ୍ୟ ପ୍ରଥାଟିଏ ପ୍ରଚଳିତ। ମୃତ ଗର୍ଭିଣୀ ସ୍ତ୍ରୀର ସ୍ୱାମୀ ଆଉ ଏକ ଧାଙ୍ଗଡୀକୁ ବିବାହ କରେ। ସେ ଗର୍ଭଧାରଣ କରେ ଏବଂ ପ୍ରସବ ପରେ ତା'ର ସେଇ ପ୍ରଥମ ସନ୍ତାନ ଉପରେ ପ୍ରେତର ଦୃଷ୍ଟି। ପ୍ରେତର ଶାନ୍ତି ପାଇଁ ସେଇ ଶିଶୁକୁ ବଳି ଦେବାକୁ ପଡ଼େ। ଯଦି ଶିଶୁର ପିତାମାତା ସ୍ୱ ଇଚ୍ଛାରେ ତାହା ନ କରନ୍ତି ତେବେ ଗାଁର ଲୋକମାନେ ଏକଜୁଟହୋଇ ପିଲାକୁ ଜବରଦସ୍ତ ଧରିନେଇ

ଯା'ନ୍ତି ପ୍ରେତ ବାସ କରୁଥିବା ସେଇ ବୃକ୍ଷମୂଳକୁ। ସେଠି ପ୍ରଥା ଅନୁଯାୟୀ ବଳି ପର୍ବ ଅନୁଷ୍ଠିତ ହୁଏ। ଗଞ୍ଜା, ଛେଳି, ମେଣ୍ଢା, ଗୋ ଆଦି ମାନସିକ ମତେ ବଳି ପଡ଼ନ୍ତି; ସେମାନଙ୍କ ସହିତ ବଳି ପଡ଼େ ସେଇ ଉଦ୍ଦିଷ୍ଟ ହତଭାଗା ଶିଶୁଟି। ତା' ରକ୍ତରେ ଶାନ୍ତ ହୁଏ ପ୍ରେତ। ତା' ପରେ ଅଞ୍ଚଳରୁ ରିଷ୍ଟ ଦୂର ହୁଏ, ମଙ୍ଗଳ ହୁଏ ସମସ୍ତଙ୍କର- ବନବାସୀମାନଙ୍କର ଦୃଢ଼ ବିଶ୍ୱାସ। ବଡ଼ ଅଜବ ଏ ପ୍ରତିକାରର ପଥ, ଅତୀବ ମର୍ମାନ୍ତିକ।

ଏପରି ଏକ ଜଘନ୍ୟ ଘଟଣାର ପ୍ରତ୍ୟକ୍ଷଦର୍ଶୀ ଥିଲେ ମୋର ପରିଚିତ ବୃଦ୍ଧ ବନ୍ଧୁ ସେଣ୍ଟକ୍ଲେୟାର ମ୍ୟାକ୍‌ମିଲାନ ହିନ୍ନା। ବ୍ରିଟିଶ ରାଜତ୍ୱର ସାୟାହ୍ନ କାଳରେ ତାଙ୍କ ପିତା ରବର୍ଟ ସେଣ୍ଟକ୍ଲେୟାର ହିନ୍ନା ଭାରତରେ ରେଲୱେ କଣ୍ଟ୍ରାକ୍ଟର ଥାନ୍ତି। ବେଙ୍ଗଲ ନାଗପୁର ରେଲୱେର ଠିକାଦାର। ସ୍କଟଲାଣ୍ଡର ଏଡିନ୍‌ବରା ତାଙ୍କ ଜନ୍ମସ୍ଥାନ। ଭାରତ ଭୂଇଁରେ କର୍ମ ସଂସ୍ଥାପିତ, ଅବସ୍ଥାପିତ। ଝାରସୁଗୁଡ଼ାର ଉପକଣ୍ଠ ସରବାହାଲରେ ତାଙ୍କର ରାଜପ୍ରସାଦ ଭଳି ଅଟ୍ଟାଳିକା ଏବେ ବି ସୁଦୃଢ଼ ରହିଛି। ତାହା ସାହେବ କୋଠି 'ହାୱାରାଡ଼' ନାମରେ ଖ୍ୟାତ। ପିତାଙ୍କ ଅନ୍ତେ ମ୍ୟାକ୍‌ମିଲାନ ହିନ୍ନା ବିପୁଳ ଠିକା କାମର ଦାୟିତ୍ୱ ନିଅନ୍ତି। ଦୁର୍ଗମ ଘାଟୀ ଓ ଘନ ଜଙ୍ଗଲ ଭିତରେ ତମ୍ବୁ ଟାଣି ମାସ ମାସ ଧରି ରହିବାକୁ ହୁଏ ରେଳରାସ୍ତା ନିର୍ମାଣ ପାଇଁ।

ଦିନକର ଅନୁଭୂତି। ତିମିରାଚ୍ଛନ୍ନ ରାତି। ମାଘ ମାସରେ ଶୀତର ପ୍ରାବଲ୍ୟ ବଢ଼ି ଯାଇଥାଏ ଜଙ୍ଗଲ ରାଇଜରେ। ସବୁଆଡ ଶୁନ୍‌ଶାନ୍। ନିଶା ଗର୍ଜୁଥାଏ। ତମ୍ବୁ ପାଖରେ ଜଣେ ଆଦିବାସୀ ନାରୀର କାତର କଣ୍ଠସ୍ୱର ଶୁଣି ହିନ୍ନାଙ୍କ ନିଦ ଭାଙ୍ଗିଗଲା। ସେ ଟର୍ଚ୍ଚ ଧରି ବାହାରକୁ ଆସିଲେ। ଦେଖନ୍ତି, ଗଣ୍ଡା ଜାତିର ମଣିଷ ଜଣେ, ତା' ସହିତ ଯୁବତୀ ସ୍ତ୍ରୀ ଓ ସ୍ତ୍ରୀ କୋଳରେ ସୁନ୍ଦର ସୁଠାମ ଶିଶୁଟିଏ। ଶିଶୁଟି ଆଖି ବୁଜି ମା'ର ଉନ୍ମୁକ୍ତ ବକ୍ଷରୁ ସ୍ତନାହାର କରୁଛି। କଥା କ'ଣ ? ଏତେ ରାତିରେ ଆଦିବାସୀ ଦମ୍ପତି କାହିଁକି ଦ୍ୱାରସ୍ଥ ?

ସେମାନେ ହିନ୍ନାଙ୍କ ଗୋଡ଼ତଳେ ସାଷ୍ଟାଙ୍ଗ ପଡ଼ିଗଲେ ଏବଂ କାନ୍ଦି କାନ୍ଦି କହିଲେ- "ହଜୁର୍, ହାମ୍‌କେ ରକ୍ଷାକର, ଇ ଛୁଆକେ ବଞ୍ଚାଅ।"

ବିଳପି ହେଉଥିଲେ ଆଦିବାସୀ ଦମ୍ପତି।

"ଘଟଣା କ'ଣ ?"- ଜୋର୍ କରିପଚାରିଲେ ହିନ୍ନା।

"ହଜୁର୍, ଇ ଛୁଆକେ ପେଟେନ୍ ଖାଇବା। ଆମର୍ ଗାଁର ଲୋକେ ତାକେ ପେଟେନ୍‌କେ ଚଢ଼ାବେ। ମୁଇଁ କ'ଣ କରମି, ହଜୁର ? ମତେ ବାଟ ଦେଖାଅ..."

ହିନ୍ନା ପଚାରିଲେ- "ଛୁଆକୁ ସେମାନେ କାହିଁକି ବଳି ଦେବେ ?"

ପୁରୁଷ ଜଣକ ଅବସାଦପୂର୍ଣ୍ଣ କଣ୍ଠରେ କହିଲା - " କାଣା କରିମି ହଜୁର! ମୋର୍ ପହିଲି ମାଇଝି ଛୁଆଲି ହୋଇ ନାଇଁ ପାରିଲା, ଶେଷେ ପେଟେର୍ ଛୁଆଥାଇ କରି ମରିଗଲା। ଗାଁର ଲୋକେ ତାକୁ ମଶାନ୍ ପଦାର ଡୁମେର୍ ଗଛେ ବାନ୍ଧିଲେ। ତାର୍ ପେଟେନ୍ ଡୁମେର୍

ଗଛ ଅଛେ। ମୁଇଁ ଆଉ ଗୁଟେ କନିହା ବିହାକରି ଆନ୍‌ଲି। ମୋର ପହିଲି ମାଇଜି ଇନ୍ତା ମରସି ବୋଲି ଇ ନାଇଁ ଜାନିଥିଲା। ବିହାତ ହେଇସି, କ'ଣ କରିବ? ଆମର ଗୁଟେ ଛୁଆ ହେଲା। ଇତା ତା'ର ମା'ଆଏ। ଇ ଛୁଆର ଲାଗି ଗାଁର୍ ଲୋକ ମୋର୍ ପିଛା ନାଇଁ ଛାଡ଼ିବାର। କାଏଲ୍ ଏତାକେ ସେ ପେଟାନ୍‌କେ ଚଢ଼ାବେ। ଆମ୍‌ହେଁ ଅନ୍ଧାରେ ଅନ୍ଧାରେ ଲୁକି କରି ପଳାଇ ଆଇଛୁ। ହଜୁର୍, ତୁଇ ଏ ଛୁଆକେ ପାଇଲୁ..."

ହିନ୍ନାଙ୍କ ମୁହଁରେ କ୍ଷୋଭର ମୁଦ୍ରା ଫୁଟି ଉଠିଲା। ଭାରତରେ ସତୀଦାହ, ହଳଦୀ କିଆରୀରେ ନରବଳି ଆଦି କୁତ୍ସିତ କୁସଂସ୍କାର, କଠୋର ସାମାଜିକ ପ୍ରଥା କଥା ସେ ଶୁଣିଛନ୍ତି। ବଡ ଲାଟ ଲର୍ଡ ଉଇଲିୟମ୍ ବେଣ୍ଟିଙ୍କ କଡା ଆଇନ ଦ୍ୱାରା ଏସବୁ ଜଘନ୍ୟ ପ୍ରଥା ନିଷିଦ୍ଧ କରିଥିଲେ। କିନ୍ତୁ କେବଳ ଆଇନ ଦ୍ୱାରା ସମାଜର ସଂସ୍କାର ଓ ପରିବର୍ତ୍ତନ ସମ୍ଭବ ହୋଇ ନ ଥାଏ। ଏବେ ବି ତାଙ୍କ ସମ୍ମୁଖରେ ନିଷ୍ଠୁର ନରସିଂହାରର ଏକ ପ୍ରତ୍ୟକ୍ଷ ଘଟଣା ଉପସ୍ଥିତ।

ହିନ୍ନା ବଡ ଦୟାଳୁ ଏବଂ ଶ୍ରଦ୍ଧାଳୁ। ଭାରତ ଭୂଇଁ ତାଙ୍କୁ ଭଲ ଲାଗେ। ପରିଣତ ବୟସ ତାଙ୍କର; ଅବିବାହିତ, ଚିରକୁମାର। ତାଙ୍କ ବିମଳ ବ୍ୟକ୍ତିତ୍ୱ ସଂସ୍ପର୍ଶରେ ମୁଁ ଆସିଛି ମୋର ଝାରସୁଗୁଡ଼ା ରହଣି କାଳରେ। ସବୁବେଳେ ହସି ହସି କଥା କହନ୍ତି, ମୁହଁରେ ମିଠା ବୋଲି ହୋଇଥାଏ, ଯେ କୌଣସି ଲୋକ ତାଙ୍କ ସଂସ୍ପର୍ଶରେ ଆସିଲେ ମୁଗ୍ଧ ହୋଇଯିବ। ସେଦିନ ସେ ନିରୀହ ସରଳ ଆଦିବାସୀ ଦମ୍ପତିଙ୍କ କରୁଣାର୍ତ୍ତରେ ତରଳି ଯାଇଥିଲେ ସମ୍ପୂର୍ଣ୍ଣ। ବନ୍ୟ ମଣିଷ ସମାଜରେ ଅନ୍ଧବିଶ୍ୱାସ ବିସ୍ତାରିଛି ବୃହତ୍ ବୃକ୍ଷର ଚେର ଭଳି। ସୃଷ୍ଟିର କେଡେ ସୁନ୍ଦର ସୁଠାମ ଶିଶୁଟିଏ କୌଣସି ଦୋଷ ନ ଥାଇ ଅକାରଣେ ମୃତ୍ୟୁଦଣ୍ଡ ଭୋଗିବ ପୁଣି ମଣିଷ ହାତରେ। ତାଙ୍କ ଆଖି ଆଗରେ ନିରୀହ ମଣିଷ ଛୁଆଟିଏ ଅନ୍ଧାରୀ ମୂଳକର ତଥାକଥିତ ହୀନ ଘୃଣ୍ୟ ବିଶ୍ୱାସର ଶିକାର ହେବ!! ଅସମ୍ଭବ। ନୃଶଂସ, ଅମାନୁଷିକ, କୁତ୍ସିତ ଲୋକାଚାର ପ୍ରତି ସେ କୁତ୍ସାରଟନା କଲେ ମନେ ମନେ। ଆଦିବାସୀ ଦମ୍ପତିଙ୍କୁ ସ୍ୱାଗତ କଲେ ସେମାନଙ୍କ ବ୍ୟତିକ୍ରମ ପାଇଁ। ଶିଶୁ ତ ଈଶ୍ୱରଙ୍କ ଦାନ! ସେ ଅନୁଭବ କଲେ, ଯେମିତି ମଦର ମେରୀ ତାଙ୍କ ହାତରେ ଧରାଇ ଦେଉଛନ୍ତି ଏକ ଅନାଥ ଶିଶୁକୁ, ନିର୍ଦ୍ଦେଶ ଦେଇଛନ୍ତି ତା'ର ପାଳନ ଦାୟିତ୍ୱ। ଆଉ ଚିନ୍ତା ନ କରି ହିନ୍ନା ଶିଶୁକୁ ଟୋଳି ଆଣିଲେ ମା' କୋଳରୁ। କହିଲେ- "ତୁମେ ଖୁବ୍ ଭଲ କାମ କରିଛ। ତୁମ ସାହସକୁ ଧନ୍ୟବାଦ ଦେଉଛି। ମୁଁ ଛୁଆକୁ ରଖୁଛି। ତୁମେ ମଧ ଆଉ ଗାଁକୁ ଫେର ନାହିଁ। ଏଠି ମୋର ଶ୍ରମିକମାନେ କାମ କରୁଛନ୍ତି। ସେମାନଙ୍କ ସହିତ କାମ କର।"

କିନ୍ତୁ ଆଦିବାସୀ ଦମ୍ପତି ସେଠି ଆଉ ମୁହୂର୍ତ୍ତେ ରହି ନ ଥିଲେ। ସେଇ ଅନ୍ଧାର ଭିତରେ କେଉଁଠି ଲୁଚିଗଲେ ଯେଉଁ ଅନ୍ଧାର ଭିତରୁ ସେମାନେ ଛୁଆକୁ ଧରି ତାଙ୍କ ପାଖକୁ ଧାଇଁ ଆସିଥିଲେ ଶିଶୁର ଜୀବନରକ୍ଷା ପାଇଁ!

କ୍ୟାମ୍ପ କାମ ଶେଷ ହୋଇଯାଇଥିଲା । ପରଦିନ ସକାଳୁ ସେ ଶିଶୁକୁ ଧରି ବାସସ୍ଥାନ ଝାରସୁଗୁଡ଼ାକୁ ବାହାରୁଛନ୍ତି, ଶୁଣିଲେ ନିକଟସ୍ଥ କାଲଘୁଡ଼ି ପାହାଡ଼ ତଳେ ଦି'ଟା ମୁର୍ଦ୍ଦାର ପଡ଼ିଛି- ଜଣେ ସ୍ତ୍ରୀ ଓ ଅନ୍ୟଜଣକ ପୁରୁଷ । ହିନ୍ନାଙ୍କ ଧୈର୍ଯ୍ୟ ରହିଲା ନାହିଁ । ସେ ଦୁଇ ଜଣ ହତଭାଗା ଆଉ କେହି ହୋଇ ନ ପାରନ୍ତି । ଗତ ରାତିର ସେଇ ଆଦିବାସୀ ଦମ୍ପତି ନିଶ୍ଚୟ । ସେ ଆଉ ଝାରସୁଗୁଡ଼ା ଯିବେ କ'ଣ, ବାର୍ତ୍ତାବହକୁ ସାଙ୍ଗରେ ନେଇ ଘଟଣାସ୍ଥଳକୁ ଗଲେ । ମୃତ ଶରୀର ଦିଓଟି ଧରାଧରି ହୋଇ ପଡ଼ିରହିଛି ପାହାଡ଼ ତଳେ । ସନ୍ଦେହର ଆଉ ଅବକାଶ ନ ଥିଲା ହିନ୍ନାଙ୍କର । ଖୁବ୍ ଉଚ୍ଚ ଓ ତୀଖ ପାହାଡ଼ ତଳେ ରହି ପାହାଡ଼ର ଶୀର୍ଷକୁ ଚାହିଁଲେ ପାତାଳରେ ଥିଲା ପରି ଲାଗି । ଆଦିବାସୀ ଦମ୍ପତି ପ୍ରାଣ ଭୟରେ ନିଜ ଗାଁକୁ ଆଉ ଫେରି ନ ଥିଲେ ! କ'ଣ ବା କୈଫିୟତ ଦେଇଥାନ୍ତେ ମୂର୍ଖ ଗାଁ ବାବଲାଙ୍କୁ ! ସେମାନେ ଯେ ରକ୍ତମୁଖା, ପେଟେନ୍ ପାଖେ ପୁଅକୁ ବଳି ପକାଇବା ପାଇଁ ବଦ୍ଧପରିକର ପୁଅକୁ ନ ପାଇ ସେମାନେ ନିଶ୍ଚୟ ହତ୍ୟା କରିଥାନ୍ତେ ପୁଅର ବାପ ମା'ଙ୍କୁ । ହିନ୍ନା ଦୀର୍ଘନିଃଶ୍ୱାସ ଛାଡ଼ିଲେ । ଧନ୍ୟ ସେ ଦମ୍ପତି, ଧନ୍ୟ ସେ ବାପା ମା', ପୁଅକୁ ଜୀବନଦାନ କରି ନିଜ ଜୀବନକୁ ଅକାତରରେ ବଳି ଦେଇଚନ୍ତି, ଶୈଳ ଶିଖରରୁ ଧରାଧରି ହୋଇ ଆତ୍ମ ବିସର୍ଜନ କରିଛନ୍ତି- ଏମିତି ଦୃଷ୍ଟାନ୍ତ ହୁଏତ ଇତିହାସରେ ବିରଳ । ଦମ୍ପତିଙ୍କର ମର୍ମନ୍ତୁଦ ମରଣ ହିନ୍ନାଙ୍କ ହୃଦୟରେ ଗଭୀର ରେଖାପାତ କରିଥିଲା । ଶ୍ରମିକମାନଙ୍କ ସହଯୋଗରେ ଶବସତ୍କାର କରାଇଲେ ସେଇଠି ଏବଂ ସେଠାରେ ସେମାନଙ୍କ ସ୍ମୃତିରେ ସମାଧିଟିଏ ଗଢ଼ିବା ପାଇଁ ନିର୍ଦ୍ଦେଶ ଦେଇ ଶିଶୁକୁ ଧରି ଝାରସୁଗୁଡ଼ା ଫେରିଲେ ।

ସେଇ ଆଦିବାସୀ ଶିଶୁଟିକୁ ଅପତ୍ୟ ସ୍ନେହ ଦେଇ ଯଥେଷ୍ଟ ଯତ୍ନ ସହକାରେ ପାଳିଲେ, ଏଡ଼େରୁ ଏଡୁଟିଏ କଲେ, ନାମ ଦେଇଥିଲେ ଦୟାନନ୍ଦ ଶ୍ରଦ୍ଧାନାମ ଚଇତ । ଚଇତ ଶିକ୍ଷାଲାଭ କଲା ସନ୍ତୋଷଜନକ ଭାବେ । ସେ ଏଢ଼େ ଭାରତର ଜଣେ ସ୍ୱାଧୀନ ନାଗରିକ, ଏକ ପରିପୂର୍ଣ୍ଣ ମଣିଷ । ମିଷ୍ଟଭାଷୀ, ଶିଶୁ ଆଚରଣ ତା'ର ତାକୁ ଦେଖିଲେ କେହି ବିଶ୍ୱାସ କରିବ ନାହିଁ ଯେ, ସେ ଜଣେ ଆଦିବାସୀର ସନ୍ତାନ । ଏବେ ପ୍ରକାଣ୍ଡ ଅଟ୍ଟାଳିକା, ସାହେବ କୋଠି 'ହାୱାଗଡ଼'ର ମାଲିକ । ଉଚ୍ଚ ଶିକ୍ଷା ପରେ କୌଣସି ଚାକିରି କରି ନ ଥିଲା, ଆବଶ୍ୟକତା ନ ଥିଲା । ହିନ୍ନାଙ୍କ ଅଚଳାଚଳ ସମ୍ପତ୍ତିର ଉତ୍ତରାଧିକାରୀ । ଅଞ୍ଚଳର ବିଶିଷ୍ଟ ଶିକ୍ଷିତ ଚାଷୀ ଭାବେ ଖ୍ୟାତିଲାଭ କରିଛି । ପିଲାଛୁଆ ସଂସାର ନେଇ ସ୍ୱାଚ୍ଛନ୍ଦ୍ୟରେ ଜୀବନଯାପନ କରୁଛି । ଅତୀତରେ ଦୁଇଥର ପଞ୍ଚାୟତ ସମିତିର ଅଧ୍ୟକ୍ଷ ଭାବେ ନିର୍ବାଚିତ ହୋଇଛି । ଜନ୍ମ ନୁହେଁ, କର୍ମ କେବଳ ଜୀବନକୁ ଅଗ୍ରଗାମୀ କରାଏ ।

ଇତି ମଧ୍ୟରେ ହିନ୍ନାଙ୍କ ମୃତ୍ୟୁ ହୋଇ ଯାଇଛି ତା ୯।୩।୧୯୮୨ ରିଖରେ । ତାଙ୍କ ମୃତ୍ୟୁରେ ଦୁଃସମ୍ବାଦ ଚଇତ ମୋତେ ପତ୍ରଦ୍ୱାରା ଜଣାଇଥିଲା । ସେଇ ମହାନ୍ ଗୋରା ହୃଦୟବାନ ବ୍ୟକ୍ତିଙ୍କ ପ୍ରତି ମୁଁ ଶୋକବାର୍ତ୍ତାରେ ଲେଖିଥିଲି- ଶ୍ରଦ୍ଧାସ୍ପଦ ଚଇତ,

ତୁମ ମହାନ୍ ପିତାଙ୍କ ଇହଲୀଳା ସମ୍ବରଣ ସମ୍ବାଦରେ ମୁଁ ଅତ୍ୟନ୍ତ ମର୍ମାହତ ଓ ହତଚକିତ। ସ୍ୱର୍ଗତ ସେଣ୍ଟକ୍ଲେୟାର ମ୍ୟାକ୍‌ମିଲାନ୍ ହିନ୍ନା ତୁମ ପାଇଁ କେବଳ ଜଣେ ଅବତାର ନୁହନ୍ତି, ସେ ମଧ୍ୟ ଆମ ଭାରତବାସୀଙ୍କ ପାଇଁ ଏକ ଆଦର୍ଶ ପୁରୁଷ; ସ୍ନେହ ତ୍ୟାଗ ଓ ହୃଦୟବତ୍ତାର ମୂର୍ତ୍ତିମନ୍ତ ମଣିଷ। ସାରା ଜୀବନ ଅବିବାହିତ ରହି ଭାରତକୁ ନିଜ ମାତୃଦେଶ ବୋଲି ଗ୍ରହଣ କରିନେଇ ସେ ଯେଉଁ ଦେଶଭକ୍ତିର ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି, ତାହା ଭାରତ ଇତିହାସରେ ବିରଳ। ଆଜି ସେଇ ମହାନ୍ ପୁରୁଷଙ୍କୁ ମୁଁ ପ୍ରଣାମ କରିବା ସଙ୍ଗେ ସଙ୍ଗେ ତାଙ୍କ ଅମ୍ଲାନ ଆତ୍ମାର ସଦ୍‌ଗତି ନିମନ୍ତେ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି।

ଇତି...

'ମୋହନ'



ଭୂତ, ହାଡ଼ବାଇ, ଡାଆଣୀ, ଚିରୁଗୁଣୀଙ୍କ ସହିତ ମୁଁ କେବେ ମୁହାଁ ମୁହିଁ ହୋଇ ନାହିଁ, କେବଳ ଆଈମା' କାହାଣୀ ଭଳି ଶୁଣିଛି ଯାହା। ଯାହାକୁ ସ୍ୱଚକ୍ଷୁରେ ଦେଖି ନାହିଁ, ଇନ୍ଦ୍ରିୟ ଦ୍ୱାରା ଅନୁଭବ କରି ନାହିଁ, ସେଥିରେ ମୁଁ ବିଶ୍ୱାସ ବା କରନ୍ତି କାହିଁକି ? ଭୂତ ବା ଡାଆଣୀ ଯେ ଗୋଟେ ମନଗଢ଼ା କାହାଣୀ- ଏକଥା ମୁଁ ଭଲ ଭାବେ ଜାଣେ। ଲୋକାଚାର ବା ଜନଭାଷାକୁ ପରୀକ୍ଷା ନ କରି କେବଳ ବିଶ୍ୱାସ କରି ଗ୍ରହଣ କରିନେବା ସପକ୍ଷରେ ନୁହେଁ ମୁଁ। ଥରେ ଘଟଣା ଚକ୍ରରେ ମୁଁ ଭୂତ ପରୀକ୍ଷାର ସମ୍ମୁଖୀନ ହୋଇଥିଲି।

ମୋର ନୂଆ ନୂଆ ଚାକିରି ବେଳର କଥା। ସେତେବେଳେ କଳାହାଣ୍ଡି ଆମପାଣି ତନଖି ଫାଟକର ଭାରପ୍ରାପ୍ତ ଅଧିକାରୀ। ନୂଆ କରି ବାଣିଜ୍ୟ କର ଫାଟକ ଖୋଲିଥାଏ ଆମପାଣିରେ। ଆମର ସରକାରୀ ପରିବାର ହେଲେ ଜଣେ ନିରୀକ୍ଷକ, ଦୁଇଜଣ ପିଅନ ଓ ମୁଁ। ପିଅନମାନଙ୍କର ବାର ଘଣ୍ଟା ସିଫ୍ଟ ଡ୍ୟୁଟି ଏବଂ ଦିନରେ ମୁଁ ଫାଟକ ଦାୟିତ୍ୱରେ ରହେ, ଗାଡ଼ି ଯାଞ୍ଚ କରେ, କର ଆଦାୟ କରେ ଗାଡ଼ିବାଲାଙ୍କଠୁଁ। ରାତିରେ କାମ ସମ୍ଭାଳନ୍ତି ନିରୀକ୍ଷକ ସଦାଶିବ ବାବୁ। ଘାଟୀର ପାଦ ଦେଶରେ ଆମର ଫାଟକ। ନିକଟରେ କୌଣସି ବସ୍ତି ନାହିଁ, ବାସିନ୍ଦା ନାହାନ୍ତି। ସଦାଶିବ ବାବୁ ଡ୍ୟୁଟି ସାରି ସେଠାରେ ରହନ୍ତି ନାହିଁ, ଭବାନୀପାଟଣା ଯା' ଆସ କରନ୍ତି। ମୋତେ ରହିବାକୁ ହୁଏ ସେଇ କ୍ଷୁଦ୍ର ଅଣଓସାରିଆ ନୀଚା ଚାଳଘର ଗେଟ୍ ଅଫିସରେ। ଶୋଇବାଠୁଁ ଆରମ୍ଭ କରି ଯାବତୀୟ କାମ ସେଇ ଛୋଟ ଘରଟିରେ, ଟେବୁଲ ପାଖରେ। ଅନ୍ୟ ଉପାୟ ନାସ୍ତି। ନିତ୍ୟକର୍ମ କରିବାକୁ ଥାଏ ପଶ୍ଚାତ୍‌ଭାଗ ପର୍ବତ ପାଦଦେଶର ଖୋଲା ପଡ଼ିଆ। ପଡ଼ିଆ ଧାରରେ ବୋହି ଯାଇଛି କୁଳୁକୁଳନାଦିନୀ ବନଝରଣାଟିଏ ପ୍ରକୃତିର ପ୍ରସାଦ ପରି। କିନ୍ତୁ ଶୋଇବା, ଖାଇବା, ଉଠାବସା ଆଦିରେ ବହୁ ଅସୁବିଧା ହୁଏ। ବ୍ୟସ୍ତ ଲାଗେ। ଅବଶ୍ୟ ଅଫିସ କାମ ଯଥେଷ୍ଟ କମ୍, କାରଣ ଯାନବାହନ ଚଳାଚଳ ବେଶୀ

ନୁହେଁ। କାଁ ଭାଁ ମାଲବୋଝେଇ ଗାଡ଼ି ପହଞ୍ଚେ, ସେଥିରେ ବନଜାତ ଦ୍ରବ୍ୟ ଚାଲାଣ ହୋଇଥାଏ, ସେଥିରୁ ନିର୍ଦ୍ଧାରିତ ବିକ୍ରିକର ଆଦାୟ ହୁଏ।

ଫାଟକଠୁଁ ପ୍ରାୟ ଶହେ ଗଜ ଦୂରରେ ଏକ ଜୀର୍ଣ୍ଣ କୁଟୀର ଚାଞ୍ଚରା ଘେରା ଅରମା ଭିତରେ ଥାଏ। ଲୋକବାକ ନ ଥିଲା ପରି ଜଣା ପଡୁଥିଲା। ପଚାରି ବୁଝିଲି, ସେଠି କେହି ରହନ୍ତି ନାହିଁ। ମାଲିକ କିଏ ? କାହାର ଘର ? ଜାଣିଲି, କୋକସରା ମାରୁଆଡ଼ିର ଖାଲି ଘର। ଜଙ୍ଗଲଜାତ ଦ୍ରବ୍ୟ ରଖିବା ପାଇଁ ଛୋଟ ଗୋଦାମ କରିଥିଲା। ଗୋଦାମ ବୋଲି ମାତ୍ର ଅଳ୍ପ ଉଚ୍ଚ ଖପରିଲି ଘରଟିଏ- ମୁଣ୍ଡ ବାଜିବ ଦୁଆରବନ୍ଧରେ। ବାଉଁଶ ତାଟିରେ ମାଟିଛଟା ରଙ୍ଗମାଟି ଲିପା କାନ୍ଥ। ଘରର କାବଟ ମଧ୍ୟ ବାଉଁଶ ତାଟିରେ ନିର୍ମିତ। ଘରଟି ଦେଖି ମୁଁ ଲୋଭେଇ ଗଲି। ନିର୍ଜନ ନିକାଞ୍ଚନ ଜାଗା। ଏପରି ଏକ ନିରୋଳା ସ୍ଥାନରେ ରହିବାକୁ ମୁଁ ଖୋଜୁଥିଲି। ମାଆଡ଼ି ପାଖକୁ ପିଅନ ପଠାଇ ଅବିଳମ୍ବେ ଘରଟା ହାସଲ କଲି। ବିଛଣା ଓ ଯତ୍‌କିଞ୍ଚିତ ଆସବାବପତ୍ର ନେଇ ସେଠି ରଖିଲି। ବେଶ୍ ଆରାମରେ ରହିଲି। ରାତିରେ ନିଘୋଡ଼ ନିଦରେ ଘୁଙ୍ଗୁଡ଼ି ମାରିଲି। କେଇଦିନ ହେବ ନିଦ୍ରାରେ ଘୋର ବ୍ୟାଘାତ ସୃଷ୍ଟି ହୋଇଥିଲା। କାରଣ କ୍ଷୁଦ୍ର ଫାଟକ ଗୃହଟି ସର୍ବନିମ୍ନ ଆବଶ୍ୟକତାଠାରୁ ଯଥେଷ୍ଟ କମ୍ ଥିଲା ଅଣନିଃଶ୍ୱାସୀ ହେବାଭଳି; ଅଫିସ ପଦବାଚ୍ୟ ଗୃହ ନୁହେଁ ତ, ଏକ ପଲ୍ଲୀର ପଶୁଶାଳା ପ୍ରାୟ। କିନ୍ତୁ ବିକଳ୍ପ ବ୍ୟବସ୍ଥା ହେଲା ପର୍ଯ୍ୟନ୍ତ ସରକାରୀ ନିର୍ଦ୍ଦେଶ ମାନିବାକୁ ହୁଏ- ଶାସକର କାମଚଳା ନୀତି ସ୍ଥାନ- କାଳ- ପାତ୍ର ନେଇ ଆବଶ୍ୟକ ହୋଇପଡ଼େ। ସଂକୀର୍ଣ୍ଣ ଫାଟକ ଘରଟିରେ କେଇଦିନ ରହଣି ଭିତରେ ଅସ୍ତବ୍ୟସ୍ତ ହୋଇ ପଡ଼ିଥିଲି। ପର୍ଯ୍ୟାପ୍ତ ପରିମାଣରେ ମୁହୁର୍ମୁହୁଃ ଗାଡ଼ି ଗର୍ଜନ ଓ ଚାଳକ ଓଗେରଙ୍କ ହୋହଲ୍ଲା ଏବଂ ନିଦ୍ରାକୁ ଦମନ କରି ଗାଡ଼ି ଯାଞ୍ଚ କାମ ଆଦି ମୋତେ ଆକ୍ରାନ୍ତ କରିଥିଲା। ଟିକିଏ ଆଖିବୁଜି ବିଶ୍ରାମ ଇଚ୍ଛା କରୁଥିଲି, ଦରକାର ପଡୁଥିଲା ନିରୋଳା ଜାଗାଟିଏ ଅବା ବୃକ୍ଷମୂଳ। ଅନାୟାସରେ ବ୍ୟବସାୟୀ ମାରୁଆଡ଼ିର ମାଟିଛାଟି ଘରଟି ପାଇ ଆଶ୍ୱସ୍ତ ହେଲି।

ତହିଁ ପରିଦିନ ଘଟଣା।

ଆମପାଣି ଗାଁ ସେଠୁ ତିନି କିଲୋମିଟର ଦୂର। ଗାଁରେ ରହନ୍ତି ଏଠାକାର ଗ୍ରାମସେବକ ମହାଶୟ। ବିକ୍ରିକର ବିଭାଗ ତରଫରୁ ଏଠାରେ ସରକାରୀ ତନଖି ଫାଟକଟିଏ ଖୋଲା ଯାଇଥିବାର ଖବର ପାଇଥିଲେ। ଗେଟ୍ ଅଫିସରେ ପହଞ୍ଚି ନିଜ ପରିଚୟ ଦେଲେ ଓ ଭଲମନ୍ଦ ପଚାରିଲେ। ଏଠାରେ ମୋର ରହିବା ଅସୁବିଧା ହେଉଥିବାର ହୃଦୟଙ୍ଗମ କରି ଗାଁରେ ଘର ଖୋଜିବେ ବୋଲି ପ୍ରତିଶ୍ରୁତି ଦେଲେ। ତାଙ୍କ ଆଳପ ଓ ବ୍ୟବହାରରେ ମୁଁ ଭଦ୍ରତା ଲକ୍ଷ୍ୟ କରିଥିଲି। ଉପକୂଳବର୍ତ୍ତୀ ବୁଡ଼ି ଅଞ୍ଚଳର ବ୍ୟକ୍ତି ଜଣେ, ଶୁଦ୍ଧ ଓଡ଼ିଆ ଭାଷା କହି ପାରୁଥାନ୍ତି। କିନ୍ତୁ ତାଙ୍କ ପିତାଙ୍କ

ଅମଳରୁ ପାର୍ବତ୍ୟ ଅଞ୍ଚଳରେ ରହି ଆସିଛନ୍ତି, ଶିକ୍ଷାଦୀକ୍ଷା ଲାଭ କରିଛନ୍ତି ପଣ୍ଡିମାଞ୍ଚଳ ଶିକ୍ଷାନୁଷ୍ଠାନରୁ। ବିବାହ କରିଛନ୍ତି, ଅଞ୍ଚଳର ଆଦିବାସୀ ଯୁବତୀ ଜଣକୁ- ଏବେ ସନ୍ତାନ ସନ୍ତତିର ଜନକ। ତାଙ୍କ ପରିବାର ଏକ ଗୋରା-କଳା ସଂସ୍କୃତିର ସମନ୍ୱୟ ଭଳି। ସ୍ୱାଚ୍ଛନ୍ଦ୍ୟରେ କାଳାତିପାତ କରୁଛନ୍ତି। ଇଲାକାର ଗ୍ରାମସେବକ ସେ- ଅଧୁନା ସଭ୍ୟତାର ଆଲୋକ ଆଣି ଅନ୍ଧାରି ମୂଲକରେ ବିତରଣ କରିବା ତାଙ୍କର କାମ। ତାଙ୍କ କର୍ତ୍ତବ୍ୟରେ କେତେ ଦୂର ସଫଳତା ଅର୍ଜନ କରିଛନ୍ତି ଭିନ୍ନ କଥା, କିନ୍ତୁ ଅଞ୍ଚଳ ପ୍ରତି ମମତାବୋଧ ତାଙ୍କ ହର୍ଷାୟିତ ବଦନରୁ ପରିଲକ୍ଷିତ। ସେ ପ୍ରଫୁଲ୍ଲ ଦିଶୁଥା'ନ୍ତି। ଏଭଳି ଦୂରଦୂରାନ୍ତରର ଅଗମ୍ୟ ଆଦିବାସୀ ଅଞ୍ଚଳରେ ସଫେଦ ଧୋତି କୁର୍ତ୍ତା ପିନ୍ଧା ଜଣେ ବ୍ୟକ୍ତି ସଂସ୍ପର୍ଶରେ ମୁଁ ଆସି ପାରିଥିବାରୁ ସନ୍ତୋଷ ଲଭିଲି। ତାଙ୍କ ନାମ ଥିଲା ତାରେଶ୍ୱର ତିଆଡ଼ି। ଜାତିରେ ବ୍ରାହ୍ମଣ।

ମୁଁ ଏଠାରେ କାଲିଠୁଁ ସୁସ୍ଥରେ ଅଛି ବୋଲି ତାରେଶ୍ୱରଙ୍କୁ କହିଲି ଏବଂ ଏଇ ମାରୁଆଡ଼ି ଗୋଦାମ ଘର ମୋର ବସାଘର ହୋଇଛି ବୋଲି ପ୍ରକାଶ କରନ୍ତେ, ସାପକୁ ଦେଖି ଚମକିଲା ଭଳି ସେ ଚମକି ଉଠିଲେ ଏବଂ ହଠାତ୍ ତାଙ୍କ ନେତ୍ର ବିସ୍ଫାରିତ ହେବାର ମୁଁ ଲକ୍ଷ୍ୟ କଲି।

"କ'ଣ ହେଲା ତିଆଡ଼ି ବାବୁ?"- ମୁଁ ପଚାରିଲି।

: "ଆପଣ ଆଜ୍ଞା ସେ ଘରେ ରହୁଛନ୍ତି?"

"ହଁ, ଅସୁବିଧା କ'ଣ?"- ମୁଁ ପ୍ରଶ୍ନ କଲି।

ମୋ ମୁହଁକୁ ସେ ବଲ ବଲ କରି ଚାହିଁଲେ ଓ ଭୀତ ସ୍ୱରରେ କହିଲେ- "ଆପଣ କିଛି ଅସୁବିଧା ଭୋଗି ନାହାନ୍ତି?"

: "ନାଇଁ ତ! କେଉଁଥିପାଇଁ ଅସୁବିଧା?"

ଗ୍ରାମସେବକ ତିଆଡ଼ି ବାବୁ ଚିନ୍ତିତ ହୋଇ କହିଲେ- " ଜାଣନ୍ତି ସାର୍! ସେ ଘରେ ପ୍ରେତ ରହୁଛି। ପଠାଣୀ ପ୍ରେତ- ଶୈତାନୀ। ସେଠାରେ ସୌକତ ଅଲ୍ଲୀ ଚମଡ଼ା ଗୋଦାମ କରି ଭଡ଼ାରେ ରହୁଥିଲା ତା' ସ୍ତ୍ରୀ ସହିତ। କିନ୍ତୁ ଚାରିମାସ ପରେ ପଠାଣ ସ୍ତ୍ରୀ ମୈନାର ମୃତ୍ୟୁ ହେଲା ବିସୂଚିକା ରୋଗରେ। ତା' ପରେ ସୌକତ ଏଠି ଛୋଟ ଛୁଆକୁ ନେଇ ରହିବା ସମ୍ଭବ ହେଲା ନାହିଁ। ତା' ସ୍ତ୍ରୀର ପ୍ରେତ ଘୂରି ବୁଲିଲା ଘରର ଚତୁର୍ଦ୍ଦିଗ। ଆମେ ଆଜ୍ଞା ସ୍ୱଚକ୍ଷୁରେ ଦେଖିଛୁଁ, ଭାତରେ ବାଲି ଗଦା ହୋଇଯିବ, ଚୁଲିରେ ନିଆଁ ଆଦୌ ଧରିବନି। ପୁଣି ହଠାତ୍ ପତର ଗଦାରେ ଛାଏଁ ଛାଏଁ ନିଆଁ ଲାଗିଯିବ, ପୁଣି ଆପେ ଆପେ ଲିଭିଯିବ। ତା' ପରେ ଠୋ ଠୋ ଶବ୍ଦ, ସ୍ତ୍ରୀ ଲୋକର ଅଟ୍ଟହାସ୍ୟ ଏବଂ ପରେ ପରେ କରୁଣ କାନ୍ଦଣା। ଫିକା ଜହ୍ନ ଆଲୁଅରେ ଆମେ ଦେଖିଛୁ ତା' ସ୍ତ୍ରୀର ପ୍ରେତ ରୂପ- କେବଳ ଧଳା ଶାଢ଼ି ବେକ ପର୍ଯ୍ୟନ୍ତ ଅଥବା ଖାଲି ପାଇଜାମା ମୁଣ୍ଡ

ନାହିଁ, କେତେବେଳେ ଧୂଆଁଳିଆ ମୁଣ୍ଡ, କାନ୍ଧଠୁଁ ଦେହ ନାହିଁ। ଟର୍ଚ୍ଚ ପଡ଼ିବା ମାତ୍ରେ ଉଭେଇ ଯାଏ। ଖଣ୍ଡି ଖାସର ସ୍ୱର ଶୁଭେ। ..... ସୌକତ ଅଲ୍ଲୀ ମୋର ଦୋସ୍ତ। ଏ ଘର ଶୀଘ୍ର ଛାଡ଼ି ଆମ ଗାଁରେ ରହିବାକୁ ମୁଁ ତାଙ୍କୁ ପରାମର୍ଶ ଦେଲି। ବ୍ୟବସାୟ ଧନ୍ଦା, ଚମଡ଼ା ଆମଦାନୀ- ରପ୍ତାନୀ କାମ, ଗାଁ କ'ଣ ଧନ୍ଦାକୁ ପୋଷାଇବ ? ଏବେ ସପ୍ତାହେ ହେବ ସୌକତ ଘର ଛାଡ଼ି ନବରଙ୍ଗପୁର ଯାଇଚନ୍ତି। ସେଠାକୁ ତାଙ୍କ ବ୍ୟବସାୟ ଉଠାଇ ନେବାର ଯୋଜନାରେ ଅଛନ୍ତି। ତାଙ୍କ କୁନି ପୁଅ ଆମ ଗାଁରେ ମୋ ପାଖେ ଅଛି। ନବରଙ୍ଗପୁରରେ ବସାଘର ବନ୍ଦୋବସ୍ତ କରି ତାଙ୍କ ପୁଅକୁ ନେଇଯିବେ ଏଠୁ। ପେଟିନୀର ଛୁଆ ଆମ ପାଖେ ରଖି ଆମେ ଦହଗଞ୍ଜ ହେଉଛୁ ଖାଲି। ଛୁଆଟାକୁ ନାଳରକ୍ତ ଝାଡ଼ା, ସବୁବେଳେ ଚିହିଁର ଛାଡ଼ି ରଡୁଛି। ମୋ ସ୍ତ୍ରୀ ରାତିରେ ଡରି ଶୋଉନାହିଁ। କାଲି ରାତିରେ ବାଡ଼ି ପଟ ସଜନା ଡାଳଟା ମଟ୍‌କିନି ଭାଙ୍ଗି ପଡ଼ିଲା, ମୋ ଗର୍ଭିଣୀ କାଳିଗାଈ ବାରମ୍ବାର ହମ୍ବାରଡ଼ି ଦେଲା। ମୁଁ ଉଠି ଆଲୁଅ ଧରି ଏଣେ ତେଣେ ଉଣ୍ଡିଲି। ଦେଖେ, ଗୋଟେ କଳା ମସମସ ମହାକାୟ ଷଣ୍ଢଭଳି ପଶୁ ବାଡ଼ି ଭିତରୁ ପଛ ନାଳିକୁ କୁଦାମାରି ଦୌଡ଼ିଛି। ଏଠାକୁ ଏତେ ବଡ଼ ଷଣ୍ଢ ଆସିଲା କାହୁଁ? ଏସବୁ କିଛି ନୁହେଁ ସାର, ପେଟିନୀର କାରବାର। ଛୁଆଟା ପାଇଁ ଆମେ ନୟାନ୍ତ। ଖାଲି ବସ୍ତି ଭିତରେ ଅଛୁ ବୋଲି ନା! ମୁଁ ବୋଲି ଗାଁ ଲୋକେ କିଛି କହି ପାରୁନାହାନ୍ତି; ନୋହିଲେ ବାଛନ୍ଦ କରି ସାରନ୍ତେଣି..."

ଅର୍ଦ୍ଧଶିକ୍ଷିତ ଗ୍ରାମସେବକ ତିଆଡ଼ି ବାବୁଙ୍କ ମୁହଁରୁ ପ୍ରେତ କାହାଣୀ ମୁଁ ଚୁପ୍‌ଚାପ୍ ଶୁଣୁଥିଲି। ଗୋଟାଏ ଦମ୍‌ରେ ସେ କହିଗଲେ ତାଙ୍କ ଅନୁଭୂତି। ସତରେ ସେ ପ୍ରେତ ଦେଖିଛନ୍ତି ? ବିଶ୍ୱାସ କଲି ନାହିଁ। ବଡ଼ ଅଜବ ଏବଂ ଅବାନ୍ତର ମନେ କଲି। ଫୁଃ କରି ତାଙ୍କ ବୟାନ ଉଡ଼ାଇ ଦେଲି ଗୋଟେ ଉଚ୍ଚ ସ୍ୱରରେ- "ହୁଁଃ, ଏଗୁଡ଼ା ବାଜେ କଥା, ଭ୍ରାନ୍ତ ଭାବନା, ଦୁଃ ଚିନ୍ତା, ଦୁର୍ବଳ ମସ୍ତିଷ୍କର ଦୁର୍ଭାବନା। ତିଆଡ଼ି ବାବୁ, ଆପଣ ଶିକ୍ଷିତ, ଲେଖି ପଢ଼ି ଜାଣିଛନ୍ତି। ଏସବୁ ଅବାସ୍ତବ ଅବାନ୍ତର କଥା ବିଶ୍ୱାସ କରୁଛନ୍ତି ? ମଣିଷ ମଲା ପରେ ଦୁଷ୍ଟ ଆତ୍ମା ଦାଉ ସାଧେ- ଏକଥା କ'ଣ ସମ୍ଭବ ?"

"ହଁ ସାର୍, ମୁଁ ଅଙ୍ଗେ ନିଭେଇଛି ! ମିଛ ଆଦୌ କହିବିନି, ମୁର୍ଦ୍ଧନା ଫାଟିଯିବ। ଆପଣ ବିଦେଶୀ ଲୋକ। ଏଠା କଥା ଜାଣନ୍ତି ନାହିଁ। ଆପଣଙ୍କୁ ସବୁ ଜଣାଇ ଦେବା ମୋର କର୍ତ୍ତବ୍ୟ। ଆପଣଙ୍କ ଭଲ ପାଇଁ କହିଲି। ମୋର ଆଉ ଦୋଷ ନାହିଁ। ତେଣିକି ଆପଣ ଯାହା ଭାବିବେ କରିବେ। ଜାଣି ଜାଣି ବିପଦକୁ ଡାକିବା କାହିଁକି ?"

ତିଆଡ଼ିଙ୍କ ମୁହଁରେ ଆଶଙ୍କା ଆଙ୍କି ହୋଇ ରହିଥିଲା। ପ୍ରେତ ସମ୍ବନ୍ଧରେ ମୋର ମନୋଭାବ ଓ ଟିପ୍‌ପଣୀ ତାଙ୍କୁ ଅସ୍ୱସ୍ତିକର ବୋଧ ହେଲା। ସେ ବ୍ୟସ୍ତ ଜଣା ପଡୁଥାନ୍ତି। ମୋ ପ୍ରତି ତାଙ୍କ ମୁଖମଣ୍ଡଳରେ ଦୟା ପ୍ରକଟିତ ହେଉଥିଲା।

କିନ୍ତୁ ମୋ ମନରେ ଏକ ଆହ୍ୱାନର ଧ୍ୱନି ଖେଳିଲା। ଯଦିବା କିଛି ଭୂତ ପ୍ରେତ ଥା'ନ୍ତି, ତେବେ ମୋର ମୃତ୍ୟୁ ପଛେ ହୋଇପାରେ, ଥରେ ମାତ୍ର ଅଶରୀରୀ ଆତ୍ମା ସହିତ ସାକ୍ଷାତ ଆବଶ୍ୟକ। ଦିନଯାକ କୌଣସି କାମରେ ମନ ଲାଗିଲା ନାହିଁ, ଉପନ୍ୟାସ ବହିରେ ଆଖି ପୁରାଇଥାଏ, କିନ୍ତୁ ପୃଷ୍ଠା ତିରିଶ ଧରିଥିଲେ ମଧ୍ୟ ଗୋଟିଏ ହେଲେ କଥାବସ୍ତୁ ଧରି ପାରି ନ ଥିଲି। ଅନ୍ୟମନସ୍କତା ଯୋଗୁଁ ବାଧ ହୋଇ ବହି ବନ୍ଦ କଲି। ସାୟଂ ଭ୍ରମଣରେ ବାହାରିଲି। ମନ ଖାଲି ଇତସ୍ତତଃ ହୋଇ ଏଣେ ତେଣେ ଦୌଡୁଥାଏ ଚଗଲା ପିଲା ପରି। ଫେରିଲି। ସନ୍ଧ୍ୟା ଆସିଲା, ତା' ପରେ ରାତି, ଅନ୍ଧକାରର ରାତି। ସାମାନ୍ୟ କିଛି ରାତ୍ରାହାର ଶେଷ କରି ଦଉଡ଼ିଆ ଖଟ ଉପରେ ଚିତ୍ ହୋଇ ଶୋଇ ରହିଲି। ବହିଟିଏ ଧରିଲି ନିତି ଦିନର ଅଭ୍ୟାସ କ୍ରମେ। ମୁଣ୍ଡ ପାଖକୁ ପଛ କାନ୍ଥ କଣ୍ଟାରେ ଝୁଲିଥାଏ ଲଣ୍ଠନ। ଲଣ୍ଠନର ମିଞ୍ଜି ମିଞ୍ଜି ଆଲୁଅରେ ବହି ଅକ୍ଷର ପଢ଼ିବାରେ ମୁଁ ଅଭ୍ୟସ୍ତ। ପଢୁ ଥିଲି କାହ୍ନୁଚରଣଙ୍କ କା' ଉପନ୍ୟାସ। ଯେତେଥର ପଢ଼େ ଭଲ ଲାଗେ। ଏଥର କିନ୍ତୁ ବହି ବାନ୍ଧି ରଖି ପାରିଲା ନାହିଁ। ମନ ପୁଣି ଚଗଲା ଧରିଲା। ଅସ୍ଥିର। ଅବଶ୍ୟ ମନ ଓ କାନର ଧ୍ୟାନ ରହିଲା ବାହାର ପ୍ରତି। ଗଛରୁ ପତ୍ରଟିଏ ଖସିଲେ ପଥର ପଡ଼ିଲା ଭଳି ଲାଗୁଥାଏ! ଦୁଇଟା ଚାଳୁଆ ମୂଷା ଦୌଡ଼ି ଦୌଡ଼ି ହୋଇ ଦୁଲ୍‌କିନା ଖସି ପଡ଼ିଲେ। ମୁଣ୍ଡ ଉଠାଇ ଦେଖିଲି, ଦୁଇଟି ମୂଷା କେବଳ, ଅନ୍ୟ କିଛି ନୁହେଁ।

ବିଛଣାର ତକିଆ କଡ଼ରେ ଥାଏ ମୋର ପାଞ୍ଚ ସେଲିଆ ଏଭେରେଡି ଟର୍ଚ୍ଚ; ଅନ୍ଧାରକୁ ଚିରି ତା'ର ତେଫା ଆଲୁଅ ଲମ୍ବିଯାଏ ଆଗକୁ ତା'ର ଶକ୍ତି ସୀମା ପର୍ଯ୍ୟନ୍ତ। ଏହି ଟର୍ଚ୍ଚଟି ମୋର ରାତି ସାଥୀ, ସବୁବେଳେ ଥାଏ ପାଖେ ପାଖେ। ସେଦିନ ରାତିରେ ହାତଟି ଥୋଇଥିଲି ମୋର ସେଇ ବିଶ୍ୱସ୍ତ ଟର୍ଚ୍ଚ ଉପରେ।

ଖପରିଲି ମଥାନରେ କ'ଣ ଗୋଟେ ଖଡ୍ ଶବ୍ଦ ହେଲା ଜୋର୍ କରି ସ୍ପଷ୍ଟ ଶୁଣିଲି। ଧ୍ୟାନ ଦେଇ କାନେଇଲି। କ'ଣ ହୋଇପାରେ? ଶବ୍ଦ କ୍ରମଶଃ ନିଃଶବ୍ଦ ହୋଇଗଲା। ମୁଁ ଖୁବ୍ ସଚେତନ ଥାଏ, ଚେତା ଚୈତନ୍ୟ ଖଟାଇ ମନ-ପ୍ରାଣ ଧନ୍ୟାନକୁ ଜାଗ୍ରତ ରଖିଥାଏଁ। ନିଦଟା ଦୂରେଇ ଯାଇଥାଏ ଆଖିରୁ। ପ୍ରେତଟା କ'ଣ ଓ କିପରି ଦେଖିବାକୁ ମନରେ ଅତୀବ ଉତ୍କଣ୍ଠା। ପୁଣି ଟିକିଏ ପରେ ସେହିପରି ଶବ୍ଦଟେ ଫୁଟିଲା, ଯେମିତି ଦୁର୍ବଳ ଘର ମଥାନଟା ଗୁରୁ ଭାରାରେ ଭାଙ୍ଗି ପଡ଼ିବ ! ଛାତ ଉପରେ ମଡମଡ ଶବ୍ଦ। ଆଶ୍ଚର୍ଯ୍ୟ ହେଲି। ଆଉ ବିଛଣାରେ ପଡ଼ି ରହିବା ସମ୍ଭବ ହେଲା ନାହିଁ। ମନକୁ ଆଣ୍ଟ କଲି ଏବଂ ବିଛଣାରୁ ଉଠି ଟର୍ଚ୍ଚଜାଳି ବାହାରକୁ ଆସିଲି। ଖପରିଲି ଛାତ ଉପରକୁ ଟର୍ଚ୍ଚ ମାରିଲି। ଆଲୁଅଟା ଲାଖି ରହିଲା ଗୋଟେ ନିଶାଚର ଜୀବ ଉପରେ- ଓଃ, ମସ୍ତବଡ ଓଧଟେ। ଏଡେ ବଡ ଓଧ ମୁଁ କେବେ ଦେଖି ନ ଥିଲି।

ଗାଁ ମାଣ୍ଡୁରେ ଓଧମାନେ ବାସ କରନ୍ତି- ଦେଖିଛି ବହୁଥର, କିନ୍ତୁ ଏତେ ବଡ଼ ନୁହନ୍ତି। ଟର୍ଚ୍ଚ ଆଲଅକୁ ସମାନ ଭାବେ ଛାତ ଉପରେ ବୁଲାଇ ଆଣିଲି। ଆଉ ଗୋଟେ ଲମ୍ବା ଲାଞ୍ଜ ବିଶିଷ୍ଟ ବିରାଟ ଓଧ ଦୃଶ୍ୟ ହେଲା। ଆଲୁଅ ପଡ଼ିବା ମାତ୍ରେ ସେମାନେ ଛାତ ଆବୋରି ଥିବା କେନ୍ଦୁଗଛର ଗହଳ ଡାଳଉପରକୁ ମାଙ୍କଡ଼ ଭଳି କୁଦା ମାରି ଲୁଚିଗଲେ ଗଣ୍ଡିର ଆରପାଖେ। ବୃକ୍ଷର ଉପରି ଭାଗରେ କେଇଟା ରାତି ଚଢ଼େଇ ଖିଚିରି ମିଚିରି ହେଉଥାନ୍ତି। ଶବ୍ଦଟା କୌଣସି ଭୌତିକ କାଣ୍ଡ ନୁହେଁ, ଲୌକିକ ମାତ୍ର- ଗୋଟାଏ ନିଶାଚର ଜୀବନର ଦୈନନ୍ଦିକ ଆଖଡ଼ା- ମୋର ହୃଦ୍‌ବୋଧ ହେଲା।

ରାତି ପ୍ରାୟ ଦି'ଟା ହେବ। ଏଣେ ତେଣେ ବିକ୍ଷିପ୍ତ ଭାବେ ଟର୍ଚ୍ଚ ଆଲୁଅ ଟିପି ପୁଣି ଫେରିଲି ବିଛଣାକୁ। ଲଣ୍ଠନ୍‌ଟା ହଠାତ୍ ଧପ୍ ଧପ୍ ହୋଇ ଲିଭିଗଲା। କାରଣ ବୁଝି ପାରିଲି ନାହିଁ। ଟର୍ଚ୍ଚଟା ଜଳାଇବାକୁ ଚେଷ୍ଟା କଲି, କିନ୍ତୁ ଜଳିଲା ନାହିଁ। ବୋଧହୁଏ ବଲ୍‌ଟା ପୋଡ଼ିଗଲା। ମନଟା ଟିକିଏ ଦବିଗଲା ଅନ୍ଧାର ଭିତରେ। ଲଣ୍ଠନ ଏବଂ ଟର୍ଚ୍ଚ ଉଭୟେ ସଲାସୁତରା ହୋଇ କ'ଣ ଲିଭିଗଲେ ନା କୌଣସି ପ୍ରେତର କାଣ୍ଡ ! ଘରଟା ସମ୍ପୂର୍ଣ୍ଣ ଅନ୍ଧାର କିଟି କିଟି ଅନ୍ଧାର। କିଛି ଦିଶୁ ନ ଥିଲା ଆଖିକୁ, ପତାକୁ ଯେତେ ବିସ୍ତାରିତ କଲେ ମଧ୍ୟ। ତକିଆ ତଳେ ଦିଆସିଲି ଥାଏ। ଦରାଣ୍ଡି ଆଣିଲି। ଦୈବାତ୍ ସେଥିରେ ଯୋଡ଼ିଏ କାଠି ଥାଏ। ଗୋଟିଏ କାଠି ଫୁରୁସି ଗଲା, ଆରଟି ବହୁ କଷ୍ଟରେ ଜଳିଲା ଟିକିଏ ସମୟ। ମହମବତୀ ଖୋଜିଲି। ମହମବତୀଟି ପାଖ ଚୁଲି ମୁଣ୍ଡରେ ରଖିଥିଲି ଦିଆସିଲି ସହିତ। କିନ୍ତୁ ତାଜୁବ ଲାଗିଲା ! ଚୁଲି ମୁଣ୍ଡରେ କ୍ଷୀର ଗିଲାସଟି କେତେବେଳେ ପଡ଼ି ଯାଇଛି ତଳେ, ବୋଧହୁଏ ବିରାଡ଼ିର କାଣ୍ଡ ଯୋଗୁଁ। ମହମବତୀ ସହିତ ଦିଆସିଲି ମଧ୍ୟ ସମ୍ପୂର୍ଣ୍ଣ କ୍ଷୀରସ୍ନାନ କରିଛି। ବୃଥା ଚେଷ୍ଟା ଆଉ କଲି ନାହିଁ। ମୋର ଲକ୍ଷ୍ୟ ଥାଏ ସୁଟ୍‌କେଶଟିରେ ଯେଉଁଥିରେ ଆଉ ଗୋଟିଏ ଟର୍ଚ୍ଚ ବଲ୍‌ବ ସାଇତି ରଖିଥାଏ ଜରୁରୀ ବେଳରେ ବ୍ୟବହାର ପାଇଁ ଅଣ୍ଡାଳି  ଅଣ୍ଡାଳି ଚାବିଟି ପାଇଗଲି। ସୁଟ୍‌କେଶର ତାଲା ସହିତ କସରତ କରି ଚାବିକୁ ବହୁ କଷ୍ଟରେ ଭର୍ତ୍ତି କରିଲି ତହିଁରେ। ସୁଟ୍‌କେଶ ଖୋଲିଲା। ହାତ ଅଣ୍ଡାଳି ସାଇତା ବାଲ୍‌ବକୁ ଠାବ କଲି ଏବଂ ତାକୁ ଆଣି ସହସା ଟର୍ଚ୍ଚରେ ଯୋଗକଲି। ପୁଣି ଉଜ୍ଜ୍ୱଳ ଭାବରେ ଜଳି ଉଠିଲା ମୋ ଟର୍ଚ୍ଚ। ଦମ୍ଭ ଆସିଲା, ସାହସ ଦ୍ୱିଗୁଣିତ ହେଲା। ବ୍ୟାପକ ଭାବରେ ଟର୍ଚ୍ଚ ଲାଇଟ୍ ଘୁରାଇଲି ଘରର ଚତୁର୍ଦ୍ଦିଗ। ଅନ୍ଧକାରମୟ ରଜନୀର ସର୍ବବ୍ୟାପୀ ନୀରବତା ଅକ୍ଷୁଣ୍ଣ ଥିଲା। ଫାଟକ ପର୍ଯ୍ୟନ୍ତ ଗଲି। ସଦାଶିବ ବାବୁ ନିଶ୍ଚିନ୍ତରେ ଶୋଇଛନ୍ତି, ଚପରାସୀ କଣ୍ଡୁରୀ ମଧ୍ୟ। ସେମାନଙ୍କ ସୁଖ ନିଦ୍ରାରେ କୌଣସି ବ୍ୟାଘାତ ସୃଷ୍ଟି ନ କରି ଆଗ ରାସ୍ତାରେ ଖଣ୍ଡେ ଦୂର ଗଲି। ଗୋଟିଏ ହାତରେ ଶିଶୁ କାଠର ଶକ୍ତ ଯଷ୍ଟି, ଅନ୍ୟ ହାତରେ ଟର୍ଚ୍ଚ। ଥୋକେ ବାଟ ଯାଇଛି, ଦେଖିଲି ରାସ୍ତାର ଅନତି ଦୂରରେ ମହୁଲ ଗଛ ମୂଳରେ

ତିନୋଟି ଗାଡ଼ଭାଲୁ ମହୁଲ ଖାଇବାରେ ବ୍ୟସ୍ତ। ନିକଟକୁ ଆଲୋକ ଆସୁଥିବାର ଦେଖି ସେମାନେ ସଂଲଗ୍ନ ମୁଣ୍ଡିଆ ଭିତରକୁ ଲସର ପସର ହୋଇ ପଶିଗଲେ। ବିଲୁଆମାନେ ଶ୍ମଶାନ ଭୂଇଁରେ ବୋବାଳି ଛାଡ଼ିଲେ ହୁକେ ହେ, ହୁକେ ହୋ। ରାତି ସରି ଆସୁଥିଲା। କିନ୍ତୁ ପ୍ରେତର ଦର୍ଶନ ନ ଥିଲା।

ତହିଁ ପରଦିନ ରାତି ମଧ୍ୟ ସେହିପରି ବିତିଲା। ବିଶେଷ କିଛି ବ୍ୟତିକ୍ରମ ପରିଲକ୍ଷିତ ହୋଇ ନ ଥିଲା। କେବଳ ଠିକ୍ ରାତି ଦି'ଟା ସମୟରେ ଲଣ୍ଠନଟି ପୂର୍ବ ରାତି ଭଳି ଧପ୍ ଧପ୍ ହୋଇ ଲିଭିଗଲା। ମୁଁ ସାମାନ୍ୟ ଚିନ୍ତିତ ହେଲି, କିନ୍ତୁ ପର ମୁହୂର୍ତ୍ତରେ ପୁଙ୍ଖାନୁପୁଙ୍ଖ ଅନୁଶୀଳନ କରି ଲଣ୍ଠନର କି ତ୍ରୁଟି ରହିଛି ବୋଲି ନିଶ୍ଚିନ୍ତ ରହିଲି। ମୋଟା ମହମବତୀଟି ସାଥୀ ହୋଇ ରାତି ସାରା ଜଳିଥିଲା। ତୃତୀୟ ଦିନ ଆଉ ଗୋଟିଏ ଲଣ୍ଠନ ଘରେ ଜାଳିଲି ଏବଂ ସକାଳ ପର୍ଯ୍ୟନ୍ତ ଜଳିଥିଲା ବିନା ବ୍ୟତିକ୍ରମରେ। ପୂର୍ବ ଲଣ୍ଠନର ରୋଗ ଥିଲା ବୋଲି ପରେ ବୁଝିଲି। ଭବାନୀପାଟଣା ମଣ୍ଡଳ ଅଫିସରୁ ଉକ୍ତ ରୋଗିଣା ଲଣ୍ଠନ ଏଠାକୁ ଚାଲାଣ ହୋଇଥିଲା ପ୍ରତ୍ୟଖ୍ୟାତ ପଦାର୍ଥ ଗଦା ଭିତରୁ। ଟିକିଏ ଉତପ୍ତ ହୋଇଗଲେ ଲଣ୍ଠନର ଚିମିନିରେ ଧୂଆଁ ଜମି ପବନ ପଥ ଅବରୁଦ୍ଧ ହୋଇଯାଏ ଏବଂ ଅମ୍ଳଜାନ ଅଭାବରୁ ଧପ୍ ଧପ୍ ହୋଇ ଲିଭିଯାଏ।

ମୁଁ ସେଇ ଝାଟିମାଟିର ବସାଘରେ ବର୍ଷେ ରହିଥିଲି ମୋର ବଦଳି ପର୍ଯ୍ୟନ୍ତ। ବର୍ଷଟି ମଧ୍ୟରେ ଗ୍ରାମସେବକ ତିଆଡ଼ି ବାବୁ ମୋର ଅନ୍ତରଙ୍ଗ ହୋଇଥିଲେ। ଅବସର ସମୟରେ ବଣରେ ବୁଲିବାକୁ ତାଙ୍କୁ ସାଥୀ କରି ନିଏ ବିଶେଷ କରି ସନ୍ଧ୍ୟା ଭ୍ରମଣବେଳେ। ଅଶରୀରୀର ଅସ୍ତିତ୍ୱ ସମ୍ବନ୍ଧରେ ତାଙ୍କ ମନୋଭାବ ବଦଳିଥିବାର ଅନୁମାନ କରିଥିଲି। ଘଟଣା ଭିତରେ ଦୁଷ୍ଟ ନାଗୁଣୀଟିଏ ମୂଷାମାନଙ୍କ ଲୋଭରେ, ଉତ୍ପାତ କରିଥିଲା ଏବଂ ପରିଶେଷରେ ବଧ ହୋଇଗଲା। କୌଣସି ଭୂତପ୍ରେତର ନାମଗନ୍ଧ ନ ଥିଲା। ମଣିଷର ଦୁର୍ବଳ ମନ ଭୂତମାନଙ୍କର ବାସସ୍ଥଳୀ, ବାସ୍ତବରେ ନ ଥାନ୍ତି- ମୋ ଅଭିଜ୍ଞତାରୁ ଶିକ୍ଷାଲାଭ କରିଛି।

ଗ୍ରାମାଞ୍ଚଳ ପଲ୍ଲୀ ଜୀବନରେ ଏପରି ଅନେକ ବିଶ୍ୱାସ ପୁରି ରହିଛି ଯାହାର ସତ୍ୟତା କେବେ ପରିକ୍ଷିତ ହୋଇନାହିଁ, ଲୋକ ମୁହଁରେ ପ୍ରଚାରିତ ମାତ୍ର। ଡାଘୋରା ବନ ଭୂଖଣ୍ଡର ଉତ୍ତର ପଶ୍ଚିମ ଦିଗରେ ମାନକେଶ୍ୱରୀ ମନ୍ଦିରରେ ଜଞ୍ଜିର ଗର୍ଜନ ଶୁଣାଯାଏ ବୋଲି ଲୋକେ କହନ୍ତି। କୋଉ କାଳରୁ ଅରଣ୍ୟ ଘେର ଭିତରେ ଅତ୍ୟୁଚ୍ଚ ଦେବୀ ମନ୍ଦିରଟିଏ ବିଦ୍ୟମାନ। ମନ୍ଦିରର ପଶ୍ଚାତ୍ ଭାଗରେ ଗର୍ଜନ ପାହାଡ଼ଟିଏ ଛାତି ମେଲାଇ ଠିଆ ହୋଇଛି। ମନ୍ଦିର ଭିତରେ ଏଠି ଝୁଲନ୍ତା ଜଞ୍ଜିରଗୁଡ଼ିକ ପରସ୍ପର ସହିତ ପିଟାପିଟି ହୋଇ ବାଜି ଉଠନ୍ତି ଏବଂ ଏକ କିମ୍ଭୁତକିମାକାର ସ୍ୱର ଉତ୍ତୋଳନ କରନ୍ତି ବୋଲି ଜନଭାଷା କହେ। ସ୍ୱରରେ କୁଆଡ଼େ ନିହିତ ଥାଏ ରାଜ୍ୟ ପ୍ରତି ଅଶୁଭ ସଙ୍କେତ-

ମଡ଼କ, ମହାମାରୀ ଓ ମୃତ୍ୟୁର ସୂଚନା । ଜଞ୍ଜିରମାନଙ୍କ ଘର୍ଷଣ ଚିତ୍କାର ପ୍ରତିଧ୍ୱନିତ ହୁଏ ଗର୍ଜନ ପାହାଡ଼ରେ । ଏଥିପାଇଁ ବୋଧେ ପାହାଡ଼ର ନାମକରଣ । ପାହାଡ଼ ଗର୍ଜନ କରେ ଏବଂ ଆତଙ୍କିତ ହୁଅନ୍ତି ବାସିନ୍ଦାମାନେ । ପ୍ରତିକାରର ବ୍ୟବସ୍ଥାରେ ସମସ୍ତେ ଲାଗି ପଡନ୍ତି । ମେଳା ଅନୁଷ୍ଠିତ ହୁଏ । ଫଳତଃ ଜୀବନପାତ ହୁଏ ବହୁ ପ୍ରାଣୀଙ୍କର । ବଳିପଡ଼ନ୍ତି ଅସୁମାରି ପଶୁ । ଦେବୀ ମଣ୍ଡପ ରକ୍ତରଂଜିତ ହୁଏ, ଜ୍ୱାଳାମୁଖୀ ଦେବୀ ରୁଧିର ସ୍ରୋତରେ ପ୍ଳାବିତ ହୁଅନ୍ତି, ବିପଦ ଦୂର ହୁଏ ବୋଲି ଜନଧାରଣା । ଅନ୍ଧବିଶ୍ୱାସ ପାଇଁ ଏମାନଙ୍କୁ ଦୋଷ ଦେଇ ହେବ ନାହିଁ । କାରଣ ପରିବେଶ, ପରିସ୍ଥିତି, ସାମାଜିକ ସ୍ଥିତି, ସଂସ୍କୃତି ଏଥିରେ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଆଦିବାସୀ ସଂସ୍କୃତି କହିଲେ ଗୁଡ଼ାଏ ବିଶ୍ୱାସର ସମଷ୍ଟିକୁ ବୁଝାଏ । ଶିକ୍ଷା, ଜ୍ଞାନ, ଆଲୋକଠାରୁ ଏମାନେ ବହୁ ଦୂରରେ । ଆହୁରି ବୋଧେ କେତୋଟି ଶତାବ୍ଦୀ ବିତିଯିବ ଏମାନଙ୍କ ବଦ୍ଧ ଧାରଣାର ପରିବର୍ତ୍ତନ ପାଇଁ ଯେମିତି ଦିନେ ଟୋଲେମିଙ୍କ ସିଦ୍ଧାନ୍ତ ସତ୍ୟବୋଲି ଗ୍ରହଣ କରାଯାଉଥିଲା ବିଶ୍ୱ ସାରା । ପଞ୍ଚଦଶ ଶତାବ୍ଦୀରେ ଯାଇଁ କୋପରନିକସ୍ ପ୍ରମାଣ କରନ୍ତି ଯେ, ପୃଥିବୀ ବିଶ୍ୱର କେନ୍ଦ୍ର ନୁହେଁ, ଘୂର୍ଣ୍ଣାୟମାନ- ସୂର୍ଯ୍ୟ ଚତୁର୍ଦ୍ଦିଗରେ ପରିକ୍ରମା କରେ ଯଦିଚ ସ୍ଥିର ବୋଲି ସାଧାରଣ ଆଖିକୁ ଜଣାପଡେ । ଯାହା ଆଖିରେ ଦୃଶ୍ୟ ହୁଏ । ଇନ୍ଦ୍ରିୟ ଦ୍ୱାରା ଯାହା ଅନୁଭୂତ ହୁଏ, ତାହା ସବୁ କ୍ଷେତ୍ରରେ ସତ୍ୟ ନୁହେଁ । ପ୍ରଚଳିତ ବିଶ୍ୱାସକୁ ପଦାଘାତ କରି ନୂତନ ତଥ୍ୟ ଆବିଷ୍କାର ଯୋଗୁ କୋପରନିକସଙ୍କୁ ଅନେକ ନିର୍ଯ୍ୟାତନା ସହ କରିବାକୁ ପଡ଼ିଥିଲା ଅବଶ୍ୟ । କିନ୍ତୁ ପ୍ରକୃତ ସତ୍ୟ ଶତାବ୍ଦୀଶତାବ୍ଦୀର ବଦ୍ଧ ଧାରଣାକୁ ବଦଳାଇପାରିଲା । ସେଇପରି ଆମ ବଣୁଆ ସରଳ ମଣିଷଙ୍କ ଯୁଗ ଯୁଗର ଚିନ୍ତାଧାରାକୁ ପରିବର୍ତ୍ତନ କରିବା ବହୁ ସମୟସାପେକ୍ଷ । କେବଳ ଶିକ୍ଷା ଓ ଜ୍ଞାନର ଆଲୋକ ଏମାନଙ୍କର ପରିବର୍ତ୍ତନ ଆଣିପାରେ... ।



କିନ୍ତୁ ମୋଟା ମୋଟି ଦେଖିବାକୁ ଗଲେ ବନବାସୀ ଆଦିଜନମାନେ ସରଳତା, ନିରୀହତା ଓ ନିଷ୍କପଟତାର ଜ୍ୱଳନ୍ତ ଉଦାହରଣ କହିଲେ କି ଅତ୍ୟୁକ୍ତି ହେବ ନାହିଁ। ଏମାନେ ଛନ୍ଦ, କପଟ, ଈର୍ଷା, ଅସୂୟା ଆଦି ଆଧୁନିକ ମଣିଷର ଦୁର୍ଗନ୍ଧ ଦୁର୍ବଳତାଠୁଁ ବହୁ ଦୂରରେ। ମିଥ୍ୟା ବୋଲି ଗୋଟେ ଶବ୍ଦ ଏମାନଙ୍କ ଭାଷା ଭଣ୍ଡାରରେ ନାହିଁ। ଏପରି ଗୋଟିଏ ଶବ୍ଦର ଅର୍ଥ ବୁଝନ୍ତି ନାହିଁ; ବୁଝନ୍ତି କେବଳ ଜିଇବାର ଧର୍ମ, ମୃତ୍ୟୁ ପର୍ଯ୍ୟନ୍ତ ବଞ୍ଚି ରହିବାର ଆଦିମ ଉଦ୍ଦାମତା। ଲକ୍ଷ୍ୟ ନାହିଁ, ଆଶା ଆକାଂକ୍ଷା ଅଭିଳାଷ ନାହିଁ, ନାହିଁ ମଧ୍ୟ ଜୀବନର ବିଫଳତାର ଦୁଃଖ। ନିର୍ଭେଜାଲ ଜୀବନ ଭିତରେ ଯେମିତି ଲୁଚି ରହିଛି ଏକ ଅପୂର୍ବ ମାଦକତା। ଏକ ଚିର ପ୍ରଶାନ୍ତିର ପ୍ରଚ୍ଛାୟାରେ ଜୀବନ ଆଚ୍ଛାଦିତ। ଆଉରି ପ୍ରତି ଆତୁରତା ସିନା ଆଜିର ମଣିଷକୁ ଦୁଃଖ ଦେଉଛି। ଆଧୁନିକ ମଣିଷ ସେମାନଙ୍କୁ ଯେଉଁ ଦୃଷ୍ଟିକୋଣ ଓ ଭାବରେ ଚାହିଁଲେ; ଦୀନ, ଦରିଦ୍ର, ନ୍ୟୂନ, ହୀନ, ପତିତ ଜୀବନ ପାଇଁ ବ୍ୟସ୍ତତା ପ୍ରକଟକରେ; ସେମାନେ କିନ୍ତୁ ସେଥିପାଇଁ ବୋଧେ ତିଳାର୍ଦ୍ଧ ଚିନ୍ତା କରନ୍ତି ନାହିଁ, ସମ୍ପୂର୍ଣ୍ଣ ଅନାସକ୍ତ ମନେ ହୁଅନ୍ତି। ମୁଁ ବାରିପଦା ସହରରେ ରହୁଥିବା ବେଳେ ମାଙ୍କଡ଼ିଆ ଜାତିର ଜଣେ ଆଦିବାସୀ ଲୋକର ସଂସ୍ପର୍ଶରେ ଆସିଥିଲି। ସାପ୍ତାହିକ ମଙ୍ଗଳ ହାଟରୁ ସଉଦା ଖରିଦ କଲାବେଳେ ବ୍ୟକ୍ତିଟିର ପରିଚୟ ପାଇଥିଲି। ଲୋକାରଣ୍ୟ ଭିତରୁ ଏମାନଙ୍କ ଅଙ୍ଗ ବସନ, ଦେହର ଗଢ଼ଣ ଓ ଚେହେରା ଏମାନଙ୍କୁ ଚିହ୍ନାଇ ଦିଏ। ଏମାନଙ୍କ ସହିତ କଥାବାର୍ତ୍ତା ହେବାକୁ ମୋତେ ଭଲଲାଗେ- ମୋର ସହଜାତ ସ୍ୱଭାବ। ଏପରି ବ୍ୟକ୍ତିଟିଏ ଭେଟିଲେ ମୋ ଆଡୁ ତା' ସମ୍ବନ୍ଧରେ ପଚାରି ବୁଝେ। ନାମ, ଠିକଣା, ଜାତି ଓରୋର ନେଇ ଟିକିନିଖି ବୁଝେ ଜିଜ୍ଞାସା ପାଇଁ। ଘରକୁ ଡାକି କିଛି ଖାଇବାକୁ ଦିଏ, ଯାହା ଦିଅ ଅମୃତ ମଣି ଖାଇଦିଏ। ମୋର ସେଥିରେ ତୃପ୍ତି।

: "ତୋର ନାଁ ?"

: "ଧୁଡୁ ମୁର୍ମୁ ହଜୁର।"

: "ଜାତି ?"

: "ମାଙ୍କଡିଆ।"

: "ଜମିବାଡ଼ି କେତେ ?"

: "ଜମି ଆମର କ'ଣ ହେବ ହଜୁର ! ଜଙ୍ଗଲ ଥିଲେ ଆମର ସବୁ ଅଛି। ବଣ, ବୁଦା, ନଟା ଆମର ମାଆ ବାପା...."

: "ତୋର ମୁଖ୍ୟ ଜୀବିକା କ'ଣ ?"

ଜୀବିକାର ଅର୍ଥ ବୁଝି ପାରିଲାନି ଧୁଡୁ ମୁର୍ମୁ। ସହରୀ ସାହିତ୍ୟିକ ଭାଷା ବୁଝିବ ବା କିପରି ? ଦୂର ପାହାଡ଼ୀ ଗାଁରୁ ଚାଲି ଚାଲି ସହର ଆସିଥାଏ ଅକାଳେ ସକାଳେ ତା' ଧନ୍ଦା ପାଇଁ। ସେତିକିରେ ଯେତିକି ସହରୀ ଭାଷା ଶିଖିଛି କାମ ଚଳିଯିବା ପାଇଁ। କହେ ତା' ଆଦିବାସୀ ସାନ୍ତାଳୀ ଭାଷା।

ମୁଁ ତାକୁ ବୁଝେଇ ପଚାରିଲି, କ'ଣ କରୁ, କିପରି ଚଳ, ବେଉସା କ'ଣ, ପିଲାପିଲି କେତୋଟି ଇତ୍ୟାଦି। ବୁଝିଲି, ମାଙ୍କଡ଼ମାନଙ୍କ ସହିତ ତା'ର କାରବାର। ବାନର ବିଦ୍ୟାରେ ଧୁରନ୍ଧର ସେ। ସେମାନଙ୍କୁ ବଶ କରିବା କାଇଦା କାରସାଦି ଭଲଭାବେ ଜାଣିଛି। ଅରଣ୍ୟ ଭିତରୁ ଗଛ କୋରଡ଼ରୁ ମାଙ୍କଡ଼ ଧରେ, ଗଛରେ ଫାଶ ବାନ୍ଧେ, ବଡ଼ମାନଙ୍କୁ ଛାଡ଼ିଦେଇ ବୋଲ ମାନିଲା ଭଳି ଛୁଆଗୁଡ଼ାକୁ ଧରିଆଣେ ଖୁବ୍ କାଇଦାରେ। ସେଗୁଡ଼ିକୁ ସହରୀ ବାବୁମାନଙ୍କୁ ଓ ସଉକବାଲା ଲୋକଙ୍କୁ ବିକ୍ରି କରେ। ବନର ବାନରମାନଙ୍କ ବିଷୟରେ ସବ୍‌ଜାନତା ଢଙ୍ଗରେ ତା ଦରଓଡ଼ିଆ ଭାଷାରେ ଦୀକ୍ଷାନ୍ତ ଭାଷଣଟିଏ ଛାଡ଼ିଦିଏ। କାନ୍ଧ ଉପରେ ଥୋଇଥିବା ମାଙ୍କଡ଼ ଛୁଆର ଜାତି, ବର୍ଣ୍ଣ, ଗୋତ୍ର ଆଦି ବର୍ଣ୍ଣନା କରିବାକୁ ଭୁଲି ନ ଥାଏ- "ନିଅ ବାବୁ, ଏଇଟି ଜାତିଆ ପାତି, ଭଲ ବୋଲ ମାନିବ, ଘର ଜଗିବ, ଚୋର ଧରିବ, ଗଛରେ ଚଢ଼ି ଫଳ ତୋଳିବ, ସବୁବେଳେ ମଣିଷର ସାଥୀ.... ନିଅ ବାବୁ, ଶରଧା କର, ରାମ ବାହନ, ମୁହଁ ଦେଖିଲେ ଶୁଭ, ଅଳପ ପଇସା.... ମାତ୍ର ପାଞ୍ଚ ଟଙ୍କା।"

ସଅଳ ସଅଳ ମାଙ୍କଡ଼ କେତୋଟି ବିକ୍ରି ହୋଇଗଲେ ପଇସା ଦୋହରାଇ ଗଣେ। ତା' ପରେ ଖୋଲେ ତା'ର ସେଇ ଝୋଟର ଛୋଟ ଝୁଲା ମୁଣି। ତହିଁରେ ରଖିଥାଏ ଅନେକ ବନୌଷଧି- ମାଙ୍କଡ଼ ପିତ୍ତ, ଭାଲୁ ଜିଭ, ବାଘ ଦାନ୍ତ, ହାତୀ ଦାନ୍ତ, ପଶୁ ଚର୍ବି, ଚେରମୂଳ ଇତ୍ୟାଦି। ସେହି ଥଳିରେ ମାଙ୍କଡ଼ ବିକ୍ରିଲବ୍ଧ ପଇସାକୁ ସାଇତି ଥାଏ ଏକ ଛୋଟ ଜଅଙ୍କଧରା ଟିଣଡବା ଭିତରେ। ସହରରୁ କିଛି ସଉଦା, ଶିଶିରେ କିରାସିନି ଧରି ଘରକୁ ବାହୁଡ଼େ। ବହିର୍ଜଗତ ସହିତ ତା'ର ସେତିକି ମାତ୍ର ପରିଚୟ। ଫୁଙ୍ଗୁଳା ଦେହ, ମୁଣ୍ଡରେ ମଇଳା ଗାମୁଛାର ଠେକାଟିଏ, ଜଣାପଡ଼େ ଯେମିତି ଗୋଟିଏ ସାପକୁ ମୋଡ଼ି ମୋଡ଼ି ମୁଣ୍ଡରେ ଗୁଡ଼ାଇଛି। ଅଣ୍ଟା ତଳେ ଚିପି ହୋଇ ବାନ୍ଧିଥାଏ ପାଇ କଛାମରା

ଜୀର୍ଣ୍ଣ ବସ୍ତ୍ରଟିଏ, ହାତରେ ବାଉଁଶର ସରୁ ପାଞ୍ଚଣ ଓ ମାଙ୍କଡ଼ା ଡୋରି ସେଇ ତା'ର ଜାତୀୟ ପରିଚ୍ଛଦ।

ମାଙ୍କଡ଼ିଆ ଜାତି ଓ ମାଙ୍କଡ଼ମାନଙ୍କର ସମ୍ପର୍କ ନେଇ ମୁଁ ପଚାରିଲି, "ତମେ କ'ଣ ସବୁ ମାଙ୍କଡ଼ମାନଙ୍କୁ ନେଇ ଚଳ?"

ସେ ହସିଥିଲା। କହିଲା- "ନାଇଁ। ବନସ୍ତ ପଡ଼ିଛି। ଭଗବାନ କରିଛନ୍ତି ଯିଏ ଯେମିତି ଚଳିପାରିଲା।" କଥାରୁ ବୁଝିଲି, ଯେମିତି ତା ଜାତି ସହିତ ଜୀବିକାଟା ଅକସ୍ମାତ ଯୋଡ଼ି ହୋଇଯାଇଛି।

ଅନେକ ଦିନ ହେଲା ଧୁଡୁ ମୁର୍ମୁକୁ ଖୋଜୁଥିଲି ମନେ ମନେ। ତାର ଦେଖା ନ ଥିଲା। ଦିନେ ପୁଣି ତା' ସହିତ ଦେଖାହୁଏ। ପଚାରିଲି- "କିରେ ଧୁଡୁ ତୁ କ'ଣ ସେଦିନୁ ଆଉ ଦିଶୁ ନାହୁଁ? କ'ଣ ହୋଇଛି? ମାଙ୍କଡ଼ କ'ଣ ଆଉ ଧରୁ ନାହୁଁ? ... ଆଉ ତୋର କୁର୍ତ୍ତା, ପ୍ୟାଣ୍ଟ ଜୋତା ସବୁ କ'ଣ ହେଲା? ପିନ୍ଧୁନୁ କାହିଁକି ସେଗୁଡ଼ିକୁ?"

ଧୁଡୁ ମୋତେ ଦେଖି ଚମକି ପଡ଼ିଲା ଏବଂ ମୋଠୁଁ ଦୂରେଇ ଯିବାର ଭାବ ପ୍ରକାଶ କଲା। ମୁଁ ପୁଣି ପଚାରିଲି- "ଏମିତି ମୁହଁ କାହିଁକି ଶୁଖାଇଛୁ କିରେ?"

ସେ ଇତସ୍ତତଃ ଚାହିଁଲା। ଆଗରୁ ଯେମିତି ଚଞ୍ଚଳତା ପ୍ରକାଶ କରେ, ପ୍ରଫୁଲ୍ଲ ଦିଶେ, ତାହା ଆଉ ନ ଥିଲା। ମୋର ପୁନଃ ପୁନଃ ପ୍ରଶ୍ନରେ ସେ ଶଙ୍କିତ ହୋଇ ପଡୁଥିଲା। ଭୟଭୀତ ମନେ ହେଉଥିଲା। ତ୍ରସ୍ତ। ବିମର୍ଷ ଗଳାରେ କହିଲା- "ବାବୁ, ଆଉ ଭୁଲ କରିବିନି, କେବେ ଆଉ ଏ ସହରକୁ ଆସିବି ନାହିଁ। ମୋତେ ଆଉ ବାନ୍ଧ ନାହିଁ ହଜୁର, ତମ ଗୋଡ଼ ତଳେ ପଡୁଛି, ମୋତେ ଛାଡ଼ି ଦିଅ। ବୁଢ଼ାରଜା ଠାକୁର ତୁମର ମଙ୍ଗଳ କରିବେ...."

ମୁଁ ଘଟଣାଟିକୁ ବୁଝି ପାରିଲି। ତା'ର ଭୟ ପ୍ରଶମିତ ହେବା ପାଇଁ କଅଁଳ କଣ୍ଠରେ କହିଲି - "ଏମିତି ଡରି ଯାଉଛୁ କାହିଁକି ଯେ! ଭୟ ନ କରି ସବୁ କଥା କହ। ମୁଁ ଅଛି, ତୋର କିଛି ହେବ ନାହିଁ, ତୋତେ ଆଉ କେହି ବାନ୍ଧିବେ ନାହିଁ, ନେବେ ନାହିଁ। ଠିକ୍ ଠିକ୍ କଥା କହିଲେ ସିନା ମୁଁ ବୁଝିବି ବା କ'ଣ ବ୍ୟବସ୍ଥା କରିବି!"

ଧୁଡୁ ଟିକିଏ ଅଭୟ ଅନୁଭବ କଲା ଅବଶ୍ୟ। କିଛି ଦମ୍ଭ ଧରିଲା, ତା' ଡରିଲାଭାବ ଅଳ୍ପ କମିଲା। ଏଣୁ ମୁଁ ପୁଣି ପଚାରିଲି- "ସତ କହ, ସେ କୁର୍ତ୍ତା, ପ୍ୟାଣ୍ଟ, ଜୋତା ନେଇ କ'ଣ କଲୁ?"

: "ସତ କହୁଛି ବାବୁ, ସେଗୁଡ଼ାକୁ ନେଇ ମୁଁ ନାଳରେ ଫିଙ୍ଗି ଦେଲି।"

: "କାହିଁକି? ଏତେ କଷ୍ଟ କରି ମୁଁ ତୋତେ ଆଦିବାସୀ ଉନ୍ନୟନ ଅଫିସରଙ୍କ ପାଖେ ପରିଚୟ କରାଇଥିଲି। ତୋ ପାଇଁ ସୁପାରିଶ କରିଥିଲି। ସର୍କାର ତୋତେ କେତେ ଆଦରରେ ପୋଷାକ ଦେଇଥିଲେ। ତୁ ଖାତାରେ ଟିପଚିହ୍ନ ଦେଇ ପୋଷାକ

ଆଣିଥିଲୁ। ସେଗୁଡ଼ିକୁ ବ୍ୟବହାର ନ କରି ଫୋପାଡ଼ି ଦେଲୁ ?"

ଧୁତୁ ଡରିଗଲା। ସେ ଆଶଙ୍କା କରୁଥିଲା, ବାବୁମାନେ ତା' ଭୁଲ ପାଇଁ ନିଶ୍ଚୟ ବାନ୍ଧିବେ, ଏଣୁ ପଳାଇ ଯିବା ପାଇଁ ଚେଷ୍ଟା କରିଥିଲା। ମୁଁ ଅଭୟ ଦେଇ କହିଲି- "ହେଲା, ହେଲା, ତୋର ପସନ୍ଦ ନ ହେବାରୁ ଫିଙ୍ଗି ଦେଲୁ ତ! ତୋତେ ଆଉ କେହି ପଚାରିବେ ନାହିଁ କି ପଇସା ଫେରସ୍ତ ଦେବାକୁ କହିବେ ନାହିଁ। ହେଲା ? ତେବେ ସେ ପୋଷାକଗୁଡ଼ାକ ତୋର ଦୋଷ କ'ଣ କଲେ ?"

: 'ନା ବାବୁ, ତାକୁ ପିନ୍ଧିଲାରୁ ମୋତେ କିଏ ଖାଲି ବାନ୍ଧି ଧରିଲା ପରି ଲାଗିଲା। ଭାବିଲି, ମୋତେ କିଏ କିମିଆ କଲାଣି! ମୋ ଧନ୍ଦା ଚଳିବ କେମିତି ? ଆମକୁ କ'ଣ ସେ ପୋଷାକ ପୋଷାଏ!! ଏସବୁ ତମ ପରି ବାବୁମାନଙ୍କ ପାଇଁ। ଆମର ଦର୍କାର ଗାମୁଛା ଖଣ୍ଡେ। କହ ତ ବାବୁ, ପେଣ୍ଟ କୁର୍ତ୍ତା ପିନ୍ଧି ଗଛ ଚଢ଼ି ମାଙ୍କଡ଼ ଧରିବା କ'ଣ ସୁବିଧା ?'

ମୁଁ ଅଧିକ କୌତୂହଳୀ ହୋଇ ଧୁତୁର ଅନୁଭୂତି ଓ ମନୋଭାବ ସଂଗ୍ରହ କରୁଥିଲି। ପଚାରିଲି... "ଧୁତୁ, ସର୍କାର ତୋତେ ଆଦର କରି ଦିଲ୍ଲୀ ନେଇଥିଲେ। ସେଠାରେ ଅତିଥି ଭବନରେ ତୋତେ ରଖିଲେ। କେମିତି ବଡ଼ ଘର, କେତେ ବଡ଼ କୋଠା ? ପରିଷ୍କାର, ପରିଚ୍ଛନ୍ନ, ଶଙ୍ଖ ମଲମଲ ପଥରର ଘର ଚଟାଣ। କେତେ ଖାଦ୍ୟ ଦରବ, ଚୌକି ଟେବୁଲରେ ଖାନା, କେମିତି ଦାମୀ ବିଛଣା!! ଏସବୁ କ'ଣ ସବୁ ଲୋକଙ୍କ ଭାଗ୍ୟରେ ଜୁଟିଥାଏ। କହ ତ, ଆଉ ସବୁ କ'ଣ ହେଲା ସେଠି!"

: "ହଁ ବାବୁ କହିବି, ଯଦି ଆଉଥରେ ମୋତେ ସେଠିକି ନ ନେବ। ସତ କହୁଛି, ସେଇ ଦିନଠୁଁ ମୁଁ ଆଉ ସହର ଆସି ନାହିଁ ବାବୁ।"

ମୁଁ ଜୋର କରି କହିଲି- "କହୁଛି ପରା ତୋର କିଛି ହେବନି। ସେଠି କ'ଣ ଦେଖିଲୁ ? କ'ଣ ସବୁ କଲୁ ?"

"ହଁ ବାବୁ, ସେମାନେ ମୋତେ ଟେବୁଲ ଚଉକିରେ ବସାଇଲେ, ଟେବୁଲ ଉପରେ ଭଲ ଶଙ୍ଖ ବାସନରେ ଖାଇବାକୁ ବାଢ଼ିଲେ। ସେଥିରେ ମୁଁ କ'ଣ ଖାଇବା ଯୋଗ୍ୟ! ମୁଁ ତଳେ ବସି ଭଲ ଦରବ ପେଟେ ଖାଇଲି। ଖାଇ ସାରିବା ପରେ ମୋତେ ଗୋଟେ ଘରେ ନେଇ ରଖିଲେ। ବଡ଼ ଘର। ବହୁତ ମିଶିନି ସେ ଘରେ ଅଛି, ଦେହରେ ପବନ ବାଜୁଛି ଘାଉ ଖାଉ, ଡୁମ୍ବରୁ ଆଲୁଅ ଜଳୁଛି କାନ୍ଥରେ। ନିଦ ମାଡୁଥିଲା; ଶୋଇବି କୋଉଠି ? ଖଟ ଉପରେ ମୋଟା ଗଦି ପଡ଼ିଥିଲା, ତା' ଉପରେ ସଫା ଫୁଲପକା ଚଦର। କିଏ ଶୁଅନ୍ତି ଏଠି ? ଭଗବାନ ନହିଲେ ରାଜା। ...ଖଟ ତଳେ ପଶିଗଲି। ଅନ୍ଧାରିଆ ଜାଗା। ପେଟେ ଖାଇଥିଲି। ନିଘୋଡ଼ ନିଦରେ ଶୋଇ ପଡ଼ିଲି। ସକାଳ ହେଲାରୁ ସେମାନେ ଆସି ମୋତେ ଖୋଜିଲେ। କ'ଣ ସବୁ କହୁଥା'ନ୍ତି

କିଛି ବୁଝି ପାରିଲିନି। ପାଟି ଶୁଣି ଖଟ ତଳୁ ବାହାରି ଆସିଲି। ସେମାନେ ତର ତର ହେଉଥା'ନ୍ତି। ବ୍ୟସ୍ତ ହୋଇ ଦି'ଜଣ ମାଇକିନା ଲୋକ ପେଣ୍ଟ କୁର୍ତ୍ତା ଆଣି ପିନ୍ଧାଇବାକୁ ଲାଗିଲେ। ଛିଃ, ମାଇପିଙ୍କ ଆଗରେ ପିନ୍ଧିବି କିପରି ? ମନା କଲି। କିନ୍ତୁ ସେମାନଙ୍କ ଆଖି ଦେଖି ଡରିଗଲି। ମୁଁ ଦେହରେ ଜାମା ଗଳେଇଲି।"

"ତା' ପରେ ?" - ମୁଁ ଉତ୍ସୁକତାର ସହ ପଚାରିଲି। "ତିନି ଦିନ ହେଲା ପୋଖରୀ ଯାଇ ନ ଥିଲି। ନଟାପାଖ, ଗଛ ମୂଳ, ଝରଣା କୂଳ ଖୋଜୁଥିଲି। ପେଟ ଫାମ୍ପି ଥିଲା। କୋଉଠି ପୋଖରୀ ପାଣି କରିବି ? ସବୁ ଆଡ଼େ ତ କୋଠାବାଡ଼ି, ଘର, ମଟର। ଆଉ ସମ୍ଭାଳି ପାରିଲି ନାହିଁ। ପେଣ୍ଟ ସାରା ପୋଖରୀ...."

"ତା' ପରେ ?" - ହସି ହସି ପୁଣି ପଚାରିଲି।

ଧୁତ୍ତୁ ନିର୍ବିକାର ଭାବେ କହିଲା- "ମୋ ପୋଖରୀ ଦେଖି ସେମାନେ ନାକରେ ହାତ ଦେଲେ; ମୁହଁକୁ ବିକୃତ କଲେ, କ'ଣ ଗୁଡ଼େ ଜୋର୍‌ରେ କହିଲେ। ମେହେନ୍ତର ଡାକି ସଫା କଲେ।"

: "ତୋ ପେଣ୍ଟ କୁର୍ତ୍ତା ?"

: "ପୁଣି ନୂଆ ଆସିଲା।"

ମୋର ମନେ ପଡ଼ିଲା। ତିନି ମାସ ତଳର ଦୂରଦର୍ଶନ କାର୍ଯ୍ୟ ପ୍ରସାରଣ ଦେଖୁଥିଲି ମୋ ଟି.ଭି.ରେ। ଆଦିବାସୀମାନଙ୍କ ଜୀବନ ଉପରେ ଆଧାରିତ ଏକ ଛାୟାଚିତ୍ର ସମୀକ୍ଷା, ସେମାନଙ୍କ ପାଇଁ ସରକାରଙ୍କ ଆହୂତ ଉନ୍ନତିମୂଳକ ଯୋଜନାର ପ୍ରତ୍ୟକ୍ଷ ବିବରଣୀ, କେତେକ ଆଦିବାସୀଙ୍କ ସାକ୍ଷାତ୍‌କାର। ଧତ୍ତୁ ମୁର୍ମୁର ଛବି ଟେଲିଭିଜନ ପର୍ଦ୍ଦାରେ ସେଦିନ ଦେଖିଥିଲି। ସେ ଗୋଟିଏ କିମ୍ଭୁତ କିମାକାର ଜୀବଟିଏ ଭଳି ବସି ରହିଥିଲା କେବଳ। ଦେହରେ ଦାରା ସିଂର ବୃହତ୍ ଜାମା, ଢୁଗୁଲା ଖୋଳ ଭିତରେ ଧୁତ୍ତୁ ପଶିଲା ପରି ମନେ ହେଉଥିଲା।

ଏବେ ଯାଇଁ ବୁଝିଲି, ତା' ଢିଲା ଜାମାର ରହସ୍ୟ।

ପଚାରିଲି - "ଧୁତ୍ତୁ, ସେମାନେ ଯେତେବେଳେ ଭିଡ଼ିଓ କ୍ୟାମେରାରେ ତୋର ଫଟୋନେଉଥିଲେ, ତୁ ଏମିତି ଆଖି ବୁଜି ରହିଥିଲୁ କାହିଁକି ?"

ସରଳ ଭାବରେ କହିଲା ଧୁତ୍ତୁ- "ଆଉ କଅଣ କରନ୍ତି ଆଜ୍ଞା ? ସେମାନେ ଆଲୁଅ ପକାଇ ମୋ ଆଖି ବାନ୍ଧି ଦେଉଥିଲେ। ମୁଁ ଜାଣିପାରିଲି ସେମାନଙ୍କ କିମିଆ କାରସାଦି। ମୁଁ ଅନ୍ଧ ହୋଇଗଲେ ମାଙ୍କଡ଼ ଧରିବି କେମିତି ? ମୋ ପିଲା ଛୁଆ ବଞ୍ଚିବେ କେମିତି ? ମୁଁ ଖାଲି ଭାବୁଥିଲି ପଣାମାଳ ଜଙ୍ଗଲର ଡିମିରିଗଛ କଥା। ସେଠି ତିନିଟା ମାହୁଲି ଛୁଆ କରିଥିଲେ। ମୁଁ ଦେଖିଥିଲି, କାହାର ନଜର ପଡ଼ି ନ ଥିଲା। ଏତିକିବେଳେ ସେମାନେ ମୋତେ ଧରି ଆଣିଲେ, କହିଲେ, ଦିଲ୍ଲୀ ଚାଲ, ପଇସା ମିଳିବ ସେଠି।

ମୋର କ'ଣ ଆଉ ଉପାୟ ଥିଲା ? ମୋ ଟିପ ଚିହ୍ନ ସେମାନେ କାଗଜରେ ନେଇ ଯାଇଥିଲେ । ମୁଁ ଡରି ଡରି ଗଲି । ହେଲେ ମୋର ମନ ଥାଏ ମାଙ୍କଡ଼ ଛୁଆଙ୍କ ପାଖେ । ଆଉ କିଏ ଯଦି ସେଗୁଡ଼ିକୁ ନେଇଯାଏ ! କେମିତି ପଶାମାଳରେ ପହଞ୍ଚିବି ସେଇକଥା ଖାଲି ଚିନ୍ତା କରୁଥିଲି । କିଛି ଭଲ ଲାଗୁ ନ ଥିଲା, ଖାଇବାକୁ ସୁଖ ଲାଗୁ ନ ଥିଲା । ଡାକିଲି ବୁଢ଼ାରାଜାକୁ- ଶୀଘ୍ର ନେଇଯା ସେଠିକି, ଗଞ୍ଜା ଦେବି...."

ହେଲେ କ'ଣ ହେବ ବାବୁ ? ଗାଁରେ ପହଞ୍ଚି ଆଗେ ଝରଣା କୂଳକୁ ଗଲି । ପୋଖରୀ ପାଣିକଲି । କେତେଦିନ ହେଲା ଗାଧେଇ ନ ଥିଲି ନଈ ପାଣିରେ । ମନେବୋଧ କରି ଗାଧେଇଲି । କି ଶାନ୍ତି ! ଦେହରେ ଜୀବନ ପଶିଲା । କୁର୍ତ୍ତା ପେଣ୍ଟକୁ ନାଳରେ ଫିଙ୍ଗିଲି । ସେଠୁ ଗଲି ପଶାମାଳ । ସେଠି କିନ୍ତୁ ଆଉ ମାଙ୍କଡ଼ଛୁଆ ନ ଥିଲେ । ଆଉ କିଏ ଫାଶ ବସାଇ ସେମାନଙ୍କୁ ଧରି ନେଇଥିଲା । ମୋର ଯାହା କ୍ଷେତି ହେଲା ବାବୁ ବୁଝିବ କିଏ ?"

ମୁଁ ଆଶ୍ୱାସନା ଦେଇ ଧୁଡ୍ରୁକୁ କହିଲି- "ନାଇଁରେ ଧୁଡ୍ରୁ, ତୁମର ବୁଝିବାରେ ଭୁଲ । ସର୍କାର ତୁମମାନଙ୍କ ଉନ୍ନତି ପାଇଁ କେତେ ବ୍ୟାକୁଳ ! ଏଥିପ୍ରତି ସେମାନେ ବହୁ ଟଙ୍କା ଖର୍ଚ୍ଚ କରୁଛନ୍ତି, ବହୁ ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ତୁମମାନଙ୍କର ଉନ୍ନତି ନ ହେଲେ ଦେଶ ଆଦୌ ଆଗେଇ ପାରିବ ନାହିଁ..."

ଧୁଡ୍ରୁ ଏସବୁ ଶୁଣିବାକୁ ପ୍ରସ୍ତୁତ ନଥିଲା । କାଳା ଆଗରେ ମୂଳା ଚୋବାଇଲା ଭଳି ସର୍କାରଙ୍କ ମହତ ଉଦ୍ଦେଶ୍ୟ ବର୍ଣ୍ଣନା କରୁଥିଲି ସିନା ! ସେ ମୋ ଆଗରୁ ପଳାଇଯିବା ପାଇଁ ଛାଟିପିଟି ହେଉଥିଲା, ଯେମିତି ଆଉ ଥରେ ତା'ର ଦୁର୍ଭାଗ୍ୟ ନ ଆସେ ! ଗୋଟେ ଲମ୍ବା ଦଣ୍ଡବତ ପକାଇ ସେ ପଳାଇ ଯାଇଥିଲା । ମୁଁ ତାକୁ ପଛରୁ ଡାକ ପକାଇଥିଲି କିଛି ମୁଢ଼ି ବା ଖାଦ୍ୟ ଖାଇ ଯିବା ପାଇଁ, କିନ୍ତୁ ସେ ଆଖିରୁ ଅଦୃଶ୍ୟ ହୋଇଯାଇଥିଲା... ।

ସେ ଦିନଠୁଁ ମୁଁ ଧୁଡ୍ରୁ ମୁହଁକୁ ଆଉ ଦେଖି ନାହିଁ । ଯା ଭିତରେ ମୋର ବାରିପଦାରୁ ବଦଳି ହୋଇଯାଏ । କିନ୍ତୁ ମୋ ମାନସ ପଟରେ ଆଦିମ ସରଳତାର ପ୍ରତୀକ ଭଳି ତାହା ଛାପି ରହିଛି ଅଦ୍ୟାପି...

ଆଉ ଜଣେ ଆଦିବାସୀ ଯୁବକର ଆଦିମ ସରଳତାର ଛୋଟ ଘଟଣାଟିଏ ଜାଣିଥିଲି ମୋର ଡାକ୍ତର ବନ୍ଧୁ ଜ୍ୟୋତିର୍ମୟ କାନୁନ୍‌ଗୋଙ୍କ ମୁହଁରୁ, ତାଙ୍କ ପ୍ରତ୍ୟକ୍ଷ ଅନୁଭୂତିରୁ । ଅଗତ୍ୟା ମୁଁ ସେଦିନ ସେଇ ସରଳ ଯୁବକଟିକୁ ସ୍ୱଚକ୍ଷୁରେ ନ ଦେଖି ରହିପାରି ନ ଥିଲି ।

ଉଚ୍ଚ ଶିକ୍ଷା ଏବଂ ପ୍ରୋବେସନ ପରେ ମୋ ସରକାରୀ ଚାକିରି ଆରମ୍ଭ ହୁଏ କୋରାପୁଟ ଜିଲ୍ଲାର ପାପଡ଼ାହାଣ୍ଡିରେ । ପାପଡ଼ାହାଣ୍ଡି ଆଦିବାସୀ ବହୁଳ କୋରାପୁଟ ଜିଲ୍ଲାର ଏକ ଛୋଟ ଉନ୍ନତ ଗ୍ରାମ । କେତୋଟି ଛୋଟ ଦୋକାନ ଥାଏ । ଛକ ଜାଗାଟିଏ ।

ପୂର୍ବଦିନ ନବରଙ୍ଗପୁର ସହର ଆଡୁ ରାଜରାସ୍ତା ଲମ୍ବି ଆସି ପଶ୍ଚିମର ଡାବୁଗାଁ, ଚନ୍ଦାହାଣ୍ଡି, ମଇଦଲପୁର ଓ ଓଡ଼ିଶା ସୀମାଞ୍ଚଳ ମାଲିମେଳା ପର୍ଯ୍ୟନ୍ତ ବିସ୍ତୃତ। ଏଇ ପାପଡ଼ାହାଣ୍ଡି ଛକରୁ ରାସ୍ତା ପୁଣି ଭାଙ୍ଗି ଉତ୍ତର ଦିଗର ଭବାନୀପାଟଣାକୁ ଛୁଇଁଛି। ଆମ ତନଖି ଫାଟକଟି ଠିକ୍ ଏଇ ଚୌଛକୀ ଉପରେ। ଅଳ୍ପ ଦୂରରେ ପ୍ରାଥମିକ ଚିକିତ୍ସା କେନ୍ଦ୍ର ନୂଆ ଖୋଲିଥାଏ। ସେଥିରେ ନବ ନିଯୁକ୍ତି ପାଇଥା'ନ୍ତି ମୋର ଯୁବ ବନ୍ଧୁ ଡାକ୍ତର ଜ୍ୟୋତିର୍ମୟ। ଡାକ୍ତରୀ ଶିକ୍ଷା ପରେ ତାଙ୍କର ପ୍ରଥମ ନିଯୁକ୍ତି ଏଇ ପ୍ରାଥମିକ କେନ୍ଦ୍ରରେ। ଦୂର ଦୂରାନ୍ତର ଅନୁନ୍ନତ ଅଞ୍ଚଳର ଆଦିଜନମାନଙ୍କୁ ଡାକ୍ତରୀ ସେବା ଓ ଚିକିତ୍ସା ଯୋଗାଇ ଦେବା ଉଦ୍ଦେଶ୍ୟରେ ଜ୍ୟୋତିର୍ମୟଙ୍କର ନିଯୁକ୍ତି। ଉଲ୍ଲାସ ମନରେ ଜ୍ୟୋତିର୍ମୟ କାର୍ଯ୍ୟରେ ଯୋଗ ଦିଅନ୍ତି। ଆମେ ଯୁବ ଅଫିସର ଦ୍ୱୟ ଉପକୂଳବର୍ତ୍ତୀ ଅଞ୍ଚଳର ହୋଇଥିବାରୁ ଉଭୟେ ଘନିଷ୍ଠ ଓ ନିକଟତର ହୋଇଯାଇଥାଉଁ ବୟସ ଓ ଭାଷାଗତ ସାମଞ୍ଜସ୍ୟ ଯୋଗୁଁ। ଉଭୟେ ଅବିବାହିତ। ଗୋଟାଏ ମେସ୍ କରି ରହିଥାଉଁ।

ଏହି ଅଞ୍ଚଳର ଲୋକମାନେ ଚିକିତ୍ସା ପ୍ରତି ଆକୃଷ୍ଟ ହୋଇ ନ ଥାନ୍ତି, ଅନେକ ମଧ୍ୟ ଚିକିତ୍ସା କ'ଣ ଜାଣି ନ ଥାନ୍ତି, ଡାକ୍ତରୀ ଚିକିତ୍ସାର ଉପାଦେୟତା ନେଇ ସେମାନେ ଅଜ୍ଞ। ତେବେ କିଛିଦିନ ପରେ ଧୀରେ ଧୀରେ ପାହାଡ଼ି ଇଲାକାରୁ କିଛି କିଛି ରୋଗୀ ଆସିବା ଆରମ୍ଭ କରନ୍ତି। କ୍ରମେ କିଏ ଚିକିତ୍ସା ପରେ ଆରୋଗ୍ୟ ହୋଇ ଆସିଥାଏ, ଆଣିଥାଏ ମହୁ, ଝୁଣା, କାନ୍ଦୁଲ କିମ୍ବା ଗଞ୍ଜା, କୁକୁଡ଼ା ଡାକ୍ତରଙ୍କ ପାଇଁ ଉପକାର ବଦଳରେ। ଆମ ମେସ୍ କାମ ଚଳିଯାଏ ସୁରୁଖୁରୁରେ ମୁଖ୍ୟତଃ ଏଇ ସରଳ ଲୋକଙ୍କର ଉପହାର- ଅନୁଦାନରେ। ଆମର ଆନନ୍ଦରେ ସମୟ ବିତିଯାଏ।

ଦିନକର କଥା। ଜଣେ ସୁବଳ ଆଦିବାସୀ ଯୁବକ ଉପସ୍ଥିତ ହୁଏ ଚିକିତ୍ସା କେନ୍ଦ୍ରରେ। ତା' ଭାଷାରେ ସେ ପ୍ରକାଶ କଲା !

- ବାବୁ, ପେଟରେ ବଥା, ଭାରି ବଥା ! ଅଇ, ଓକାର, ବାନ୍ତି, ଯାହା ଖାଇଲେ ବାନ୍ତି ଲାଗୁଛି। ପୁଣି ହିଆ, ହାକୁଡ଼ି। ପରେ ପରେ ପାଣିଆ ଝାଡ଼ା ପିଚକାରୀ, ଗନ୍ଧ।

ଜ୍ୟୋତିର୍ମୟ ଜାଣିଲେ, ଏହା ଅମ୍ଳରୋଗର ଲକ୍ଷଣ। ବଣୁଆ ଲୋକଙ୍କ ସାଧାରଣ ରୋଗ। ଅପରିଷ୍କାର ଜଳ ଓ ଖାଦ୍ୟର ଅନିୟମିତତା ଏହାର ମୂଳ କାରଣ। ପଚାରିଲେ - "କେତେ ଦିନ ହେଲାଣି ?"

- ବହେ ଦିନ ବାବୁ ! ମଝିରେ ମଝିରେ ପେଟକୁ କଅଣ ଗୋଟେ ମାରିଦେଉଛି ଯେ, ଭାରି କଷ୍ଟ। ବଇଦଠୁ ଓଷଦ ଖାଇଛି, କଷ୍ଟ ଯାଇନି। ବେଳେବେଳେ ମୁଣ୍ଡ ବିନ୍ଧୁଛି, ଦେହ ଝିମ୍ ଝିମ୍ ହେଉଛି।

ଏତିକି ବେଳେ ଭାଲୁ କାମୁଡ଼ାରେ ଆକ୍ରାନ୍ତ ହୋଇ ଜରୁରୀ ଚିକିତ୍ସା ପାଇଁ ଜଣେ ବୃଦ୍ଧା ଅଣାହେଲା ଏବଂ ଡାକ୍ତରଙ୍କ ଦୃଷ୍ଟି ଆକର୍ଷଣ କଲା। ଆଦିବାସୀ ଯୁବକକୁ ଛାଡ଼ି

ବୃଦ୍ଧାର ଚିକିତ୍ସା ପାଇଁ ମନୋନିବେଶ କଲେ ଜ୍ୟୋତିର୍ମୟ। ଭାଲୁ କାମୁଡ଼ା କ୍ଷତସ୍ଥାନ ସିଲେଇ, ବ୍ୟାଣ୍ଡେଜ, ଇଂଜେକ୍‌ସନ୍ ଆଦି କାମରେ ଲାଗି ପଡିଲେ ସେ।

ଯୁବକ ଅପେକ୍ଷା କଲା ବାହାରେ। କେତେ ଅପେକ୍ଷା କରିବ? ତା'ର ଅନ୍ୟ ଉପାୟ ନ ଥିଲା। ଡାକ୍ତରଙ୍କ ନିର୍ଦ୍ଦେଶ ଅପେକ୍ଷା କରିବାକୁ। ଯିବାକୁ ଚାରା ନାହିଁ। ଭଲ ଏ ଡାକ୍ତରଖାନା ପାଲା!! ଖାଲି ଅପେକ୍ଷା, ଅପେକ୍ଷା!!! ତେଣେ କେତେ କାମ ବାକି ପଡ଼ିଛି। ଦିନଟା ମାରା ହେଲା ଏଇଠି। ଯୁବକ ମୁହଁରେ ଅନାଶ୍ୱସ୍ତିର ଚିହ୍ନ। ବାରଣ୍ଡାରେ ବସି ମାଛି ଘାଉଡୁଥିଲା। ତପତ ଖରାରେ ଜଗତ ଜଳି ଯାଉଛି। ସ୍ୱେଦାକ୍ତ ଶରୀର ଶୀତଳତା ଖୋଜୁଛି। ଓଃ.....

ବହୁ ସମୟ ପରେ ଜ୍ୟୋତିର୍ମୟ ଚିକିତ୍ସା ପ୍ରକୋଷ୍ଠ ଭିତରୁ ବାହାରକୁ ଆସିଲେ। ଦେଖିଲେ, ଯୁବକଟି ବାରଣ୍ଡାରେ ବସି ରହିଛି।

: "ଆରେ ଏଠି ତଳେ ବସିଛ କାହିଁକି? ବେଞ୍ଚ ପଡ଼ିଛି ପରା!"

: "କ'ଣ କରିମି ବାବୁ ରୋଗ ହେଇସି, ଆଇସି।"

: "ଆସ ଆସ ଭିତରକୁ ତେବେ।"

ଯୁବକ ଶିଶୁଟି ଭଳି ଶୋଇ ରହିଲା ଟେବୁଲ ଉପରେ। କାଠୁଆ ଦେହରେ ଛୁଞ୍ଚି ଫୋଡ଼ିଲା ବେଳେ କହିଲା- ଉଃ!

ଜ୍ୟୋତିର୍ମୟ କହିଲେ- "ପ୍ରତି ସପ୍ତାହରେ ଏମିତି ଗୋଟାଏ ଲେଖେଁ ଆସି ନେଇଯିବୁ। ଆଉ ଏ ବଟିକାକୁ ରଖିଥା, ଖାଇ ସାରିଲା ପରେ ଗୋଟାଏ କରି ଦୁଇ ଥର ଖାଇବୁ। ହଁ, ପାଣି ଫୁଟାଇ ଥଣ୍ଡା କରି ପିଇବୁ। ମସଲା, ରାଗ, ତେଲ ତରକାରୀ ଖାଇବୁ ନାହିଁ। ଖାଇବୁ ଖାଲି ସିଝା ଖାଦ୍ୟ, ରୋଗ ଭଲ ହେଲା ପର୍ଯ୍ୟନ୍ତ।"

ଯୁବକ ମୁଣ୍ଡ ଟୁଙ୍ଗାରିଲା, ହସିଲା ଅଳ୍ପ। ଜନମରୁ ମସଲା କ'ଣ ଦେଖି ନାହିଁ, ତରକାରୀ କ'ଣ ଜାଣେନା। ପଖାଳ, ହାଣ୍ଡିଆ, କନ୍ଦା, କନ୍ଦମୂଳ ମାଣ୍ଡିଆ ଜାଉ ସେମାନଙ୍କର ଚିର ଖାଦ୍ୟ।

ଭରସି ପଚାରିଲା ଯୁବକ- "ବାବୁ ରୋଗ ଭଲ ହୋଇଯିବ?"

"ନିଶ୍ଚୟ"- ଜ୍ୟୋତିର୍ମୟଙ୍କର ପ୍ରତିଶ୍ରୁତି।

ସନ୍ଧ୍ୟାଳବେଳା ଚିକିତ୍ସା କେନ୍ଦ୍ର ବନ୍ଦ ହେବା ସମୟ ହୋଇ ଯାଇଥିଲା, ବେହେରା ଆସି ତାଗିଦ କଲା- "ଉଠ୍ ଉଠ୍, ପଇସା ଦେ...."

"ପଇସା?"

"ଇଂଜେକ୍‌ସନ ନେଲୁ, ପଇସା ଦେବୁନୁ! କ'ଣ ମୋଫତ୍? ଆରେ ଓଲୁ ଇଂଜେକ୍‌ସନ ସର୍କାରଙ୍କର ମାଗଣା ଔଷଧ ନୁହେଁ। କିଣା ହୋଇ ଆସିଛି। ଏଥିପାଇଁ ପଇସା ବାହାର କର।"

: "କେତେ ?"

: "ପାଞ୍ଚ ଟଙ୍କା।"

: "ପାଞ୍ଚ ଟଙ୍କା କେତେ ବାବୁ ?"

ବେହେରା ହାତର ପାଞ୍ଚ ଆଙ୍ଗୁଠି ଦେଖାଇ ସଂଖ୍ୟା ବତାଇ ଦେଲା।

ବିଚରା ଯୁବକ ପାଖରେ ଅର୍ଥ ନ ଥିଲା। ଥିଲା ଟଙ୍କିକିଆ ମୁଦ୍ରାଟିଏ। ପଇସା ଦେବାକୁ ହେବବୋଲି ଜାଣି ନ ଥିଲା। ବ୍ୟସ୍ତ ହୋଇ କହିଲା- "ବାବୁ ଜାଣି ନ ଥିଲି ପଇସା କଥା, ମୋ ମାଇଝି ଭଲ ହୋଇଗଲେ ସେ ନଜେ ଆସି ପଇସା ଦେଇଯିବ। ନହିଲେ ଗଞ୍ଜା କି କୁକୁଡ଼ା ଆଣିଦେବ।"

ଜ୍ୟୋତିର୍ମୟ ଶୁଣୁଥିଲେ। ଯୁବକର ଅସାମର୍ଥ୍ୟ ବୁଝି ପାରିଲେ। ରୋଗୀ ପାଖେ ପଇସା ନ ଥିବା ଘଟଣା ନୂଆ ନୁହେଁ। ଏମାନେ ନିଃଛନ୍ଦ ସରଳ ଲୋକ, ମିଛ କହନ୍ତି ନାହିଁ, ବଡ଼ ବଚନବଦ୍ଧ, ମନରେ ଧନୀ, ଧନରେ ଗରିବ- ଏଇ କେତେ ଦିନ ଅନୁଭୂତିରୁ ସେ ଉପଲବ୍ଧି କରିଛନ୍ତି। ଏଣୁ ବେହେରା କଥାରେ ହସ୍ତକ୍ଷେପ କରି କହିଲେ- "ଠିକ୍ ଅଛି, ପଇସା ପରେ ଦେଇଯିବ ହେଲେ, ତୁ ତ ଇଂଜେକ୍‌ସନ ନେଲୁ ରୋଗ ପାଇଁ, ତୋ ମାଇଜି କାହିଁକି ପଇସା ଦେବାକୁ ଆସିବ !"

ଯୁବକ ସରଳ ଭାବରେ କହିଲା- "ବାବୁ, ମୁଁ ରୋଗୀ ନୁହେଁ; ବେମାର ମୋ ମାଇଜିର। ମୁଁ ତା' ପାଇଁ ଓଷଧ ନେବାକୁ ଆସିଥିଲି ନା !"

ଡାକ୍ତର ଜ୍ୟୋତିର୍ମୟଙ୍କ ମୁହଁରେ ବିମୁଢ଼ତାର ମୁଦ୍ରା। ଯୁବକର ସ୍ତ୍ରୀ ରୋଗିଣୀ, ଶଯ୍ୟାଶାୟିନୀ, କିନ୍ତୁ ଯୁବକ ନିଜେ ବୟାନ କରି ଇଂଜେକ୍‌ସନ ନେଇ ସାରିଲାଣି। ଆଦିମ ମଣିଷର ଏଇ ଅନନ୍ତ ବ୍ୟାଧି ପାଇଁ ଔଷଧ ବା କ'ଣ ?" ଜ୍ୟୋତିର୍ମୟଙ୍କର ଭେଷଜ ବିଦ୍ୟା ଫେଲ୍ ମାରୁଥିଲା। ପ୍ରତିକାରର ବିଧି ଖୋଜୁଥିଲେ ସେ। ସେମାନଙ୍କ ନିରୀହ ନିଷ୍କପଟ ଜୀବନ ବର୍ଣ୍ଣନା କରିବାକୁ ଭାଷା ନାହିଁ।

ଉକ୍ତ ସଦ୍ୟ ଗଟଣାଟି ଜ୍ୟୋତିର୍ମୟଙ୍କ ମୁହଁରୁ ଶୁଣି ଭାରି ହସମାଡ଼ିଲା। ସେହି ସରଳ ଆଦିବାସୀ ଯୁବକ ସୁବଳକୁ ଆଖିରେ ଦେଖିବାର ଇଛାକୁ ଦମନ କରିପାରି ନ ଥିଲି। ଫେରନ୍ତା ବସ୍‌କୁ ଅପେକ୍ଷା କରିଥିଲା ଚୌଥଛକ ପାଖରେ, ଆମ ଫାଟକ ଅଫିସ ନିକଟରେ। ଦେଖିଲି । ପାଖକୁ ଡାକିଲି, କେଇ ପଦ କଥା ହେଲି। ବୋଝେଇ ଟ୍ରକ୍‌ଟିଏ ଫାଟକ ସମ୍ମୁଖରେ ଛିଡ଼ା ହେଲା ଯାଞ୍ଚ ପାଇଁ। ସେଇ ଟ୍ରକ୍‌ଟିରେ ଯୁବକକୁ ବସାଇ ଦେଇଥିଲି ତା' ଗନ୍ତବ୍ୟସ୍ଥଳ ପର୍ଯ୍ୟନ୍ତ।



ତେବେ ବିପନ୍ନ ଗ୍ରାମବାସୀମାନଙ୍କୁ ପ୍ରେମ୍ ଓ ମୁଁ ଆଶ୍ୱାସନା ଦେଇ କହିଲୁ- "ଯଦି ମଣିଷ ଭୂତ ହୋଇ ବାଘ ବନିଯାଏ, ଉତ୍ପାତ ଅତ୍ୟାଚାର କରି ବସେ, ଆମ ପାଖେ ମନ୍ତ ଅଛି, ଯନ୍ତ ଅଛି, ଆମ ବନ୍ଧୁକ ଗୁଳିରେ ଗୁଣ ଅଛି ବାଘକୁ ସଙ୍ଗେ ସଙ୍ଗେ ମାରିବା ପାଇଁ। ସେ ଯେମିତି ରୂପରେ ଥାଉ ନା କାହିଁକି ଗୁଳି ଗନ୍ଧ ବାଜିଲା ମାତ୍ରେ ସେଇଠି ମରିପଡ଼ିବ। ତୁମେମାନେ ଦେଖି ପାରୁଛ ଏ ଦି'ଟା ବନ୍ଧୁକକୁ ? କେମିତି ଚକ୍ ଚକ୍ କରୁଛି ! ଆଉ ଏ ଲମ୍ବ ଲମ୍ବା ଗୁଳିଗୁଡ଼ିକୁ ଦେଖି ପାରୁଛ ତ ? ଏଥିରେ ଯନ୍ତ, ମନ୍ତ, ତନ୍ତ ଅଛି- ଗୋଟିଏ ଗୁଳିରେ ହାତୀ ଶୋଇବ, ବାଘ ତ ଛାର ଛୋଟ ଜନ୍ତୁଟିଏ। ସେଥର ବାର୍‌ହା ମାଉଁସ ଖାଇନ କିହୋ ? ମସ୍ତବଡ଼ ମାଈ ଭାଲୁଟା ଗୋଟିଏ ଗୁଳିରେ ଟଳିପଡ଼ି ନ ଥିଲା ?"

ସମସ୍ତେ ହଁ ଭରିଲେ। ଆମ ଉପରେ ସମ୍ପୂର୍ଣ୍ଣ ଆସ୍ଥା ଅଛି ବୋଲି ମତ ପ୍ରକାଶ କଲେ। କିନ୍ତୁ ଆଜିର ଘଟଣା ଭିନ୍ନ। ଦୂରାଚାରୀ ବାଘ ସେମାନଙ୍କ ଦୁଃଖର କାରଣ ହୋଇଛି। ପ୍ରେତର ବାଘ ରୂପ ସେମାନଙ୍କୁ ବେଶୀ ଭୟଭୀତ କରିଛି। ଏଣୁ ଆମର ଅଲୌକିକ ଶକ୍ତି କରାମତି ଓ ବନ୍ଧୁକ ଯନ୍ତର ଦକ୍ଷତା, କାର୍ଯ୍ୟକାରିତା ଦେଖିବା ପାଇଁ ସେମାନଙ୍କ ମୁହଁରେ ଉତ୍କଣ୍ଠା ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଭାଙ୍ଗି ପଡୁଥିବା ମନୋବଳରେ ପ୍ରେମ୍ ଓ ମୁଁ ବନ୍ଧ ବାନ୍ଧିଲୁ। ଆମେ ବନ୍ଧୁ ଦ୍ୱୟ ଦମ୍ଭର ଖମ୍ବଭଳି ସେମାନଙ୍କ ସମ୍ମୁଖରେ ଠିଆ ହେଲୁ। କେଇଦିନ ହେବ ଲୋକଙ୍କ ମୁହଁରୁ ଲିଭିଯାଇଥିବା ହସ ଟିକକ ଫେରାଇ ଆଣିବାକୁ ଚେଷ୍ଟା କଲୁ। ଯେଉଁଠି ଆସନ୍ନ ମୃତ୍ୟୁ ମଣିଷକୁ ଡାକରା ଦେଉଛି, ଭୟାକ୍ରାନ୍ତ ମଣିଷକୁ ସାମାନ୍ୟ କାଠି ଖଣ୍ଡିଏ ମଧ ଆତ୍ମରକ୍ଷା ଓ ଆଶ୍ୱସନାର ମନ୍ତ ଉଚ୍ଚାରଣ କରିଥାଏ। ଯୁଦ୍ଧ କ୍ଷେତ୍ରରେ ସୈନିକର ଦୈହିକ ଶକ୍ତି ଅପେକ୍ଷା ମନୋବଳ ହିଁ ଦଳକୁ ବିଜୟମଣ୍ଡିତ କରିଥାଏ। ମନର ଇନ୍ଧନ ଶକ୍ତିକୁ ସର୍ବଦା ମଜବୁତ୍ ରଖିବା ସଚ୍ଚା ସୈନିକର ଧର୍ମ। ଏଇଭଳି ଏକ ଦୁଃସ୍ଥିତିରେ ଆମେ ଶିକାରୀ ବନ୍ଧୁଦ୍ୱୟ ଆବିର୍ଭୁତ ହୋଇଥିଲୁ ବ୍ୟାଘ୍ରାକ୍ରାନ୍ତ ବିପନ୍ନ ଅଞ୍ଚଳଟିରେ।

ମୁଁ ଏବଂ ପ୍ରେମ୍ ଚିର୍ମିରା ଗାଁ ଦାଣ୍ଡରେ ଏକ ଦଉଡ଼ିଆ ଖଟ ଉପରେ ବସିଥିଲୁ। ଆସନ୍ନ ସନ୍ଧ୍ୟା। ମୁଣ୍ଡ ଉପରେ ବହୁ ପୁରାତନ ତେନ୍ତୁଳି ବୃକ୍ଷଟିଏ ଶାଖା ପ୍ରଶାଖା ମେଲାଇଥିଲା। ଗୁଡ଼ିଏ ବଗବଗୁଲୀ ସେଥିରେ ଆଡ୍ଡା ମେଲାଇଥିଲେ। ଗଛ ଅଗିରେ ପକ୍ଷୀଶାବକମାନେ ଜନ୍ମ ନେଇଥିଲେ। ବଗବଗୁଲୀମାନଙ୍କ ସ୍ୱରରେ ଅଭିଭାବକର ଅପତ୍ୟ ଆଶ୍ୱାସନା। ମୁଁ ତନ୍ମୟ ହୋଇ ପକ୍ଷୀସଂସାର ଦୃଶ୍ୟ ଦେଖୁଥିଲି, ଚିନ୍ତା କରୁଥିଲି - ପାଖରେ ଏତେ ବଡ଼ ବିସ୍ତୀର୍ଣ୍ଣ ବନ ଥାଇ ବଗ ପକ୍ଷୀମାନେ ଏଠି କାହିଁକି ଆସ୍ଥାନ ବସାଇଛନ୍ତି ? କାରଣ ଖୋଜି ବାହାର କରିବାକୁ ବିଶେଷ ଡେରି ଲାଗି ନ ଥିଲା ମୋତେ। ଚିର୍ମିରା ଜଙ୍ଗଲରେ ଅନେକ ପ୍ରକାର ବିଷଧର ସାପ ଅଛନ୍ତି। ଆମ ଭ୍ରମଣ ବେଳେ ସାପମାନଙ୍କର ମୁହାଁମୁହିଁ ହୋଇଛୁ, ବିଶେଷ କରି ପାହାଡ଼ି ବୋଡ଼ା, ରଣା ଏବଂ ଅଜଗର। ଏଠାକାର ଅଜଗର ସାପ ସମ୍ବନ୍ଧରେ ମୋର ଗୋଟିଏ ସ୍ମରଣୀୟ ଅନୁଭୂତି ରହିଛି।

ରାତିରେ ଥରେ ବନଚାରଣ ବେଳେ ଗୋଟେ ମଧ୍ୟମ ଧରଣର ବାର୍‌ହା ଛୁଆ ଆମ ଆଗରେ ସଂକୀର୍ଣ୍ଣ ରାସ୍ତା ଛେଦ କରି ପଳାଇ ଯିବାର ଦେଖିଲୁ। ଆମର ହେଡ୍‌ଲାଇଟ୍ ତା' ପଛେ ପଛେ ଲମ୍ୱିଗଲା। ଆମେ ଦେଖୁ ବାର୍‌ହା ଛୁଆଟା। ରାସ୍ତା ଧାରର ଗୋଟେ ଝଙ୍କାଳିଆ ବୁଦା ଭିତରକୁ ପଶିଗଲା। ତାକୁ ଆୟତ୍ତ କରିବା ପାଇଁ ବୁଦାର ଦୁଇ ବିପରୀତ ଦିଗରୁ ପ୍ରେମ୍ ଓ ମୁଁ ଛକିଲୁ ଓ ଆସ୍ତେ ଆସ୍ତେ ଆଣ୍ଠେଇ ସନ୍ତର୍ପଣରେ ବୁଦା ଭିତରକୁ ପଶିଲୁ। ମଥାର ଉଜ୍ଜ୍ୱଳ ଆଲୁଅ ଓ ବନ୍ଧୁକର ମୁନ ଆଗକୁ ସତର୍କ ଥାଏ। ଗୋଟାଏ ପଦାର୍ଥ ଚକ୍ ଚକ୍ କରୁଥିବାର ମୁଁ ସ୍ପଷ୍ଟ ଦେଖିଲି। ଏହା ଏକ ଅଜଗରର ପିଠି ବୋଲି ମୁଁ ବେଶ୍ ଜାଣିପାରିଥିଲି। ପ୍ରେମ୍ ମଧ୍ୟ ବିପରୀତ ପଟୁ ଲାଇଟ୍ ଜଳାଇ ନିକଟତର ହୋଇଥିଲେ। ବୁଦା ଭିତରେ ମସ୍ତବଡ ସାପଟା ଦାରୁଭୁତମୁରାରି ପରି ପଡ଼ି ରହିଥିବାର ଦେଖି ସେ ଆଲୋକ ମାଧ୍ୟମରେ ମୋତେ ଇସାରା ଦେଇଥିଲେ। କାଳ ଠାର କାଳ ମା' ବୁଝିଲା ଢଙ୍ଗରେ ପ୍ରେମ୍‌ଙ୍କ ଇଙ୍ଗିତ ମୁଁ ବୁଝିପାରି ପଛକୁ ଫେରିଲି। ସେ ମଧ୍ୟ ଫେରି ଆସି ମୋ ସହିତ ମିଳିତ ହେଲେ। ଘଞ୍ଚ ବୁଦାଟା କଣ୍ଟା ପତ୍ର ମେଲି ପ୍ରାୟ ବାର ଫୁଟ ଉଚ୍ଚତା ପର୍ଯ୍ୟନ୍ତ ବର୍ଦ୍ଧିତ। ଅଜଗର ତା' ଭିତରେ ଲମ୍ୱ ହୋଇ ଶୋଇଥିଲା। ତା'ର ମୁଣ୍ଡ ଏବଂ ଲାଞ୍ଜ ଆମେ ଦେଖିପାରି ନ ଥିଲୁ, କେବଳ ଦିଶୁଥିଲା ଦେହ। ଲମ୍ୱା ଜନ୍ତୁର ଅଗ୍ର ଭାଗ ଓ ଶେଷ ଭାଗ କେଉଁଠାରୁ କେଉଁ ଆଡ଼କୁ ବିସ୍ତୃତ ଆମେ ଜାଣିବା ମୁସ୍କିଲ ଥିଲା। ଏପରିସ୍ଥଳେ ସାପ ପାଖେ ରହିବା ନିରାପଦ ନୁହେଁ, ତା' ମୁଣ୍ଡର ସ୍ଥିତି ଠିକ୍ ଭାବେ ନ ଜାଣିଲା ପର୍ଯ୍ୟନ୍ତ। ମୁଁ ଜାଣେ ଅରଣ୍ୟର ଅଜଗର ଚୋଟ ମାରେ ନାହିଁ, ମୁହଁ ପାଖକୁ ଖାଦ୍ୟ ଆସିଲେ ଗୋଟା ପଣେ ଗିଳିଦିଏ। ତା' ଦାନ୍ତର ମୁନିଆ ଅଂଶ ପାଟିର ଭିତର ଆଡ଼କୁ ହୋଇଥିବାରୁ ଥରେ ଦାନ୍ତରେ ଚାପି ଧରିଲେ ତାହା କବ୍‌ଜାରୁ ଆଉ ବାହାରକୁ ମୁକୁଳିବା ଅସମ୍ଭବ ହୋଇପଡ଼େ।

ପିଲାଦିନର ଗୋଟେ କଥା ଏଇଠି ମନେ ପଡୁଛି । ମୋ ବଡ଼ବାପା ରାୟବାହାଦୂର ଖଗେନ୍ଦ୍ର ଚନ୍ଦ୍ର ମହାପାତ୍ର ବାଙ୍କୀର ଅବୈତନିକ ମାଜିଷ୍ଟ୍ରେଟ୍ ଭାବରେ ବାଙ୍କୀ ଶାସନ ଦାୟିତ୍ୱରେ ଥାନ୍ତି (୧୯୨୧ଠୁଁ ୧୯୪୮ ପର୍ଯ୍ୟନ୍ତ) । ଥରେ ଗୋଟେ ବୃହତ୍ ବୁଢ଼ା ଅଜଗର ସାପ ମରାଯାଇ ଲୋକମାନେ ଡମପଡ଼ାଠୁଁ ବାଉଁଶରେ ବାନ୍ଧି କାନ୍ଧେଇ କାନ୍ଧେଇ ଆମ ବୈଠକ ଘର (ବିଚାର ଘର) ପର୍ଯ୍ୟନ୍ତ ଆଣିଥିଲେ । ସାପକୁ ବାଉଁଶରୁ ଉରାରି ଦଉଡ଼ିଗୁଡ଼ିକ ଖୋଲି ଦେଖାଗଲା ଯେ ତା ମୁହଁଠୁଁ ପେଟ ପର୍ଯ୍ୟନ୍ତ ଦୁଇଫାଳ କରି ଛୁରିରେ ଚିରାଯାଇଛି । ଘଟଣାଟି ଥିଲା ଏହିପରି-

ସରୋଜ ବାବୁ ବୋଲି ଜଣେ କମ୍ପାଉଣ୍ଡର ବାଙ୍କୀ ହାସପାତାଳରେ କାମ କରନ୍ତି । ତାଙ୍କ ଘର ତାଳବସ୍ତ, ଡମପଡ଼ାଠାରୁ ପାଞ୍ଚ ମାଇଲ ଦୂର । ହାସପାତାଳର ରୋଗୀସେବା କାମ ସାରି ସେ ବାଙ୍କୀ ବଜାରରୁ ସୌଦା କରନ୍ତି ଓ ରାତିରେ ତାଳବସ୍ତ ଗାଁକୁ ଫେରନ୍ତି ଭାୟା ଡମପଡ଼ା । ଜଙ୍ଗଲ ରାସ୍ତା । ଅନ୍ଧାର ରାତି । ସାଇକଲଟି ତାଙ୍କର ଯାନ । (ସେତେବେଳେ ବାଙ୍କୀର ତିନି ଚାରୋଟି ସାଇକଲ ଯାନ ମଧ୍ୟରୁ ତାଙ୍କର ଅନ୍ୟତମ । ସାଇକଲର ଅନ୍ୟନାମ ଥିଲା ଶୂନଯାନ) । ସରୋଜ ବାବୁ କାମ ସାରି ରାତିରେ ଘରକୁ ଫେରୁଥିଲେ । ବାଙ୍କୀଠୁ ଚଉଦ ମାଇଲ ରାସ୍ତା ଯିବାକୁ ହୁଏ ତାଙ୍କ ଶୂନଯାନରେ । ପାଗ ଶୁଖିଲା ଥିଲା । ଡମପଡ଼ା ଅତିକ୍ରମ କଲେଣି । ତା' ପରେ ପଥୁରିଆ ସଂକୀର୍ଣ୍ଣ ରାସ୍ତା ତାଳବସ୍ତ ପର୍ଯ୍ୟନ୍ତ । ରାସ୍ତାର ଉଭୟ ପାର୍ଶ୍ୱରେ ଘୋର ଜଙ୍ଗଲ । ରାତି କାଳରେ ରାସ୍ତା ଆଉରି ନିଶୁନ ଓ ବିପଦପୂର୍ଣ୍ଣ । ତେବେ ସରୋଜ ବାବୁ ତାଙ୍କ ନିତିଦିନିଆ ରାସ୍ତାରେ ଅଭ୍ୟସ୍ତ । ସାଇକଲର ହାଣ୍ଡଲରେ ଲଣ୍ଠନଟି ଝୁଲାଇ ଚାଲିଥାଆନ୍ତି । ଲଣ୍ଠନର ମିଞ୍ଜି ମିଞ୍ଜି ଆଲୁଅ କେବଳ ଗୋଡ ତଳ ରାସ୍ତା ଦେଖିବା ପାଇଁ । ଆଗରେ କ'ଣ ଅଛି, ଖୁବ୍ ନିକଟ ନ ହେଲେ ଜାଣି ହୁଏ ନାହିଁ । ହଠାତ୍ ସାଇକଲ ଆଗଚକ ଚଢ଼ିଗଲା ଗୋଟେ ମସୃଣ ପଥର ଉପରେ ଏବଂ ଖସରିଗଲା ତା' ଉପରେ । ଆରେ, ଏତ ପଥର ନୁହେଁ, ଆଉ ଗୋଟେ କଅଣ ! ଚିତ୍‌ପଟାଙ୍ଗ ହୋଇ ପଡ଼ିଗଲେ ସରୋଜ ବାବୁ; ତାଙ୍କ ଯାନ ଠାଏ ଓ ସେ ଆଉ ଠାଏ । ସାଇକଲ ହାଣ୍ଡଲରୁ ଲଣ୍ଠନ ଖସି ପଡ଼ି ଖଣ୍ଡେ ଦୂରରେ ହାମୁଡେଇ ପଡ଼ିଥାଏ । ସେଥିରୁ କିରାସିନିତକ ଚହଲି ନିଗିଡ଼ି ଯାଇ ଲଣ୍ଠନ ଦେହସାରା ବୋଲି ହୋଇଯିବା ଦ୍ୱାରା ହୁଳା ଭଳି ଜଳିବାକୁ ଲାଗିଲା ଏବଂ ମୁହୂର୍ତ୍ତକ ମଧ୍ୟରେ ନିଆଁ ଲଣ୍ଠନଟିକୁ ସମ୍ପୂର୍ଣ୍ଣ ଚାଟିଦେଲା । ଏଣେ ସରୋଜ ବାବୁ ଅନ୍ଧାର ଭିତରେ ଅନୁଭବ କରନ୍ତି ଯେମିତି ତାଙ୍କ ଗୋଡକୁ ସରୀସୃପଟାଏ କାବୁ କରି ବସିଛି । ଟିକିଏ ପ୍ରକୃତିସ୍ଥ ହୋଇ ଦେଖନ୍ତି, ତାଙ୍କ ପାଦ ଦୁଇଟା ଗୋଟେ ବୃହତ୍ ଅଜଗର ପାଟି ଭିତରେ ଆକ୍ରାନ୍ତ ଏବଂ ଗୋଡ଼ପଟୁ ତାଙ୍କ ଦେହକୁ ଆସ୍ତେ ଆସ୍ତେ ଟାଣି ନେଉଛି ସେଇ ଭୟଙ୍କର ପାଟି ଗହ୍ୱର ଭିତରକୁ । ଗୋଟିଏ ବିରାଟ ଅଜଗର

ମୁହଁରେ ପଡ଼ିଛନ୍ତି ଏବଂ ତାଙ୍କୁ ଗିଳିବାକୁ ବସିଛି ଗୋଡ଼ଆଡୁ ଏବଂ ଆଉ କେଇ ମିନିଟ ଭିତରେ ତାଙ୍କ ଜୀବନ୍ତ ଶରୀର ଅଜଗରର ଆହାର ହୋଇଯିବ- ଏକଥା ନିଷ୍ଚିତ। କ୍ରମଶଃ ତାଙ୍କ ଆଣ୍ଠୁ ପର୍ଯ୍ୟନ୍ତ ଅଜଗର ଗିଳି ସାରିଲାଣି, ଝିଟିପିଟି ମୁହଁରେ ପତଙ୍ଗଟିଏ ଯେମିତି ପ୍ରଥମେ ଛଟପଟ ହୁଏ, ସେହିପରି ତାଙ୍କର ଅବସ୍ଥା। ମୃତ୍ୟୁ ତ ଅନିବାର୍ଯ୍ୟ। ତଥାପି ଗୋଟାଏ ବୁଦ୍ଧି ତାଙ୍କ ମନକୁ ସ୍ପର୍ଶ କଲା, ବୁଡ଼ିଗଲାବେଳେ କୁଟାଖିଅକୁ ଆଶ୍ରା କରି କାଳେ ବଞ୍ଚିଯିବା ଭଳି ସେ ମନରେ ସାହସ ବାନ୍ଧିଲେ। ତାଙ୍କ ହାତ ଦିଓଟି ସଚଳ ଥିଲା। ତାଙ୍କ କାନ୍ଧରେ ଶାନ୍ତିନିକେତନୀ କପଡ଼ା ବ୍ୟାଗ୍‌ଟି ଲାଖି ରହିଥିଲା। ସେଥିରେ ଡାକ୍ତରଖାନାର ଅସ୍ତ୍ରୋପଚାର ଧାରୁଆ ଛୁରିଟିଏ ସର୍ବଦା ଥାଏ ବାନ୍ଧିଲା ଘୋଡ଼ା ଘାସ ଖାଏ ନ୍ୟାୟରେ। ଆଉ କ୍ଷଣେ ଚିନ୍ତା ନ କରି, ବ୍ୟାଗ୍ ଭିତରୁ ଅଣ୍ଡାଳି ଛୁରିଟିକୁ ନେଇ ଆସିଲେ ଏବଂ ଅଜଗର ପାଟିକୁ ସେଥିରେ ଚିରିବାକୁ ଲାଗିଲେ। ଅଜଗର ଯେତିକି ମାତ୍ରାରେ ତାଙ୍କ ଗୋଡ଼କୁ ତା' ଉଦର ଭିତରକୁ ଗିଳିବାରେ ଲାଗିଥାଏ, ସେଇ ଅନୁପାତରେ ସରୋଜ ବାବୁ ତା ଓଠର ଉଭୟ ପ୍ରାନ୍ତକୁ ଚିରିବାରେ ଲାଗିଥାନ୍ତି। ଆକାଶର ପଞ୍ଚମୀ ଚାନ୍ଦ ଏ ଦିଗରେ ତାଙ୍କୁ କ୍ଷୀଣ ଆଲୋକ ଦେଖାଇ ସାହାଯ୍ୟ କରିଥିଲା। କ୍ରମଶଃ ସାପର ଶକ୍ତି ଶେଷ ହୋଇ ଯାଇଥିଲା। ଚକଡ଼ାଟା କେବଳ ରକ୍ତରେ ବୁଡ଼ିଗଲା। ତା' ପରେ ବିଶାଳ ସର୍ପଟା ନିସ୍ତେଜ ହୋଇ ପଡ଼ିଗଲା। ତା'ର ପାଟିଠାରୁ ପେଟ ପର୍ଯ୍ୟନ୍ତ ଦୁଇ ଫାଳ ହୋଇ ଯାଇଥିଲା ଠିକ୍ ପନିକିରେ ଲମ୍ବା ଛଚିନ୍ଦ୍ରାଟିଏ (ଗୟଳ କଲରା) ଅଗ୍ରଭାଗରୁ ଉଦର ପର୍ଯ୍ୟନ୍ତ ଦୁଇ ଫାଳ ହେବା ଭଳି। ସାହସୀ ସରୋଜ ବାବୁ ଅନାୟାସରେ ତାଙ୍କର ପାଦଯୁଗଳକୁ ଅଜଗରର ଉଦର ଭିତରୁ ଉଦ୍ଧାର କରି ଦେଖନ୍ତି କେବଳ ରକ୍ତ, ରୁଧିର ସ୍ନାନ କରିଛି ତାଙ୍କର ଆପାଦ ଅଣ୍ଟା। କେଉଁଠି କ୍ଷତ ଚିହ୍ନ ନାହିଁ, ନାହିଁ ମଧ ଯନ୍ତ୍ରଣା। ସେ ଏଥର ପ୍ରକୃତିସ୍ଥ ହେଲେ, ଥରିଲା ଦେହକୁ ଦମ୍ଭକରି ଛିଡ଼ା ହେଲେ ଏବଂ ବ୍ୟାଗ୍‌ରୁ ଗାମୁଛା କାଢ଼ି ଆଗେ ଛୁରିକୁ ପୋଛି ଚୁମା ଦେଲେ, ଛୁରିଟି ପାଖରେ ଥିଲା ବୋଲି ସିନା ଜୀବନ ରକ୍ଷା କଲେ ! ଗାମୁଛାରେ ରକ୍ତ ଭିଜା ଗୋଡ଼କୁ ପୋଛିଲେ, ପୋଡ଼ା ଲଣ୍ଠନକୁ ଉଠାଇ ସାଇକଲ ଯାନର ଯଥା ସ୍ଥାନରେ ଝୁଲାଇଲେ ଏବଂ ସାଇକଲକୁ ହାତରେ ଧରି ଗଡ଼ାଇ ଗଡ଼ାଇ ଗାଁ ଆଡ଼କୁ ଚାଲିଲେ। ଗାଁ ସେଠୁ ଦୁଇ ମାଇଲ ଦୂର ହେବ। କାହିଁକି କେଜାଣି ସବୁ ଠିକ୍ ଥାଇ ମଧ ସେ ସାଇକଲ ଚଢ଼ି ପାରି ନ ଥିଲେ। ଗୋଟିଏ ମହା ବିପତ୍ତିରୁ ବର୍ତ୍ତି ଯାଇଛନ୍ତି ଠିକ୍ ଯମ ମୁହଁରୁ ରକ୍ଷା ପାଇଲା ପରି। ଈଶ୍ୱରଙ୍କୁ ପ୍ରଣାମ କଲେ। ବାଙ୍କୀର ଅଧିଷ୍ଠାତ୍ରୀ ଦେବୀ ଚର୍ଚ୍ଚିକାଙ୍କୁ ମନେ ମନେ ଧନ୍ୟବାଦ ଦେଲେ ତାଙ୍କର ଅସୀମ କରୁଣା ପାଇଁ। ଦେବୀକୃପା ନ ଥିଲେ, ଏପରି ନିଶ୍‌ଚିତ ମରଣରୁ କିଏ କ'ଣ ରକ୍ଷା ପାଏ ? ଗାଁରେ ପହଞ୍ଚି ସରୋଜ ବାବୁ ଘଟଣାଟିକୁ ବୟାନ କଲେ। ତହିଁ ପରଦିନ ସକାଳୁ ସକାଳୁ

ତାଳବସ୍ତ ଗାଁର କେତେକ ଲୋକ ମଲା ସାପଟିକୁ ବାଉଁଶରେ ବାନ୍ଧି ଆମ ଘର ଦାଣ୍ଡରେ ହାଜର। ସେମାନଙ୍କ ସାଙ୍ଗରେ ଆସିଥାନ୍ତି ମୁଖ୍ୟ ନାୟକ ସରୋଜ ବାବୁ। ମାଜିଷ୍ଟ୍ରେଟ୍ ରାୟବାହାଦୂର ବିଛଣା ଛାଡ଼ି ନ ଥାନ୍ତି। ରାତିରେ ଅଫିସ ଫାଇଲ କାମ ସାରି, ନ୍ୟାୟ ନିଶାପର ରାୟ ଲେଖି ବହୁ ବିଳମ୍ବରେ ଶଯ୍ୟା ଯା'ନ୍ତି, ଉଠୁ ଉଠୁ ଡେରି ହୋଇଯାଏ। ମୁଁ ପରିବାରର କୋଳପୋଛା କନିଷ୍ଠ ପୁଅ ବୋଲି ତାଙ୍କ ପାଖେ ଶୁଏ। ଦାଣ୍ଡରେ ମସ୍ତବଡ଼ ମଲା ସାପଟେ ମରା ହୋଇ ଆସିଥିବାର ଦେଖି ବଡ଼ବୋଉ ଡାକ ପକାଇଲାରୁ ମୁଁ ବଡ଼ବାପାଙ୍କ ସହିତ ଉଠିଲି। ମୃତ ଅଜଗର ସାପଟିକୁ ଆମେ ଦେଖିଲୁ ବିସ୍ଫାରିତ ନେତ୍ରରେ। ଆମ ଚର୍ଚ୍ଚିକା ଗ୍ରାମର ଲୋକେ ରୁଣ୍ଡ ହୋଇ ସରୋଜ ବାବୁଙ୍କ ସାହସକୁ ବାହାବା କରୁଥାନ୍ତି। ଏମିତି ଦୃଶ୍ୟ ପ୍ରାୟ ମଝିରେ ମଝିରେ ଆମ ଘର । ଆଗରେ ଘଟିଥାଏ। ଜଙ୍ଗଲର ଲୋକମାନେ ଦୁଷ୍ଟ ବାଘ, ଭାଲୁ, ସାପ ଆଦି ହିଂସ୍ରଜନ୍ତୁଙ୍କୁ ହତ୍ୟା କରି ମାଜିଷ୍ଟ୍ରେଟ୍‌ଙ୍କଠୁଁ ପୁରସ୍କାର ଆଶାରେ ଆସିଥାନ୍ତି। ବଡ଼ବାପା ସେମାନଙ୍କୁ ଆର୍ଥିକ ପୁରସ୍କାର ସହିତ ଦିନକର ଖାଦ୍ୟ ପେୟ ପ୍ରଦାନ କରିଥାନ୍ତି। ସରୋଜ ବାବୁ ତ ଅଧସ୍ତନ କର୍ମଚାରୀ। ତାଙ୍କୁ ସେ ନିଯୁକ୍ତି ଦେଇଛନ୍ତି। ସେ କ'ଣ ଅର୍ଥ ଗ୍ରହଣ କରିବେ ? ରାୟବାହାଦୂର କହିଥିଲେ- "ସାବାସ ତୁମେ ସରୋଜ ବାବୁ। ତୁମର ଏତାଦୃଶ ସାହସ ପାଇଁ ଧନ୍ୟବାଦ। ତୁମେ କେବଳ ଛୁରି ସାହାଯ୍ୟରେ ରୋଗ ଭଲ କରନି, ଛୁରି ବ୍ୟବହାର କରି ମଧ ଶତ୍ରୁ ସଂହାର କରିପାର। ତୁମର ଧୈର୍ଯ୍ୟ ଓ ସାହସକୁ ତାରିଫ କରିବା ପାଇଁ ମୋର ଭାଷା ନାହିଁ। ନିବିଡ଼ ନଟା ଭିତରେ ବାସ କରୁଥିବା ବ୍ୟକ୍ତିମାନଙ୍କର ସାହସ ହିଁ ଆତ୍ମରକ୍ଷାର ଅସଲ ଅସ୍ତ୍ର ହୋଇଥାଏ।" ତେବେ ପୁରସ୍କାର ସ୍ୱରୂପ ମାଜିଷ୍ଟ୍ରେଟ୍‌ଙ୍କ କାର୍ଯ୍ୟାଳୟରୁ ସରୋଜ ବାବୁଙ୍କୁ ଏକ ପ୍ରଶଂସାପତ୍ର ପ୍ରଦାନ କରାଯାଇଥିଲା ଏବଂ ତା'ର ଏକ ନକଲ କଟକ କଲେକ୍ଟରଙ୍କୁ ମଧ ଦିଆଯାଇଥିଲା।

ଅଜଗରର ପରାକ୍ରମ ସମ୍ବନ୍ଧରେ ମୁଁ ଅବହିତ ଥାଏ। ଅଜଗର ଏବଂ ମହାବଳ ବାଘର ଲଢ଼େଇ ଆଖିରେ ଦେଖିବାର ସୌଭାଗ୍ୟ ଅର୍ଜି ନାହିଁ, କିନ୍ତୁ ଟେଲିଭିଜନ ପର୍ଦ୍ଦାରେ ଏଭଳି ଅନନ୍ୟ ଦୃଶ୍ୟଟିଏ ଦେଖିବାର ସୁଯୋଗ ପାଇଥିଲି। ଦୃଶ୍ୟଟି ବଡ଼ ଜୀବନ୍ତ ଓ ରୋମାଞ୍ଚପୂର୍ଣ୍ଣ। ଆଫ୍ରିକା ମହାଦେଶର କୌଣସି ଏକ ନିବିଡ଼ ଜଙ୍ଗଲ। ଚମତ୍କାର ଭାବେ ଫଟୋ ଉତ୍ତୋଳନ କରିଛନ୍ତି ଦକ୍ଷ ଫଟୋଗ୍ରାଫର। ଦୀର୍ଘକାୟ ଅଜଗର ସାପଟି ବଳବାନ ବାଘକୁ କୌଣସି ମତେ ପେଟରୁ ପିଠି ପର୍ଯ୍ୟନ୍ତ ସ୍ପ୍ରିଙ୍ଗ ଭଳି କେଇଥର ଗୁଡ଼େଇ ହୋଇ ତାକୁ କାବୁ କରିଦେଇଛି। ବାଘ ତା ତୀକ୍ଷଣ ଦାନ୍ତ ଓ ପଞ୍ଝାର ନଖ ସାହାଯ୍ୟରେ ସାପର ମୁଣ୍ଡକୁ ବିଦାରି ଚାଲିଛି, କିନ୍ତୁ ସାପ ଜାବରୁ ମୁକ୍ତି ପାଇ ପାରୁନି। ଗୋଲେଇ ଗଣ୍ଡକାଠଟେ ଭୂଇଁରେ ଗଡ଼ିଗଲା ଭଳି ବାଘ ଭୂଇଁରେ ଗଡ଼ି ଯାଉଥାଏ। ସେମାନଙ୍କର କୁସ୍ତି ଲାଗିଲା ପ୍ରାୟ ଅଧ ଘଣ୍ଟା ସମୟ ପର୍ଯ୍ୟନ୍ତ। ବାଘ ପ୍ରଥମେ ଚଳତ୍ ଶକ୍ତି ହରାଇ ବସିଲା। ବୋଧହୁଏ

ତା'ର ମେରୁଦଣ୍ଡ ଓ ପିଞ୍ଜରା ହାଡ଼ ଭାଙ୍ଗି ଗୁଣ୍ଡ ହୋଇଗଲା ଏବଂ ପରେ ପରେ ସେ ମୃତ୍ୟୁବରଣ କଲା। ସାପଟାର ମୁଣ୍ଡ ମଧ୍ୟ ବିଦୀର୍ଣ୍ଣ ହୋଇ ଯାଇଥିଲା ଏବଂ ସେ ମଧ୍ୟ ବାଘ ପରି ମୃତ୍ୟୁପଥର ଯାତ୍ରୀ ହୋଇଥିଲା। ଦର୍ଶକମାନଙ୍କ ପାଇଁ ବେଶ୍ ରୋମାଞ୍ଚଭରା ଦୃଶ୍ୟଟିଏ। ଯେଉଁ ମହାନ୍ ଫଟୋଗ୍ରାଫର ମହାଶୟ ଉକ୍ତ ବିରଳ ଦୃଶ୍ୟଟିର ଜୀବନ୍ତ ଫଟୋ ଉତ୍ତୋଳନ କରି ପାରିଛନ୍ତି, କେତେ ଭାଗ୍ୟବାନ ସେ ସତେ !

ତେବେ ବାଘ ଓ ଅଜଗର ସାପର ସଂଘର୍ଷ ଯଦିଚ ମୁଁ ସ୍ୱଚକ୍ଷୁରେ କେବେ ଦେଖି ନାହିଁ ମୋର ବନଚାରଣ ସମୟରେ; ବାଘ ନଦେଖିଲେ ବିଲେଇ ଦେଖ' ଭଳି ଏକ ସମାନ୍ତରାଳ ଅହି-ନକୁଳ ଲଢ଼େଇ ପ୍ରତ୍ୟକ୍ଷ ଭାବେ ଦେଖିବାର ସୁଯୋଗ ପାଇଥିଲି। କୌଣସି ଘଞ୍ଚ ଅରଣ୍ୟର ଘଟଣା ନୁହେଁ, ସହରର ଏକ ଅଞ୍ଚଳ ଭିତରେ। ବାଲେଶ୍ୱର ସହରର ପୌରାଞ୍ଚଳ। ସହର ଭିତରେ ଅନେକ ସନ୍ତସନ୍ତିଆ ସ୍ଥାନ, ଘଞ୍ଚ ବାଉଁଶବୁଦା ଓ ଗଡ଼ିଆମାନ ବିଦ୍ୟମାନ। ସନ୍ଧ୍ୟା ପାଞ୍ଚଟା ସମୟରେ ଠିକ୍ ମୁଁ ଟ୍ରେଜେରୀ ଅଫିସ ଛାଡ଼ି ଏବଂ ପାଦରେ ଚାଲି ଚାଲି ଯାଏ ରାଜାବଗିଚାସ୍ଥିତ ମୋର ସରକାରୀ ବାସଭବନକୁ। କିଲଟରୀଠାରୁ ରାଜାବଗିଚା ମାତ୍ର ଦଶ ମିନିଟର ରାସ୍ତା। ରାସ୍ତାର ଉଭୟ ପ୍ରାନ୍ତରେ ଲାଗିଲୁଗି ବାଉଁଶ ଗଛମାନ। ଗୋଟାଏ ଫୁକାର ପାଖରେ ବୁଦା ମୂଳରେ ଗୋଟେ ପାହାଡ଼ି ନେଉଳ ଏବଂ ନାଗସାପ ଯୁଦ୍ଧରତ ଥିବାର ବିରଳ ଦୃଶ୍ୟ ଦେଖି ମୁଁ ଅଟକି ଗଲି। ନେଉଳ ରୁମ ଟାଙ୍କୁରି ଦେହକୁ ଫୁଲାଇ ଦେଇଥାଏ ଗୋଟାଏ ଶୃଗାଳ ଆକାର ଭଳି। ସାପ ମଧ୍ୟ ତା' ଫଣାକୁ ଅନ୍ତତଃ ତିନିଫୁଟ ଉଚ୍ଚକୁ ଉତ୍ତୋଳନ କରି ଫଁ ଫଁ ହୋଇ ଚୋଟ ମାରୁଥାଏ। ସର୍ପ ଚୋଟ ନେଉଳ ଦେହରେ ନ ବାଜି ବାଜୁଥାଏ ଭୂଇଁରେ। ଏଣେ ନେଉଳ ଦାନ୍ତ ଖିଂକାରି ଆକ୍ରମଣାତ୍ମକ ଭଙ୍ଗୀରେ ଅପେକ୍ଷା କରିଥାଏ ସୁଯୋଗକୁ। କେହି ପଛଘୁଞ୍ଚା ଦେବାକୁ ପ୍ରସ୍ତୁତ ନ ଥାନ୍ତି। ଉଭୟେ ଏହିପରି ଛକାପଞ୍ଝାରେ ଦଶ ମିନିଟ କାଳ ରହିଲେ ଏବଂ ସର୍ବ ପ୍ରଥମେ ନେଉଳ ସାପ ଫଣାକୁ ଲମ୍ଫ ମାରି କାମୁଡ଼ି ଧରିଲା। ସାପ ମଧ୍ୟ ତା' ଦେହରେ ଗୁଡ଼ାଇ ହୋଇଗଲା ତତ୍ କ୍ଷଣାତ୍। ଉଭୟେ ଭୂଇଁରେ ଗଡ଼ାଗଡ଼ି ହେଲେ କିଛି ସମୟ ଏବଂ ପ୍ରଥମେ ସାପ ନିସ୍ତେଜ ହୋଇପଡ଼ିଲା। ନେଉଳ ଦେହକୁ ସଙ୍କୁଚିତ କରି ନେଇ ସାପ ଗୁଡ଼େଇରୁ ଖସି ଆସିଲା। ଉଭୟେ କ୍ଷତବିକ୍ଷତ। ସାପଟା ସେଇଠି ମରି ପଡ଼ିଲା ଏବଂ ନେଉଳ ମଧ୍ୟ ସର୍ପାଘାତରେ ବିଷଜ୍ୱାଳାରେ ଆକ୍ରାନ୍ତ ହୋଇ ସାରିଥିଲା। ସେଇଠି ଘୁମେଇ ରହିଲା ଏବଂ ତା'ର ମଧ୍ୟ ପ୍ରାଣବାୟୁ ଉଡ଼ିଗଲା। ସେତେବେଳକୁ ଅନେକ ଦର୍ଶକ ଠୁଳ ହୋଇ ସାରିଥାନ୍ତି। ମୁଁ ଦଖେଣାହାରୀଙ୍କ ତରଫରୁ ପ୍ରଥମ ବ୍ୟକ୍ତି ଯିଏକି ରଣରତ ଜନ୍ତୁଦ୍ୱୟଙ୍କର ଖୁବ୍ ନିକଟତର ହୋଇ ଯାଇଥିଲି ମୋର ଅଲକ୍ଷ୍ୟରେ। ସେମାନେ ମଧ୍ୟ ମଣିଷକୁ ଭ୍ରୂକ୍ଷେପ ନ କରି ଯୁଦ୍ଧରେ ମତ୍ତ ଥା'ନ୍ତି। ପଶୁମାନେ ଏତେ ଯୁଦ୍ଧଖୋର

ହୋଇପାରନ୍ତି କେହି ବିଶ୍ୱାସ କରିବ ନାହିଁ ନିଜେ ନ ଦେଖିଲା ପର୍ଯ୍ୟନ୍ତ। ମଲାପରେ ମୁଁ ଦୁଇ ପରାକ୍ରମୀ ବୀର ଜଓ୍ୱାନ୍‌ଙ୍କ ମୃତଦେହକୁ ତନ୍ନ ତନ୍ନ ପରୀକ୍ଷା କରିଥିଲି। ସାପର ମୁଣ୍ଡ ତ ଆଉ ନ ଥିଲା ପ୍ରାୟ। କିନ୍ତୁ ନେଉଳର ବେକରେ ସାପର ଦନ୍ତାଘାତ ଲକ୍ଷ୍ୟ କରିଥିଲି। ସେମାନଙ୍କ ବୀରତ୍ୱ ସମ୍ମାନାର୍ଥେ ଭିନ୍ନ ଭିନ୍ନ ସ୍ଥାନରେ କାଠ ଜାଳି ଅଗ୍ନିରେ ଶବଦାହ କରିଥିଲି। ଜିଦି ଆଗରେ ଜୀବନ ତୁଚ୍ଛ, ମୃତ୍ୟୁ ଶ୍ରେୟସ୍କର- ପଶୁ ସମାଜର ପ୍ରକୃତି। ଏପରି ଅନେକ ଦୃଷ୍ଟାନ୍ତ ଜଙ୍ଗଲ ଜୀବନରେ ମିଳିଥାଏ। ବାଘ ହାତୀଙ୍କର ଲଢ଼ାଲଢ଼ି ଆହୁରି ଭୟଙ୍କର। ପ୍ରତ୍ୟେକ କ୍ଷେତ୍ରରେ ଉଭୟଙ୍କର ପ୍ରାଣନାଶ ହୋଇଥାଏ। ଜିଦି ହିଁ ଜୀବନର ବିପରୀତ୍ୟ ମୃତ୍ୟୁ। ଶାନ୍ତିରେ ବଞ୍ଚି ରହିବାକୁ ହେଲେ ଜୀବନ ପାଇଁ ଜିଦି ହିଁ ପରିହାର କରିବାକୁ ହୁଏ- ପ୍ରାଣୀ ଜଗତର ପରାମର୍ଶ ବୋଲି ମୁଁ ଅନୁଭବ କରିଛି। ସଂଘର୍ଷ ଉଭୟ ପକ୍ଷର ବିପୁଳ କ୍ଷତି ଘଟାଏ। ଜୀବନ ପାଇଁ ସଂଘର୍ଷ ସର୍ବଦା ବର୍ଜନୀୟ।



ଅଜଗର ବିଷଧର ସର୍ପ ନୁହେଁ ଯଦିଚ ଲମ୍ବେଇ ଓ ମୋଟେଇରେ ଅଜଗର ସର୍ବ ବୃହତ। ବିଷଧର ସର୍ପ ସମ୍ବନ୍ଧରେ ମୋର ଅନୁଭୂତି ଅଛି। କୌରସି ଅରଣ୍ୟ କାହାଣୀ ନୁହେଁ, ନବନିର୍ମିତ ରାଜଧାନୀ ଭୁବନେଶ୍ୱର ସହରର ଦିବାଲୋକର ଘଟଣା। ସେତେବେଳକୁ ମୋର ସ୍ନାତକୋତ୍ତର ଶିକ୍ଷା ସମୟ। ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାଣପୀଠ ବାଣୀବିହାରରେ ମୁଁ ଅଧ୍ୟୟନରତ। ରହେ ମୋ ଭିଣୋଇଙ୍କ ବସା ଛ' ନମ୍ବରରେ ଯାହାକୁ ପରେ ଗଙ୍ଗ ନଗର ନାମରେ ନାମିତ କରାଯାଇଛି।

ବିଶେଷ କରି ଏ ଛ' ନମ୍ବର ୟୁନିଟ୍‌ଟି କ୍ୟାପିଟାଲର ଅପେକ୍ଷାକୃତ ଜନଶୂନ୍ୟ ସ୍ଥାନ। ଲାଇନ୍ ବାନ୍ଧି କ୍ୱାର୍ଟର୍ସଗୁଡ଼ିକ ନିର୍ମିତ ହୋଇଥିଲେ ମଧ୍ୟ ଆଗରେ ପଛରେ ବିସ୍ତୃତ ପଡ଼ିଆମାନ। ସେଥିରେ ଅତୀତ ଜଙ୍ଗଲର ଚିହ୍ନ ସ୍ୱରୂପ ଠାଏ ଠାଏ ଉଇହୁଙ୍କା ବିଦ୍ୟମାନ ଏବଂ ସ୍ଥାନେ ସ୍ଥାନେ ବାଙ୍ଗେରା ବୃକ୍ଷରାଜି- ବାଇଗଦା, କଣ୍ଟେଇ, ଭୂଇଁ ଚାକୁଣ୍ଡା, ଅରଖ ଗଛ ଆଦି। ପ୍ରଚଣ୍ଡ ଖରାରେ ସାନଠୁଁ ବଡ଼ ପର୍ଯ୍ୟନ୍ତ ଉଦ୍ଭିଦ ସମୂହ ଝାଉଁଳି ମୁଣ୍ଡ ତଳକୁ କରିଥାନ୍ତି। ଉତପ୍ତ ରୁକ୍ଷାକାଶ। ଏଇ ଆକାଶ ଦିନେ ବର୍ଷା ଛିଞ୍ଚୁଥିଲା, ବର୍ଷ ବତୁରା ବାଆ ହେଦକୁ ଆମୋଦିତ କରୁଥିଲା, ମନକୁ ପୁଲକିତ କରୁଥିଲା, ତରୁଲତା ଏବଂ ପ୍ରାଣୀ ସମାଜ ଉଲ୍ଲସିତ ହେଉଥିଲେ। ଏଇଲେ ପାଗ ବଦଳିଛି। ସୂର୍ଯ୍ୟର ରାଜସ୍ୱ। ତୁ ତୁ ଖରା। ନିଦାଘର ଅଗ୍ନିବର୍ଷୀ ଆକ୍ରୋଶ-ଅତ୍ୟାଚାର। ଏହିପରି କେତେ କବି ଭାବନା, ଲେଖକ କଳ୍ପନା ମୁଣ୍ଡରେ ପୁରାଇ ସାଇକଲ ପେଲି ଚାଲିଥାଏ- ବାଣୀବିହାରଠାରୁ ଗଙ୍ଗନଗର ଉଦ୍ଦେଶ୍ୟରେ। ଆମ କ୍ୱାର୍ଟର୍ସ ଥାଏ ଆଉ ପାଏ ବାଟ। ମୁଣ୍ଡରେ ଧଳା ରୁମାଲଟିଏ ବାନ୍ଧି ଦେଇଥାଏ ରୌଦ୍ର ଜ୍ୱାଳାରୁ କିଞ୍ଚିତ ରିହାତି ପାଇବା ପାଇଁ। ଘର୍ମାକ୍ତ ଶରୀର। କେଉଁ ଆଡକୁ ନଜର ନ ଥାଏ, କ୍ୱାର୍ଟର୍ସରେ କୌଣସି ମତେ ପହଞ୍ଚିଗଲେ ତ୍ରାହି, କଂସାଟିଏ ପଖାଳ ଓ ତହିଁରେ ଦହି, ତା' ସାଙ୍ଗକୁ ବଡ଼ି ରାଇତା, ଶୁଖୁଆ ପୋଡ଼ା, ଶାଗ ଖରାଦିନର ଖାଇବା ପାଗ। ଘର ଆଉ ଅଳ୍ପ ବାଟ।

ରାସ୍ତା କଡ ପଡ଼ିଆର ଶେଷାଂଶରେ ବୁଦୁବୁଦୁକିଆ ଜଙ୍ଗଲ, ଅନାବନା ଗଛ। ଗଛମାନଙ୍କ ଉଚ୍ଚତାକୁ ଅତିକ୍ରମ କରି ଉଇ ହୁଙ୍କାଟି ରାସ୍ତାକୁ ଦୃଶ୍ୟମାନ। କିଏ ଜଣେ ସେଠି ବସି ପାଟି କରୁଥିବାର କାନକୁ ଶୁଭିଲା। ସତେ ତ, ଲୋକଟିଏ, ମୁଣ୍ଡରେ ଠେକାଟିଏ, ପିଠିଟି କେବଳ ଦିଶୁଛି ମୋତେ। ସେଠି କ'ଣ କରୁଛି ? ପୁଣି ଶୁଣିଲି ତା'ର ସ୍ୱର। ସେ ଆତୁର ସ୍ୱରରେ କହୁଛି- "ଆଜ୍ଞା ଶୁଣ, ଟିକଏ ଶୁଣ।" ପାଖକୁ ନ ଯାଇ ରହି ପାରିଲି ନାହିଁ। ସାଇକଲ ସହିତ ପଡ଼ିଆ ଭିତର ଦେଇ ତା' ପାଖକୁ ମାଡ଼ିଗଲି। ଆରେ ବାବା, ଏ କ'ଣ କାଣ୍ଡ !

ଲୋକଟି ମଧ୍ୟବୟସ୍କ। କେଳା। କୃଷ୍ଣ ବର୍ଣ୍ଣ ମୁହଁରେ ବାଘୁଆ ନିଶ, ନାଲି ଆଖି, ଲମ୍ବ କପାଳ- ଏଗୁଡ଼ିକ ଯେମିତି କେଳାମାନଙ୍କର ଜାତୀୟ ଚିହ୍ନ ! ଚମକି ପଡ଼ିଲି। ହୁଙ୍କା ଗାତ ମୁହଁରେ କାହାକୁ ଗୋଟେ ଶକ୍ତ ଭାବେ ମାଡ଼ି ଧରିଛି। କ'ଣ ହୋଇପାରେ ? ମୋତେ ପାଖରେ ଦେଖି ବିକଳ କଣ୍ଠରେ ମିନତି କଲା- "ଆଜ୍ଞା, ମୋ ବାହୁଙ୍ଗାଟା ଆଣି ମୋତେ ଦିଅ।" ପାହୁଣ୍ଡେ ଦୂରରେ ତା'ର କେଇଟି ସାପ ପେଡ଼ି ଏବଂ ବାହୁଙ୍ଗାଟା ପଡ଼ିଥାଏ। ମୁଁ ପ୍ରଥମେ କିଛି ବୁଝି ପାରିଲି ନାହିଁ। ସେ ପୁଣି ନେହୁରା ହୋଇ କହିଲା - "ବାବୁ ବାହୁଙ୍ଗାଟା ଟିକିଏ ଦିଅ, ଦୟାକର।" ମୁଁ ଏଥର ବୁଝିଲି। ବାହାଙ୍ଗାଟାକୁ ଶିଖା ଦଉଡ଼ିରୁ ଖୋଲିବାକୁ ମୋର ସାହସ ଅଣ୍ଟୁ ନ ଥିଲା। ଖୋଲୁ ଖୋଲୁ ଯଦି ଦୈବାତ୍ ସାପଗୁଡ଼ିକ ବାହାରି ପଡ଼ନ୍ତି ପେଡ଼ି ଭିତରୁ ? ସାପୁଆ କେଳାମାନେ ଜିଅନ୍ତା ସାପମାନଙ୍କୁ ପେଡ଼ିରେ ରଖିଥାନ୍ତି। କିଏ ବା ଭୟ ନ କରିବ ? କେଳାଟି ଅଭୟ ଦେଇ ପୁନର୍ବାର ବୁଝାଇ କହିଲା- "କିଛି ହେବନି ମହାପ୍ରୁ। ସାପମାନେ ପେଡ଼ି ଭିତରେ ଅଛନ୍ତି। ବାହୁଙ୍ଗାଟାକୁ ଅଗରୁ ଆସ୍ତେ ଖୋଲାଇ ଆଣି ମୋ ହାତକୁ ଦିଅ। ଗୋଟିଏ ତମ୍ପ ସାପ ବହୁ ଦିନ ପରେ ପାଇଛି, ଛାଡ଼ିଦେଲେ ଆଉ ମିଳିବ ନାହିଁ, ଟିକିଏ ଦୟାକର।"

ସାହସ କରି ବାଉଁଶ ବାହୁଙ୍ଗାଟି ଆସ୍ତେ ଖୋଲି ଆଣି ତା'ର ଗୋଟେ ହାତକୁ ଧରାଇ ଦେଲି। ତା' ପରେ ଦେଖିଲି ଏକ ଅଭିନବ ଦୃଶ୍ୟ। ମୋ ରୁମ ଟାଙ୍କୁରି ଉଠିଲା। କେଳାଟି ସଙ୍ଗେ ସଙ୍ଗେ ଦି' ହାତରେ ସାପ ଲାଞ୍ଜଟି ଧରି ଗାତ ଭିତରୁ ବାହାରକୁ ଟାଣି ଆଣିଲା ଏବଂ ସାପ ବୁଲି ପଡ଼ି ଚୋଟ ମାରିବା ପୂର୍ବରୁ ତା ଫଣା ଉପରେ ବାହୁଙ୍ଗାର ମୋଟା ଅଂଶକୁ ଚପେଇ ମାଡ଼ି ବସିଲା, କୁର୍ତ୍ତା ପକେଟ୍‌ରୁ ଛ'ଇଞ୍ଚ ଲମ୍ବ ସଣ୍ଡୁଆସ ଆସ୍ତେ କାଢ଼ି ସାପ ପାଟି ଭିତରେ ପୁରାଇ ଦେଲା ଏବଂ ଦି'ଟା ତୀକ୍ଷ୍ଣ ଦାନ୍ତ ଭଡ୍ ଭାଡ୍ ଭାଙ୍ଗି ବାହାରେ ଫୋପାଡି ଦେଲା। ଏସବୁ ଘଟଣା ଘଟିଗଲା ମୁହୂର୍ତ୍ତକ ମଧ୍ୟରେ ଏତେ ବଡ ସାପଟା ବିଷ ଶୂନ୍ୟ ହୋଇଗଲା ସଙ୍ଗେ ସଙ୍ଗେ। ଚଳଚଞ୍ଚଳ ହିଂସ୍ର ସର୍ପଟା ନିର୍ଜୀବ ହୋଇ ପଡ଼ି ରହିଲା ଭୂଇଁ ଉପରେ। ଦୃଶ୍ୟଟି ଦେଖି ମୁଁ ତାଟକା ହୋଇଗଲି। ମୋ ପାଟିରୁ କଥା ବାହାରୁ ନ ଥାଏ। ପରମ ଆଶ୍ଚର୍ଯ୍ୟରେ ମୁଁ

କାବା ହୋଇ ଯାଇଥାଏ। ପ୍ରତ୍ୟକ୍ଷ ଦୃଶ୍ୟ ନା ସ୍ୱପ୍ନ ଜାଲ ? ଆଖି ପରିଷ୍କାର କଲି।

କପାଳରୁ ଝାଳ ପୋଛି କେଳା ମୋତେ ବହୁ ଧନ୍ୟବାଦ ଦେଲା, କୃତଜ୍ଞତା ଜଣାଇଲା। କହିଲା- "ତମେ ବାବୁ ଆଜି ବହୁ ଉପକାର କଲ। ବାହୁଙ୍ଗାଟିକୁ ଆଣି ନ ଦେଇଥିଲେ ଏ ଭଲ ସାପଟି ହରାଇଥାନ୍ତି।"

ସାହାଯ୍ୟର ପ୍ରତିବଦଳରେ ସେ ମୋତେ ସଦ୍ୟ ଧରନ୍ତା ସାପର ଖେଳ ଦେଖାଇବାକୁ ମନ ବଳାଇଲା। ତା' କଥାରେ ମୁଁ ଚକିତ ହୋଇଗଲି। ତାଲିମ ନ ପାଇ ଏ ନୂଆ ସାପଟା ସାଙ୍ଗେ ସାଙ୍ଗେ କିପରି ଖେଳ କରିବ ? ଏହା କିପରି ସମ୍ଭବ ? ଅତଏବ ଆବେଗର ସହିତ ପରବର୍ତ୍ତୀ କାର୍ଯ୍ୟକ୍ରମକୁ ଅପେକ୍ଷା କଲି। ଭାବିଥିଲି, ପଦ୍ମତୋଳା କିମ୍ବା ଆଉ କ'ଣ ବଡ଼ ଧରଣର ମନ୍ତ ବୋଲି ସାପକୁ ବଶ କରିବ। କିନ୍ତୁ ଏ କ'ଣ ମୁଁ ଶୁଣୁଛି ? କେଳା ମୁହଁରୁ ଛୁଟୁଥିଲା-

ବ୍ରଜରାଜ ନଗରେ କାଗଜ କଲ,
    ରାଜଗାଙ୍ଗପୁରରେ ସିମେଣ୍ଟ
ରାଉରକେଲାରେ ଲୁହା କାରଖାନା,
    ମନ ବାନ୍ଧିଦିଏ ଜମାଟ।
        ଭଲା, ଭଲା...

ସତକୁ ସତ, ସାପଟା ଫଣା ଉତ୍ତୋଳନ କରି ଜିଭ ଲହ ଲହ କରି ଖେଳିବାକୁ ଲାଗିଲା। ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ। କେଳାମାନେ ବିଷଧର ସାପମାନଙ୍କୁ ଧରି ବଶୀଭୂତ କରିବାର ପ୍ରକୃତ ରହସ୍ୟ କ'ଣ ? ପଦ୍ମତୋଳା ? ବିନ୍‌ର ସମ୍ମୋହନ ଶକ୍ତି ଦ୍ୱାରା ସାପ ମୁଗ୍‌ଧ ହୋଇ ତା'ର ଆସ୍ଥା ହରାଏ ? ସାପ ଏମିତି ଜଡ଼ବତ୍ ହବାର କାରଣ କ'ଣ ? ଜଣେ ପ୍ରତ୍ୟକ୍ଷଦର୍ଶୀ ଭାବେ ମୋର ଏ ବିରଳ ଅନୁଭୂତି ଏବଂ ଭିନ୍ନ ଅଭିଜ୍ଞତା। ତଥା କଥିତ ପଦ୍ମତୋଳା, ବିନ୍‌ବାଦ୍ୟର ସପ୍ତସ୍ୱର କେବଳ ଦର୍ଶକମାନଙ୍କ ଆକର୍ଷଣ ପାଇଁ, ସେମାନଙ୍କ ମନୋରଞ୍ଜନ ପାଇଁ ମାତ୍ର। ଅସଲ କାରଣଟି ରହସ୍ୟାବୃତ। ମୋ ମତରେ କେବଳ ସାହସ, କାଇଦା, ସୂତ୍ର ଏବଂ ସାବଧାନତା ସାପକୁ ବଶୀଭୂତ କରେ, କୌଣସି ମନ୍ତ ବୋଧେ ନୁହେଁ। ଅନେକ କେଳା ସର୍ପ ଦଂଶନରେ ମୃତ୍ୟୁବରଣ କରିଥାନ୍ତି। ଜାରମହୁରା, ଗଦ, ଟୁଣୁକା ଟୁଣିକି ସେମାନଙ୍କ ଜୀବନ ରକ୍ଷା କରିପାରିନି। ବିଷଧର ସାପ କାମୁଡ଼ିଲା ମାତ୍ରେ ଯେ ନିଶ୍ଚିତ ଭାବେ ବିଷ ରକ୍ତରେ ମିଶିଯାଏ, ତାହାସବୁ କ୍ଷେତ୍ରରେ ସତ୍ୟ ନୁହେଁ। ସାପ ମସ୍ତିଷ୍କର ବିଷକୋଷରୁ ବିଷ ଝରି ବିଷାକ୍ତ ଦାନ୍ତା ବାଟେ ଉଦ୍‌ଗତ ହୁଏ, ଦନ୍ତାଘାତ ଦ୍ୱାରା ବିଷ ପ୍ରାଣୀର ରକ୍ତ ସହିତ ମିଶିଲା ପରେ ଦେହରେ ବିଷ ବଢ଼େ, ଲୋହିତ ରକ୍ତକଣିକାଗୁଡ଼ିକ ପାଣି ଫଟକି ଯାନ୍ତି ଏବଂ ହୃତ୍‌ପିଣ୍ଡ ବିଶୁଦ୍ଧ ରକ୍ତ ଅଭାବରେ ସଙ୍କୁଚିତ ହୋଇ କ୍ଷମଶକ୍ତି ହରାଏ ଓ ମୃତ୍ୟୁ ଘଟାଏ।

ସାପ ଉତ୍ତେଜିତ ହୋଇ ଚୋଟ ମାରିଲେ ଯାଇଁ ତା'ର ବିଷ ରକ୍ତରେ ପହଞ୍ଚିବା ସମ୍ଭବ ହୁଏ, କେବଳ କାମୁଡ଼ା ଦ୍ୱାରା ନୁହେଁ। ଅନେକ ସାପ କାମୁଡ଼ା ବ୍ୟକ୍ତି ନ ମରି ବଞ୍ଚିଥାନ୍ତି, ବିଷଝଡ଼ା ମନ୍ତ୍ର ଯୋଗୁଁ ନୁହେଁ, ବିଷ ହୁଏତ ରକ୍ତ ସ୍ପର୍ଶ କରି ନଥିବାରୁ। ଅନେକ ସ୍ଥଳରେ ଦେଖା ଯାଇଛି, ଯେଉଁମାନଙ୍କ ରକ୍ତରେ ସର୍ପ ବିଷ ଚହଟି ଥାଏ, ମନ୍ତ୍ର ପାଠ ପ୍ରାଣ ରକ୍ଷା କରିପାରି ନ ଥାଏ। ସର୍ପାଘାତରେ ଆକ୍ରାନ୍ତ ଶତକଡ଼ା ଅଶୀଭାଗ ବ୍ୟକ୍ତି ମାନସିକ ଧକ୍କା ଓ ଆଶଙ୍କାରେ ମୃତ୍ୟୁବରଣ କରିଥାନ୍ତି। ଏପରି ସ୍ଥଳେ ମନ୍ତ୍ର ତନ୍ତ୍ର ଅପେକ୍ଷା ଭେଷଜ ବିଦ୍ୟା ଓ ଡାକ୍ତରୀ ଇଂଜେକ୍‌ସନ୍ (ଆଣ୍ଟି ଭେନମ) ସମ୍ପୂର୍ଣ୍ଣ ନିର୍ଭରଯୋଗ୍ୟ ଯଦି ବିଳମ୍ବ ନ କରି ଏହାକୁ ତୁରନ୍ତ ପ୍ରୟୋଗ କରାଯାଏ। (ଅରଣ୍ୟ ଭ୍ରମଣ ସମୟରେ ମୁଁ ସର୍ବଦା ପାଖେ ପାଖେ ଆଣ୍ଟିଭେନମ୍ ଇଂଜେକ୍‌ସନ ରଖିଥାଏ। ଏହାକୁ ପ୍ରୟୋଗ କରି କେତେଜଣ ଅରଣ୍ୟବାସୀଙ୍କ ଜୀବନ ରକ୍ଷା କରିପାରିଛି।)

ସେଦିନ ସାପୁଆ କେଳା ସହିତ ଆତ୍ମୀୟତା ଜମି ଆସିଥିଲା। ମୋତେ ଏକକ ଦର୍ଶକ ଭାବେ ସାପ ଖେଳରେ ଆପ୍ୟାୟିତ କଲାପରେ, ସାଙ୍ଗରେ ତାକୁ ଆମ କ୍ୱାର୍ଟର୍ସ ପର୍ଯ୍ୟନ୍ତ ନେଇ ଆସିଲି। ତା'ର ନା ପଚାରି ବୁଝି ନେଲି- ଚକ୍ରଧର। କିଛି ଖାଇବାକୁ ମଧ ଦେଲି। ସେ ଖୁସି ହୋଇ ଅନ୍ୟ ସାପମାନଙ୍କ ଖେଳ ପ୍ରଦର୍ଶନ କଲା। ବହୁତ ସାପ ପାଳିଥିଲା- ଅହିରାଜ, ତମ୍ପ, ରଣା ଇତ୍ୟାଦି। ପଚାରିଲି -"ଚକ୍ରଧର, ବର୍ତ୍ତମାନ ଯେଉଁ ସାପ ଧରିଲୁ, ସେଟା କୋଉ ସାପ? କୋଳଥିଆ ନାଗ ପରି ଦିଶୁଛି।"

ସେ ହସିଲା। କହିଲା- "ତମେ ବାବୁ ଆଜି ମୋତେ ବହୁତ ସାହାଯ୍ୟ କରିଛ। ସତ କଥା କହୁଛି। ଏଇ ଯେତେଗୁଡ଼ିଏ ସାପ ଦେଖୁଛ, ସେମାନଙ୍କ ମଧରେ ନାଗ ବୋଲି ଗୋଟିଏ ହେଲେ ନାହିଁ। ମୁଣ୍ଡରେ କେବଳ କଠଉ ଚିହ୍ନ ଥିଲେ ଯେ ନାଗ ସାପ, ଏକଥା ଭୁଲ ଧାରଣା। ଏଗୁଡ଼ିକ ଗୋଖର ସାପ ମାତ୍ର ନାଗ ନୁହନ୍ତି। ନାଗ ସାପ ଖୁବ୍ ବିରଳ। ମୋ ଭାଗ୍ୟରେ ନାଗ ସାପ ଜୁଟି ନାହିଁ। ମହାଦେବଙ୍କ ସେତିକି କୃପାହେଲେ ନାଗ ମିଳିବେ।"

ନାଗ ପୁଣି ଆଉ କେମିତି ସାପ? କ'ଣ ତା'ର ବିଶେଷତ୍ୱ? - ମୋ ତୁଣ୍ଡରେ ଜିଜ୍ଞାସା।

"କହୁଛି ଆଜ୍ଞା। ନାଗାନ୍ତକ ବିଦ୍ୟାରେ ଧୁରନ୍ଧର ନ ହେଲେ ସେ ସାପ ପାଇବା, ଧରିବା, ରଖିବା ଅସମ୍ଭବ।"

ନାଗ, ଯାହାକୁ ଆମେ ମଣିନାଗ କହୁ, କୋଟିକରେ ଗୋଟିଏ ଥାନ୍ତି। ତା'ର ଗତିବିଧି ରାଜକୀୟ। ସେ ସାପ ଜାତିରେ ବ୍ରାହ୍ମଣ। ବେଙ୍ଗ ମୂଷା ମାଛ ଖାଏ ନାହିଁ। ପୁରା ନିରାମିଷାଶୀ। ଅଧିକନ୍ତୁ ସେ ପବନାହାରୀ। ତା'ର ବିଷ ଉତ୍କଟ। ତା'ର ପ୍ରଶ୍ୱାସରେ ଯିବା ରାସ୍ତାର ଘାସ ପୋଡ଼ିଯାଏ, ପଥର ଗୁଣ୍ଡ ହୋଇଯାଏ। ସେ ଯାହା ଉପରେ

ଅହଜା କରେ, ମୃତ୍ୟୁ ସୁନିଶ୍ଚିତ। ଏହା କାଳକୁଟର ଅହନ୍ତା, ସାକ୍ଷାତ ଯମର ବାହକ।

"ତମେ ଏ ସାପ ଦେଖିଛ ?"- ମୁଁ ପ୍ରଶ୍ନ କଲି।

ନା, ନାଗାନ୍ତକ ବିଦ୍ୟା ଭଲ ଭାବେ ଶିଖି ନାହିଁ, ଆଉରି ବାକି ଅଛି। ମୁଁ ମନେ ମନେ ଭାବିଲି, ଏ ନାଗାନ୍ତକ ବିଦ୍ୟା ଅର୍ଥ ଆହୁରି ଅଧିକ ସାହସ, କଳାକୌଶଳତା, ସାବଧାନତା। ଏମାନେ ପଟିଆର ଲୋକ। ପିଲାଦିନୁ ସାପ ସଙ୍ଗେ ଖେଳନ୍ତି। ସାପ ଧରିବାର କଳା ଏବଂ ଅସୀମ ସାହସ ବଂଶାନୁକ୍ରମେ ସଞ୍ଚିତ କରି ଆସିଛନ୍ତି। ଏହି ଲୁପ୍ତମାନ ଜାତିଟିକୁ ବଞ୍ଚାଇ ରଖିବା ବର୍ତ୍ତମାନ ଜାତୀୟ କର୍ତ୍ତବ୍ୟ ହେଇ ପଡ଼ିଛି।



ସେଥର ଅଜଗର ସାପର ପ୍ରକୃତି ମନେ ପକାଇ ତା' ମୁଣ୍ଡଟା ହଠାତ୍ ଠଉରାଇ ନ ପାରି ପ୍ରେମ୍ ଓ ମୁଁ ସାମାନ୍ୟ ପଛକୁ ଫେରିଲୁ ଓ ଗୋଡ଼ତଳ ଅଞ୍ଚଳକୁ ଭଲ ଭାବେ ଆଲୁଅ ପକାଇ ସାପ ମୁହଁଠାରୁ ନିରାପଦ ଦୂରତାରେ ରହିଲୁ। ଆଲୁଅ ଲିଭାଇଲୁ। ଉଦ୍ଦେଶ୍ୟ ଥିଲା ଚୁପ୍ ହୋଇ ସାପର ମତିଗତି ଅନୁଧ୍ୟାନ କରିବା। ନିଶାର୍ଦ୍ଧରେ ଅଖଣ୍ଡ ନୀରବତାର ରାଜୁତି। ଅବଶ୍ୟ ଖଣ୍ଡେ ଦୂରରେ ରାତିଚଢ଼େଇ ଗଛ କୋରଡ଼ରେ ରହି ଶବ୍ଦ ତୋଳୁଥାନ୍ତି। ଟିକିଏ ପରେ ନୀରବତା ଭଙ୍ଗ କରି ଗୋଟାଏ କ୍ଷୀଣ ଖସ୍ ଖସ୍ ଶବ୍ଦ ଆମ କର୍ଣ୍ଣ ସ୍ପର୍ଶ କଲା। କାନ ଡେରି ଶୁଣିଲି। ଜନ୍ତୁର ଗୋଡ଼ ଛିଟିକା ଶବ୍ଦ। ଶୁଖିଲାପତ୍ର ରାମ୍ପୁଡ଼ା ଶବ୍ଦ। ଏଥର ବାରିପାରିଲି ଯେ ବଡ଼ ଜନ୍ତୁଟେ ଅଜଗର ମୁହଁରେ ପଡ଼ିଛି, ଆଉ ଖସି ପାରୁନାହିଁ, ବନ୍‌ସୀ କଣ୍ଟାରେ ମାଛ ମୁହ ଲାଖିଗଲା ଭଳି ମୁକୁଳିବା ବଡ଼ ମୁସ୍କିଲ। ଶବ୍ଦ ଆଡ଼କୁ ଲକ୍ଷ୍ୟ କରି ଶବ୍ଦଭେଦୀ ବାଣ ପରି ବନ୍ଧୁକ ଚଳାଇବାକୁ ଇଚ୍ଛା ହେଉଥିଲା। କିନ୍ତୁ ଲକ୍ଷ୍ୟସ୍ଥଳଟା ଦୃଶ୍ୟ ନ ହେଲେ ଗୁଳିଟା ବେକାର ଯିବ ସିନା! ଅତଏବ ଶବ୍ଦ ଆସୁଥିବା ସ୍ଥାନ ଆଡ଼କୁ ଖୁବ୍ ସାବଧାନ ଓ ସନ୍ତର୍ପଣରେ ଗୁରୁଣ୍ଡି ଗୁରୁଣ୍ଡି ତାଳପତ୍ର ଆଡ଼େଇ ଆସ୍ତେ ଅଗ୍ରସର ହେଲି। ଦେଖେ, ବଡ଼ ବାରହାଟାକୁ ତା ମୁଣ୍ଡଆଡୁ ଅଜଗର ଗିଳିବସୁଛି। ବାରହାର ପଛଗୋଡ଼ ଭୂଇଁକୁ କେବଳ ବୃଥାଘାତ କରୁଛି। ମୋ ଡବଲ ବ୍ୟାରେଲ ବନ୍ଧୁକରୁ ସ୍ପରିକାଲ୍ ବଲ୍‌ଟି ଉତାରି ନେଇ ତା' ସ୍ଥାନରେ ଡବଲ ବି ଶକ୍ତିଶାଳୀ ଛର୍‌ରା କ୍ୟାଟ୍ରିଜଟିଏ ଭରି କରିଦେଲି ସହସା। ଅନ୍ୟ ନଳିଟିରେ ରେମିଙ୍ଗଟନ୍ ଏଲ୍.ଜି.ମହଜୁଦ୍ ଥାଏ। ଖାଦ୍ୟ ଓ ଖାଦକର ନିକଟତମ ହୋଇ ସାପ ମୁଣ୍ଡକୁ ଲକ୍ଷ୍ୟ କରି ଖୁବ୍ ନିକଟରୁ ଡବଲ୍ ବି କ୍ୟାଟ୍ରିଜଟି ଫାୟାର କରିଦେଲଇ। ସାପ ପାଟିରେ ବାରହା ମୁଣ୍ଡ ଥିଲା। ଗୁଳି ସାପ ମୁଣ୍ଡକୁ ଛିନ୍ନଛତ୍ର କରି ବାରହା ମୁଣ୍ଡକୁ ମଧ ଛତୁ କରିଦେଲା। ଗୋଟାଏ ଗୁଳିରେ ଦୁଇଟି ଶିକାର ହାସଲ କରିବାର କ୍ୱଚିତ୍ ସୌଭାଗ୍ୟ ହାସଲ କରିଥିଲି। ଆମ ସହଚର ଚିମା ଭୋତ୍ରା ଆମ ପାଖେ ପାଖେ ଥାଏ ଅନୁଗତ

ଖଲାସୀ ଭଳି। ଉଚ୍ଛ୍ୱସିତ ଆନନ୍ଦରେ ବିଭୋର ହୋଇ ବାଧା ବନ୍ଧନ ନ ମାନି କଣ୍ଟାଝଣ୍ଟା ବୁଦା ଭିତରକୁ ନେଉଳ ପରି ପଶିଗଲା। ପ୍ରଥମେ ମଲା ବାର୍‌ହାଟାକୁ ଘୋଷାରି ଆଣିଲା ପଦାକୁ। ମାଈ ବାର୍‌ହାଟାଏ, ଛୁଆର ମା'। ସେ ଯେତେବେଳେ ଅଜଗର ମୁହଁରେ ଆକ୍ରାନ୍ତ ହୋଇଥିଲା, ତା' ଛୁଆମାନେ ପାଖରେ ଏପଟ ସେପଟ ହେଉଥିଲେ। ଏହି ବୁଦା ଭିତରକୁ ବାର୍‌ହା ଛୁଆଟେ ପଶି ଯାଇଥିବାର ଆମେ ପ୍ରଥମେ ଦେଖିଥିଲୁ ଏବଂ ତା' ପଛେ ପଛେ ମୋ ହେଡ୍ ଲାଇଟ୍ ଲମ୍ବି ଯାଇଥିଲା ବୁଦା ଭିତରକୁ। ଏବେ ସାପଟାକୁ ପଦାକୁ ଆଣିବା ସମ୍ଭବ ନ ଥିଲା। ସକାଳ ପର୍ଯ୍ୟନ୍ତ ତାକୁ ସେଠି ଛାଡ଼ି ଦେଇ ବାର୍‌ହାକୁ ପ୍ରେମ୍ ଓ ଚିମା କାନ୍ଧେଇ ଚିର୍ମରା ଫେରିଥିଲୁ। ଚଞ୍ଚଳ ସୁଲଭ ଶିକାରଟିଏ ମିଳି ଯାଇଥିବାରୁ ଗୌନ୍ତିଆ ଶର୍ମା ଖୁବ୍ ଆନନ୍ଦିତ ହେଲେ। ଶର୍ମାଙ୍କ ବାଡ଼ି ପଟ କୂଅମୂଳ ଖୋଲା ସ୍ଥାନରେ ଲଣ୍ଠନ ଆଲୁଅ ସାହାଯ୍ୟରେ ଚାଲିଲା କଂସେଇ କାମ। ରାତି ଅଧରେ ଅର୍ଦ୍ଧସିଝା କେଇଖଣ୍ଡ ଚର୍ବିଳ ବାର୍‌ହା ମାଂସ ମୁହଁରେ ଦେଇ ମୁଁ ବିଶ୍ରାମ ନେଇଥିଲି। ତହିଁ ପରଦିନ ପାଇଁ ପ୍ରଚୁର ମାଂସ ମହଜୁଦ ଥାଏ।

ଏ ଜଙ୍ଗଲରେ ସର୍ପମାନଙ୍କର ସଂଖ୍ୟା ବହୁଳତା। ଅନେକ ଶିକାରୀ ସାପ ଯଥା- ଅହିରାଜ, ପାହାଡ଼ି, ଢମଣା, ରଣା ଆଦି ଗଛ ଚଢ଼ି ଚଢ଼େଇ ଅଣ୍ଡା ଓ ଶାବକମାନଙ୍କୁ ଖାଇଯାନ୍ତି। ଅତଏବ ବଗ ବଗୁଲୀମାନେ ଚିର୍ମରା ଗାଁର ପ୍ରକାଣ୍ଡ ତେନ୍ତୁଳି ବୃକ୍ଷକୁ ନିରାପଦ ମଣି ବସା ବାନ୍ଧିଛନ୍ତି। ଏଠି ଶତ୍ରୁ ଭୟ ନାହିଁ। ଗ୍ରାମବାସୀମାନେ ସେମାନଙ୍କ ଶତ୍ରୁ ସଂହାରକ। ଏଠି ଗଛ ଉପରକୁ ସାପ ଚଢ଼ିଲା ମାତ୍ରେ ଲୋକମାନଙ୍କ ନଜର ପଡ଼ିବ ପହିଲେ। ଘରେ ଘରେ ସାଇତା ଥାଏ ତୀର ଓ ଧନୁ। ଆତ୍ମରକ୍ଷା ପାଇଁ ପ୍ରକୃତି ଆପେ ଆପେ ଶିକ୍ଷା ଦେଇଥାଏ ଜୀବଧାରୀମାନଙ୍କୁ। ଚିର୍ମରା ଗାଁ ଦାଣ୍ଡରେ ବସି ମୁଁ ଅନେକ ସମୟ ପର୍ଯ୍ୟନ୍ତ ବଗବଗୁଲୀମାନଙ୍କ ସଂସାର ନିବିଷ୍ଟ ଚିତ୍ତରେ ଅନୁଧ୍ୟାନ କରୁଥିଲି। ପ୍ରେମ୍ ମୋ ଧ୍ୟାନ ଭଙ୍ଗ କରି କହିଲେ- "ଆସ ମୋହନ, ଏଥର ଆମ ନିଛାଟିଆ ବିଶ୍ରାମ ଘରେ ରାତ୍ର ଯାପନ କରିବା।"

ତଦନୁଯାୟୀ ବ୍ୟାଗ୍ ବସ୍ତାନି, ସାଜ ସରଂଜାମ ଓଗେର ଧରି ଆମେ ସେଠି ଡେରା ମେଲିଲୁ। ଏଥର କିନ୍ତୁ ଆମେ ସଉକରେ ନୁହେଁ, ଉଦ୍ଦେଶ୍ୟ ନେଇ ଆସିଛୁ- କର୍ତ୍ତବ୍ୟର ଆହ୍ୱାନ- ଆର୍ତ୍ତ-କାତର ଲୋକଙ୍କୁ ଉଦ୍ଧାର କରିବାର ଦାୟିତ୍ୱ। ତେଣେ ଶର୍ମାଙ୍କ ଘରେ ଆମ ପାଇଁ ଖାଦ୍ୟପେୟର ବନ୍ଦୋବସ୍ତ ଚାଲିଥାଏ। ଆମ ରାତ୍ରାହାର ଥିଲା ଭାତ, କାନ୍ଦୁଲ ଡାଲି, ଆମ୍ବୁଲ, ସଜନା ଶାଗ ଓ ବେସର ବଡ଼ି- ମଫସଲର ଚିରାଚରିତ ତିଅଣମାନ। ଆମେ ନେଇଥାଉଁ କିଛି ଦିନ ପାଇଁ ରାସନ ସାମଗ୍ରୀ ଚା' ଚିନିଠୁ ଆରମ୍ଭ କରି- ଗୋଟାଏ ବହିର୍ଭ୍ରମଣର ଛୋଟ ଆୟୋଜନ।

ରାତ୍ର ଭୋଜନ ପୂର୍ବରୁ ଆମେ ବାଘ ଉପଦ୍ରବ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କିରବାରେ ଲାଗିଥାଉଁ। ଅନେକ ତଥ୍ୟ, ସତ୍ୟ ଘଟଣାମାନ।

ଏ ଅଞ୍ଚଳରେ ବାଘ ମାତିବାର ଚାରିମାସ ପୂରି ଗଲାଣି। ବାଘ ଗାଈଗୋଠ ଭିତରୁ କେବଳ ବାଛୁରୀ, ଛେଳି, ମେଣ୍ଢାମାନଙ୍କୁ ମାରି ପକାଉ ନାହିଁ, ଅନେକଙ୍କୁ ଘାଏଲ କରି ଦେଉଛି ମଧ୍ୟ। ସବୁକୁ ଖାଇବା ସମ୍ଭବ ହେଉନି ବାଘର। ଇତି ମଧ୍ୟରେ ଅନ୍ୟୁନ ଦୁଇ ଶତ ଗାଈଗୋରୁ ବାଘ ଆକ୍ରମଣରେ ମୃତ୍ୟୁବରଣ କଲେଣି। ଗାଁ ଲୋକ ଦେଶୀ ହତିଆର- ଭାଲି, ଭୁଜାଲି, ଧନୁ ତୀର ଧରି ଆକ୍ରମଣର ମୁକାବିଲା କରିବା ସମ୍ଭବ ହୋଇନାହିଁ। ଶେଷ କରି ଗାଈଆଳ ଓ ଗଛ କଟାଳିମାନେ ସ୍ୱଚକ୍ଷୁରେ ଦେଖିଛନ୍ତି- ବେଳ ରତ ରତ ସମୟରେ ଦୁଇଟା ବଳୁଆ ଉନ୍ମତ୍ତ ଚିତାବାଘ ଦୁଇ ବିପରୀତ ଦିଗରୁ ଘରବାହୁଡ଼ା ଗାଈ ଗୋଠ ଉପରକୁ ଅତର୍କିତ ଝାମ୍ପ ଦିଅନ୍ତି। ବାଘ ଗର୍ଜନରେ ବନ ଭୂଇଁ ଫାଟିପଡ଼େ। ଗାଈମାନେ ହମ୍ବାରଡ଼ି ଛାଡ଼ି ଛତ୍ରଭଙ୍ଗ ଦିଅନ୍ତି, ଇତସ୍ତତଃ ଦୌଡ଼ନ୍ତି ଜୀବନରକ୍ଷା ପାଇଁ। ପରେ ପରେ ଦେଖାଯାଏ- ଅଳ୍ପ ବୟସର ଛଡ଼ା, ଦାମୁଡ଼ି, ବାଛୁରୀ କେତୋଟି ମୁହୂର୍ତ୍ତକ ଭିତରେ ମରି ପଡ଼ିଛନ୍ତି, ଆଉ କେତୋଟି ସୁକୁସୁକୁ ହେଉଥାନ୍ତି, ନିଶ୍ଚିତ ମୃତ୍ୟୁ ସହିତ ଶେଷ ସଂଗ୍ରାମ କରୁଥାନ୍ତି। ଘମାଘୋଟ ସଂଗ୍ରାମ ପରେ ରଣ ପ୍ରାଙ୍ଗଣ ଯେମିତି କରୁଣ ଦିଶେ, ଗାଈଗୋଠ ସେମିତି ଦିଶନ୍ତି ଖାଦକର ନୃଶଂସ ଆକ୍ରମଣରେ। ଦୁର୍ବଳ ନିରସ୍ତ୍ର ଗାଈଆଳ ତା' ସାମାନ୍ୟ ଯଷ୍ଟି ବା କ୍ଷୁଦ୍ର କୁରାଢ଼ିରେ ଦୁଇଟା ଜ୍ୱାଳାମୁଖୀ ଜାନୁଆରର କିପରି ବା ମୁକାବିଲା କରନ୍ତା? ବିଚରା ମୁଣ୍ଡରେ ହାତ ଦେଇ କପାଳକୁ ନିନ୍ଦୁଥାଏ। ତା' ଧନ ଜୀବନ ଜୀବିକାର୍ଜନ ଉପରେ ହତାଶର ଛାୟା। ତା' ସମ୍ମୁଖରେ ମହାକାଳ ନୃତ୍ୟ କରୁଛି, ଜୀବିକା ଉଜୁଡ଼ି ଯାଉଛି, ଗୋ- ସମ୍ପଦ ବିପଦାପନ୍ନ! ବଞ୍ଚିବ କେମିତି? ମୁକ୍ତିର ଉପାୟ କ'ଣ??



ଗୌନ୍ତିଆ ଶର୍ମାଙ୍କର ଦେଶୀ ଠୁସା ବନ୍ଧୁକ ନାମକୁ ମାତ୍ର। କିଣିବା ଦିନରୁ ବନ୍ଧୁକଟିର କରାମତି କେବେ ସେ ପରୀକ୍ଷା କରି ନାହାନ୍ତି। ବୁନିଆଦି ଛାପ ସକାଶେ ଲୋକଙ୍କ ଦେଖଣା ପାଇଁ ଗୋଟାଏ ବନ୍ଧୁକ ମାତ୍ର ରଖିଛନ୍ତି। ଶର୍ମାଙ୍କର ସାହସ ଓ ବନ୍ଧୁକର କରାମତି ପରୀକ୍ଷା କରିବା ପାଇଁ ଶର୍ମାଙ୍କୁ ମଙ୍ଗାଇ ଥରେ ସାଙ୍ଗରେ ଜଙ୍ଗଲ ନେଇଥିଲୁ। ବନ୍ୟଜନ୍ତୁ ସମ୍ବନ୍ଧରେ ଦୀକ୍ଷାନ୍ତ ଭାଷଣ ଦିଅନ୍ତି। କିନ୍ତୁ କାର୍ଯ୍ୟରେ ଆମେ କେବେ ଦେଖି ନ ଥିଲୁ। ଆମ ସହିତ ରାତିରେ ପାଦରେ ଘନ ଅରଣ୍ୟରେ ଘୂରିବାକୁ ସେ ମନ ବଳାନ୍ତି ନାହିଁ। କଷ୍ଟ ସ୍ୱୀକାର କଲେ ସିନା କୃଷ୍ଣପ୍ରାପ୍ତି ସମ୍ଭବ ହୁଏ। ଶିକାରଲବ୍ଧ ପଶୁ ପ୍ରତି ତାଙ୍କର ଲୋଭ, କିନ୍ତୁ ଅନ୍ୱେଷଣର କ୍ଲିଷ୍ଟତା ସ୍ୱୀକାର କିରବାକୁ ପଶ୍ଚାତ୍‌ପଦ। ଅନ୍ୱେଷାର ଆନନ୍ଦ ଉପଲବ୍ଧି କରିବା ନିଜସ୍ୱ ରୁଚି ଉପରେ ନିର୍ଭର କରିଥାଏ। ଶିକାର ଆମର ପେସା ନୁହେଁ, ଏକ ଉଦାମ ଅନ୍ୱେଷା, ସେ କଥା ଶର୍ମା ବୁଝିବେ କାହୁଁ? ଯାହା ହେଉ, ଶର୍ମା ଆମ ସଙ୍ଗେ ଯିବାକୁ ରାଜି ହେଲେ। ଦାରୁଖୁନ୍ଦା ବନ୍ଧୁକକୁ ପ୍ରସ୍ତୁତ କରିବାର ସୂକ୍ଷ୍ମ କାଇଦା ବତାଇ ଦେଲି ତାଙ୍କୁ। ମୋ ଛର୍‌ରାରୁ ଗୁଳିର ବାରୁଦ ଖୋଲି ତାଙ୍କ ଠୁସାରେ ଠିକ୍ ଭାବେ ଭର୍ତ୍ତି କଲି, କାରଣ ହାତ ତିଆରି ବଜାରକିଣା ବାରୁଦ ଉପରେ ମୋର ବିଶ୍ୱାସ ନ ଥାଏ, ବିଶେଷ କରି ଗନ୍ଧକ ଭାଗ ବେଶୀ ହୋଇଗଲେ, ଗୁଳିର ଶବ୍ଦଶକ୍ତି ବଢ଼ିବ ସିନା, କ୍ଷେପଣଶକ୍ତି ଦୁର୍ବଳ ହୋଇଯିବ। ଅତଏବ ଭଲ ବାରୁଦ ଦେଇ ସୀସାର ଛ'ଟି ଏଲ୍.ଜି.ଗୋଲି ଏକତ୍ର କରି ଶର୍ମାଙ୍କ ଖୁନ୍ଦା ବନ୍ଧୁକରେ ଭରିଲି। ଶର୍ମା ଲୁଗାକୁ କଛାମାରି ବନ୍ଧୁକ କାନ୍ଧରେ ଥୋଇ ବୀର ଦର୍ପରେ ବାହାରି ପଡ଼ିଲେ ଆମ ସହିତ। ଚିମା ଭୋଡ୍ରା ତ ସର୍ବଦା ପ୍ରସ୍ତୁତ ଥାଏ, ଚବିଶ ଘଣ୍ଟିଆ ପ୍ରହରୀ ପରି। ତା'ର ମଧ ଖୁବ୍ ଜଙ୍ଗଲ ଝୁଙ୍କ। ଅନଳସ ତା'ର ସ୍ୱଭାବ, ସଦା ଜାଗ୍ରତ।

ଅତଏବ ସନ୍ଧ୍ୟା ଅତୀତ ହେବା ମାତ୍ରେ ସଅଳ ରାତି ଖିଆ ପିଆ ସାରି ଅସ୍ତ୍ର ସରଂଜାମ ଆଦି ଧରି ବନ ଅଭିଯାନରେ ବାହାରି ପଡ଼ିଲୁ। ଶର୍ମାଙ୍କ ପାଟି ସର୍ବଦା

ଖଜବଜ ହୁଏ- କୁହାଳିଆ ଅଭ୍ୟାସ, ଚଢ଼ି କଥା କହି ବାର ଗୁଣ, ଅନେକ ବାହାସ୍ଫୋଟ କଥା ମଧ୍ୟ କହନ୍ତି ତାଙ୍କ ଦକ୍ଷତା ସମ୍ବନ୍ଧରେ। କିନ୍ତୁ ନିଶାଭିସାର ଜନ୍ତୁ ଅନ୍ୱେଷଣରେ ସମ୍ପୂର୍ଣ୍ଣ ସଂଯମତା, ସତର୍କତା ଓ ନୀରବତା ଏକାନ୍ତ ଆବଶ୍ୟକ। ତାଙ୍କୁ ପୂର୍ବରୁ ଯଥେଷ୍ଟ ସାବଧାନ କରିବା ସତ୍ତ୍ୱେ ସେ ଚାଲିବା ଭିତରେ ହାବୁକା ମାରି ଅପ୍ରାସଙ୍ଗିକ କଥାଟେ କହି ଉଠନ୍ତି; ଦେଶ, କାଳ, ପାତ୍ର ଭୁଲିଯା'ନ୍ତି। ତାଙ୍କୁ ସ୍ମରଣ କରାଇ ଦେବାକୁ ହୁଏ ଯେ ଏଟା ତାଙ୍କ ଘର ବା ଗାଁ ନୁହେଁ- ଗୋଟେ ନୀରବ ଅନ୍ୱେଷଣ, ସାମାନ୍ୟ ଶବ୍ଦ ଜନ୍ତୁମାନଙ୍କୁ ହୁରୁଡାଇ ଦିଏ; ଉଦ୍ଦେଶ୍ୟ, ଲକ୍ଷ୍ୟ, ଆଶା ବିଫଳ ହୁଏ। ଶର୍ମାଙ୍କୁ ଆବଶ୍ୟକ ସ୍ଥଳେ ତାଗିଦ୍ କରିବାକୁ ପଡ଼ିଲା। ଧୀରେ ଧୀରେ ଚୁପ୍ ଚାପ୍ ସରୁ, ଅଙ୍କାବଙ୍କା ବନ ବାଟରେ ଚାଲିଥାଉଁ। ନିବିଡ଼ ଅରଣ୍ୟର ତମସାଚ୍ଛନ୍ନ ରଜନୀ। ଖାଲ, ଢିପ, କଣ୍ଟାଝଣ୍ଟା, ଗୋଡ଼ି, ପଥର ପ୍ରତି ନିଘା ନାହିଁ, ନଜର ନାହିଁ, ଖାତିର ନାହିଁ। ଉଭୟ ପାର୍ଶ୍ୱକୁ ଉଜ୍ଜ୍ୱଳ ହେଡ୍ ଲାଇଟ୍‌ର ଆଲୋକ ରଶ୍ମି ଅବାରିତ ପଡ଼ି ଚାଲିଛି। ଶର୍ମା ବେଳେବେଳେ ଝୁଣ୍ଟି ପଡୁଥାନ୍ତି, ପାଖେ ପାଖେ ପ୍ରେମ୍ ଥା'ନ୍ତି ସାହାଯ୍ୟ କରିବାକୁ।

ଏମିତି ଅନେକ ବାଟ ଅତିକ୍ରମ କଲୁଣି। ରାତି ଦୁଇଟା ଟପିଲାଣି - ହାତ ଘଡ଼ି ଦେଖି ଜାଣିଲି। ଗୋଟାଏ ଛୋଟ ଜୀବର ଆଖି ମଧ୍ୟ ଦୃଷ୍ଟି ଗୋଚର ହେଉନାହିଁ, ସାମାନ୍ୟ ଠେକୁଆ ବା ଝିଙ୍କଟେ ମଧ୍ୟ ଦିଶୁ ନାହିଁ। କ'ଣ ହେଲା ତେବେ? ଏ ଜଙ୍ଗଲରୁ ସବୁତକ ଜନ୍ତୁ କ'ଣ ଉଭାନ୍ ହୋଇଗଲେ? ବିଗତ କେଇ ବର୍ଷ ଭିତରେ ଏମିତି କେଭେ ତ ହୋଇ ନାହିଁ! କିଛି ସମୟ ଗୋଟେ ପଥର ଉପରେ ବସିଲୁ ଚୁପ୍‌ଚାପ୍। ରଜନୀର ବାଙ୍ମୟ ନିର୍ଜନତା। ମୁଣ୍ଡ ଉପର କୃଷ୍ଣାକାଶରେ ତାରାମାନଙ୍କ ନୀରବ ଶୋଭାଯାତ୍ରା। ଅନ୍ଧାର ଛେଦ କରି ଉଲ୍‌କାଟାଏ ତୀର ବେଗରେ ଖସି ଆସି ଧରା ପୃଷ୍ଠରେ ଅବତରଣ କଲା। ନୀରବ ରାତିର ଦୃଶ୍ୟ ବେଶ୍ ଭଲ ଲାଗୁଥିଲା ମୋତେ। ଫ୍ଲାସରୁ ଚା' ଆଣି ପିଇଲୁ। ପ୍ରେମ୍ ସିଗାରେଟ୍‌ରେ ମନୋନିବେଶ କଲେ। ସାମାନ୍ୟ ବିଶ୍ରାମ ପରେ ପୁଣି ଚାଲିଲୁ ଆଗକୁ ଆଗକୁ। ଆଦିଗନ୍ତ ସବୁଜ ବୃକ୍ଷମାଳାର ନିସ୍ତରଙ୍ଗ ବ୍ୟାପ୍ତି। କିନ୍ତୁ ସେଇ ବିଫଳତାର ରାତି। ଗୋଟିଏ ହେଲେ ଜନ୍ତୁ ନଜରକୁ ଆସୁନାହାନ୍ତି। କାରଣ ଖୋଜି ବସିଲି। ଏପରି ସ୍ଥଳେ କିଛି କାରଣ ନ ଥାଏ- ଯୋଗ। କାହା ମୁହଁ ଚାହିଁଥିଲୁ ଯାତ୍ରାରମ୍ଭ ବେଳେ? ଆଜିର ନୂତନତା କ'ଣ? ଭିନ୍ନତା କ'ଣ? ଭାବନାରେ ବାନ୍ଧି ହେଲି। ଶର୍ମା ହିଁ ଆଜିର ବ୍ୟତିକ୍ରମ। ଜଣେ ନୂଆ ଲୋକ ଆଜି ଆମ ସଙ୍ଗେ ଆସିଚନ୍ତି। ଆମ ପାଇଁ ବୋଧେ ଅଶୁଭ। ଅସଫଳତା ପାଇଁ ଅନେକ କାରଣକୁ ଦୋଷ ଦିଆଯାଏ। ଯେଉଁ କାରଣର କୌଣସି ଯୁକ୍ତି ନାହିଁ, ତାହା ମନର ଧାରଣା ବୋଲି ଧରିବାକୁ ହୁଏ। ତଥାପି ମନୋଭାବକୁ ଦୂର କରି ଦୃଢ଼ ଭାବେ- ଶୁଭ-ଅଶୁଭ ମନର ଭ୍ରାନ୍ତି, ହୁଏତ ଦୁର୍ବଳତା। ଏମିତି ଗୁଡ଼ାଏ ବିବିଧ ଚିନ୍ତା କରି ବାଟ ଚାଲିଥାଏ, ସମସ୍ତେ ଚାଲିଥାଉଁ ଆଗକୁ ଆଗକୁ।

ଆସ୍ତେ ଆସ୍ତେ ଆକାଶ ଫର୍ଚ୍ଚା ଦିଶିଲା। ତାରାଗଣ ନିଷ୍ପ୍ରଭ ହୋଇ ଆସିଲେ ଧୀରେ ଧୀରେ। ଫୁକିଆ ତାରାଟା ଜୋର କରି ଜଳି ଉଠିଥିଲା ଲିଭିଲା ବେଳେ ଦୀପ ଅଧିକ ଉଜ୍ଜ୍ୱଳି ଉଠିଲା ଭଳି। ଫଲଗୁଭରା ପୂର୍ବାକାଶ। ସୂର୍ଯ୍ୟ ଦେବଙ୍କ ସ୍ୱାଗତ ପ୍ରସ୍ତୁତିପର୍ବରେ ପ୍ରକୃତି ନାଚି ଉଠିଲା। କାକଳି କୂଜନରେ ବନଭୂଇଁ ଚେଇଁ ଉଠିଲା। ନିଷ୍ଫଳ ବ୍ୟର୍ଥ ମନୋରଥ ଆମର। ଗୋଟାଏ ହେଲେ ଜନ୍ତୁ ଦେଖିଲୁ ନାହିଁ, ହସ୍ତଗତ ହେବା ତ ଦୂରର କଥା। ଘୂରିଘୂରି ଥକି ପଡ଼ିଲୁଣି ଅବଶ୍ୟ। କ୍ଳାନ୍ତ। ଏଥର ଫେରନ୍ତା ବାଟ ଧରିବା କଥା। ବନ୍ଧୁକ ଗୁଡ଼ିକୁ ଖୋଳରେ ଥୋଇ ଧରାଇ ଦେଲୁ ଭାରବାହୀ ଚିମା ଭୋତ୍ରା ହାତରେ। ହାଲ୍‌କା ଦେହରେ ମନ୍ଥର ଗତିରେ ଫେରୁଥାଉଁ। ଆକାଶର ଆଲୋକ ରଶ୍ମି ଧରା ଛୁଇଁଲାଣି। ପକ୍ଷୀ ଶିକାର ପାଇଁ ଆଦୌ ମନ ନ ଥାଏ, ଯଦିଚ ଖୁବ୍ ନିକଟରେ ବନ୍ୟ କୁକ୍‌କୁଟମାନେ ରାବୁଥିଲେ।

ଫେରନ୍ତା ବାଟରେ ପଡ଼ିଲା ଗୁଜା ପାହାଡ଼। ବଡ଼ ବଡ଼ ମୁଗୁନି ପଥରର ଉଚ୍ଚ ପାହାଡ଼ଟିଏ। ପଥର ଫାଙ୍କମାନଙ୍କରୁ ଗଛମାନେ ବଢ଼ି ଉଠି ଜବର ହୋଇ ଘେରିଥାନ୍ତି ପାହାଡ଼କୁ। ଚିର୍ମିରାକୁ ଫେରିବାକୁ ହେଲେ ଏହି ପାହାଡ଼କୁ ଅତିକ୍ରମ କରିବାକୁ ପଡ଼ିବ। ତା' ପରେ ସମତଳ ବନ, ତା' ଭିତର ଦେଇ ଅଣଓସାରିଆ ପାଦଚଲା ରାସ୍ତା। ରାସ୍ତା ଲମ୍ବିଯାଇଛି ଚିର୍ମିରାଗାଁ ପର୍ଯ୍ୟନ୍ତ। ପର୍ବତାରୋହୀଙ୍କ ଭଳି ପାହାଡ଼କୁ ଚଢ଼ିଲୁ ଯେମିତି ଗତ ରାତିରେଏହାକୁ ଅତିକ୍ରମ କରି ଏପଟ ଜଙ୍ଗଲ ରାଜ୍ୟକୁ ଆସିଥିଲୁ। ଗିରି ଶୀର୍ଷ ଅତିକ୍ରମ କରିଛୁ, ଏହି ସମୟରେ ଗୋଟେ ଶିଙ୍ଗାଳ କୁଦା ମାରି ଗଛ ଗହଳରେ ଲୁଚିଗଲା। ଆମ ଚେତନା ଚାଉଁ କଲା। ହାତ ପାହାନ୍ତାରୁ ଜନ୍ତୁଟା ଖସି ପଳାଇଗଲା। ବନ୍ଧୁକ ତ ଖୋଳ ଭିତରେ ରଖି ଧରାଇ ଦେଇଥିଲୁ ଚିମା ହାତରେ। ଜୀବଜନ୍ତୁ ବହୁଳ ଅଭୟାରଣ୍ୟ ଭିତରେ ଏମିତି ବୋକାମି କେବେ କରି ନ ଥିଲୁ। ବିଞ୍ଚ ପ୍ରେମ୍ ଯେ କେମିତି କାମଟି ଅନୁମୋଦନ କଲେ- ମୋତେ ଆଶ୍ଚର୍ଯ୍ୟ ଲାଗିଲା। ତେବେ ବର୍ତ୍ତମାନ ଜରୁରୀକାଳୀନ ଘଣ୍ଟି ମନରେ ଗର୍ଜି ଉଠିଲା। ସମସ୍ତେ ତତ୍ପର ହୋଇ ଉଠିଲୁ। ଗୁଜା ପାହାଡ଼ ବିଶେଷ ବଡ଼ ନୁହେଁ। ଗଛଗୁଡ଼ିକ ଛନ୍ଦା ଛନ୍ଦି ହୋଇଥାନ୍ତି ଆଲିଙ୍ଗନ ଭଙ୍ଗୀରେ। ଶିଙ୍ଗାଳଟା ବେଶୀ ଦୂର ଯିବାର ସମ୍ଭାବନା ନାହିଁ। ଏଇଠି କେଉଁଠି ଆତ୍ମଗୋପନ କରିଛି ନିଶ୍ଚୟ। ନିକଟସ୍ଥ ନିଭୃତ ବୃକ୍ଷଛାୟା ଅଥବା ପଥର ଖୋଲ ତା'ର ନିର୍ଭୟ ବାସସ୍ଥଳୀ। ପ୍ରେମ୍ ଚଞ୍ଚଳ ହୋଇ ଉଠିଲେ, ସଭିଙ୍କ କାନରେ ଶିକାରର ସୂକ୍ଷ୍ମ ମନ୍ତ୍ର ଫୁଙ୍କି ଦେଲେ। ଆମ ପାଖେ ତିନୋଟି ବନ୍ଧୁକ- ମୋର, ପ୍ରେମ୍‌ଙ୍କର ଏବଂ ଶର୍ମାଙ୍କର। ତିରିଶ ଗଜ ବ୍ୟବଧାନରେ ଗୋଟିଏ ଗୋଟିଏ ପଥର ଖଣ୍ଡ ଉପରେ ଆମେ ବନ୍ଧୁକକୁ ସଜାଗ ରଖି ନିବିଷ୍ଟ ଚିତ୍ତରେ ଜଗି ରହିଲୁ। ତେଣେ ବିପରୀତ ଦିଗରୁ ଚିମା ଭ୍ରୋତା ବାଡ଼ିରେ ଗଛ ପତ୍ର, ଡାଳ ଓ ଭୂଇଁକୁ ପିଟି ପିଟି (ହକ୍‌କା ପଦ୍ଧତିରେ) ଆସିବାକୁ

ନିର୍ଦ୍ଦେଶ ଦେଇଥାଉ ଯେପରି ଜନ୍ତୁ ଗୁମ୍ଫା ବା ଗଛ ଗହଳରୁ ବାହାରି ଆସି ଆମ ସାମ୍ନା ଦେଇ ଅତିକ୍ରମ କରିବ। ଚାଲାଖ୍ ଚିମା ବିଶ୍ୱସ୍ତ, ଅନୁଗତ ଅନୁଚର ଭଳି ନିର୍ଦ୍ଦେଶାନୁଯାୟୀ କାମ କଲା। ଆଶ୍ଚର୍ଯ୍ୟ କଥା, ଶିଗାଳ ପରିବର୍ତ୍ତେ ବିରାଟ ଭାଲୁଟାଏ ଘୁ ଘୁ ଶବ୍ଦ କରି ଦୌଡ଼ି ଆସିଲା। ପ୍ରଥମେ ତା'ର ନଜର ପଡ଼େ ଶର୍ମାଙ୍କ ଉପରେ- ପାନପାଟିଆ ମଣିଷଟେ କ'ଣ ଗୋଟେ ଚିଜ ଧରି ପଥର ଉପରେ ବସିଥିବାର ଦେଖିଲା। ତେଣୁ ସେ ଚମକି ହୁରୁଡ଼ି ଗଲା, ଜୋର୍‌ରେ ଗର୍ଜନ କରି ଗତିପଥ ବଦଳାଇ ଦୌଡ଼ିଲା। ପୁଣି ମାତ୍ର ତିରିଶ ଗଜ ପରେ ଦେଖିଲା ଜଣେ ଟୋପି ପିନ୍ଧା ଭିନ୍ନ ମଣିଷକୁ- ପ୍ରେମଙ୍କୁ। ପ୍ରେମ୍ ରାଇଫଲକୁ ସିଧା ଲକ୍ଷ୍ୟ କରିଥିଲେ ତା' ଆଡ଼କୁ, କିନ୍ତୁ ଟ୍ରିଗର ଚିପି ନ ଥିଲେ। କାରଣ ଛାର୍ ଭାଲୁଟାକୁ ମାରିବା ତାଙ୍କର ଉଦ୍ଦେଶ୍ୟ ନ ଥିଲା। ଭାଲୁକୁ ମାରି ବା କି ଲାଭ ? ଯାଉ ସେ ତା ବାଟରେ। କିନ୍ତୁ ଭାଲୁ ଜାଣି ପାରିଥିଲା ଯେ ସେ ବର୍ତ୍ତମାନ ମଣିଷମାନଙ୍କ ଘେର ଭିତରେ। ଅତଏବ ଆଉ ଆଗକୁ ନ ଯାଇ ବୁଲି ପଡ଼ି ପଥ ପରିବର୍ତ୍ତନ କଲା। ଯିବ କୁଆଡ଼େ ? ମୁଁ ଯେ ସତର୍କତାର ସହିତ ପଥର ଉପରେ ଜଗି ରହିଛି ଜାଗ୍ରତ ସୈନିକ ପରି। ମୋତେ ଦେଖି ସେ ଉତ୍‌କ୍ଷିପ୍ତ ହେଲା, କ୍ରୁଦ୍ଧ ଗର୍ଜନ କରି ମୋ ଆଡ଼କୁ ମାଡ଼ି ଆସିଲା ଖୁବ୍ ଦ୍ରୁତ ଗତିରେ। ମୋର ନିକଟତର ହେବାମାତ୍ରେ ସେ ପ୍ରଚଣ୍ଡ କ୍ରୋଧରେ ଜର୍ଜରିତ ହୋଇ ପଛ ଦୁଇ ଗୋଡ଼ରେ ଛିଡ଼ା ହୋଇଗଲା ଏବଂ ଅନ୍ତତଃ ଚାରି ଗଜ ଦୂରରୁ ରାକ୍ଷସ ଭଳି ମୋ ଉପରକୁ ଲମ୍ଫ ଦେଲା। ମୁଁ ସେତେବେଳେ ପଥର ଉପରେ ପେଟେଇ ରହି ବନ୍ଧୁକର ମାଛିକୁ ତା ଛାତିରେ ମିଶାଇ ଦେଇଥିଲି। ସେ ମୋ ଉପରେ ଡେଇଁବା ମାତ୍ରେ ଘୋଡ଼ା ଚିପିଲି। କିନ୍ତୁ ଏ କ'ଣ ହେଲା ! ! ଗୁଳିଟା ଫୁଟିଲା ନାହିଁ, ମୋ ଆଖିରୁ ନିଆଁ ଖସି ପଡ଼ିଲା, ବୁଦ୍ଧି ହଜିଗଲା। ମୁଁ ହଟଭାଙ୍ଗିଲା ଭଙ୍ଗିରେ ତତ୍‌କ୍ଷଣାତ୍ କଡ ଲେଉଟାଇ ପାରିଥିଲି ଅବିକଳ ସିନେମାର ଫାଇଟିଙ୍ଗ ଦୃଶ୍ୟ ଭଳି। ସିନେମା ସତ ନୁହେଁ, ଛଳନା ମାତ୍ର। କିନ୍ତୁ ମୋର ଏଠି ନିଛକ ବାସ୍ତବତା, ଜୀବନ ଓ ମୃତ୍ୟୁ ମଧ୍ୟରେ ସଂଘର୍ଷ। ମୁଁ ହଟଭାଙ୍ଗି ବୁଲି ପଡୁଥିବା ବେଳେ ଦୁର୍ଦ୍ଦାନ୍ତ ଭାଲୁଟା ମୋ ଡାହାଣ ଆଣ୍ଠୁକୁ କାମୁଡ଼ି ପୁଳାଏ ମାଂସ ନେଇଗଲା। କିନ୍ତୁ ମୋ ବନ୍ଧୁକର ଅନ୍ୟ ନଳିଟିରେ ଗୁଳି ପ୍ରସ୍ତୁତ ରହିଥିଲା। ଦ୍ୱିତୀୟବାର ସେ ଆକ୍ରମଣ କରି ବସିଲା ବେଳକୁ ତା ବିରାଟ ପାଟି ଭିତରକୁ ବନ୍ଧୁକ ବ୍ୟାରେଲ୍ ଭର୍ତ୍ତି କରି ଦ୍ୱିତୀୟ ଘୋଡ଼ାକୁ ଚିପିଲି। ଏଥର ଗୁଳିଟି ଧୋକା ନ ଦେଇ ଗୋଟାଏ ବିସ୍ଫୋରଣ ଶବ୍ଦ କରି ଭାଲୁଟାକୁ ସାତ ହାତ ଦୂରକୁ ଫିଙ୍ଗିଦେଲା। ତା' ମୁଣ୍ଡଟା ଛତୁ ହୋଇ ଦେହଠୁଁ ପ୍ରାୟତଃ ଅଲଗା ହୋଇଯାଇଥିଲା। ଏଥର ମୁଁ ଦମ୍ଭରେ ନିଃଶ୍ୱାସ ମାରିଲି। ଛାତି ଉଠୁଥାଏ, ପଡୁଥାଏ। ନିଃଶ୍ୱାସ ପ୍ରଶ୍ୱାସର ବେଗମାତ୍ରା ବଢ଼ିଯାଇଥାଏ। ଝାଡ଼ିଝୁଡ଼ି ହୋଇ ପ୍ରକୃତିସ୍ଥ ହେଲି। ଆଣ୍ଠୁର କ୍ଷତ ଅଂଶକୁ ଦେଖେ, ଖଣ୍ଡିଏ ସ୍ଥାନରୁ ରକ୍ତ ଝରୁଛି, ଆଣ୍ଠୁଠୁଁ ପାଦ ପର୍ଯ୍ୟନ୍ତ ରକ୍ତ ଜୁଡୁବୁଡୁ।

ପ୍ରେମ୍‌ଙ୍କ ଦୁଇଟି ଘଟଣା ଆଚ୍ଛନ୍ନ କରିଥାଏ- ଗୋଟିଏ ହାସ୍ୟୋଦ୍ଦୀପକ, ଅନ୍ୟଟି ମୋ ଜୀବନ ଉପରେ ବିପଦ। ହାସ୍ୟୋଦ୍ଦୀପକ ଘଟଣାଟି ହେଉଛି, ଯେତେବେଳେ ଭାଲୁଟା ପ୍ରଥମେ ଶର୍ମାଙ୍କ ଆଡ଼କୁ ଦୌଡ଼ି ଯାଇଥିଲା, ଶର୍ମା ବନ୍ଧୁକଚାଳନା କରିବେ କ'ଣ, ଅସ୍ତ୍ରଟିକୁ ପଥର ଉପରେ ଥୋଇ ଦେଇ ପ୍ରାଣରକ୍ଷା ପାଇଁ ପାଖ ଗଛକୁ ଚଢ଼ି ଯାଇଥିଲେ। ହୁଏତ ଜୀବନରେ ତାଙ୍କର ଏହା ଥିଲା ପ୍ରଥମ ଶିକାର ଅଭିଯାନ ଓ ଜଙ୍ଗଲୀ ଜନ୍ତୁମାନଙ୍କ ସହିତ ପ୍ରଥମ ଅନୁଭୂତି। ନିଜ ଉପରେ ତାଙ୍କର ଭରସା ନ ଥିଲା, ନତୁବା ତାଙ୍କ ଠୁସା ବନ୍ଧୁକଟିରେ। ଶର୍ମାଙ୍କ ଛତ୍ରଭଙ୍ଗ ଦୃଶ୍ୟରେ ପ୍ରେମ୍ ହସି ହସି ବେଦମ୍ ହୋଇଥିଲେ। ଇତି ମଧ୍ୟରେ ଭାଲୁ ଯେ ମୋର ଖୁବ୍ ନିକଟ ହୋଇଗଲାଣି ଓ ମୋ ଉପରକୁ କୁଦା ମାରିଲାଣି ଏବଂ ମୋର ବନ୍ଧୁକ ଗର୍ଜିନାହିଁ- ଏହା ଥିଲା ପ୍ରେମ୍‌ଙ୍କ ଘୋର ଉଦ୍‌ବେଗର କାରଣ। ସେ ଅପେକ୍ଷାକୃତ ଉଚ୍ଚ ପଥର ଉପରେ ବସିଥିବାରୁ ଦୃଶ୍ୟଟିକୁ ସ୍ୱଚକ୍ଷୁରେ ଦେଖି ପାରିଥିଲେ ଏବଂ ରାଇଫଲ ଚଳାଇବାର ସୁଯୋଗ ଆସି ନ ଥିଲା କାରଣ ଭାଲୁ ଏବଂମୁଁ ଗୋଟିଏ ଛୋଟ ପଥର ଉପରେ ଯୁଦ୍ଧରତ ଥିଲୁ, ହୁଏତ ଗୁଳିଟି ଭାଲୁ ଦେହରେ ନ ବାଜି ମୋ ଦେହରେ ବାଜିବାର ସମ୍ଭାବନା ତାଙ୍କୁ କିଂ କର୍ତ୍ତବ୍ୟ ବିମୂଢ଼ କରିଥିଲା। କିନ୍ତୁ ଏସବୁ ଘଟଣା ଆଖି ପିଛୁଳାକେ ଘଟିଗଲା, କିଛି ଭାବିବାକୁ ସମୟ ନ ଥିଲା। ଅବଶ୍ୟ ପ୍ରେମ୍‌ଙ୍କ ବିଚାରଶକ୍ତିରେ ଯଥେଷ୍ଟ ଯଥାର୍ଥତା ରହିଥିଲା। ତେବେ ଭାଲୁଟି ମରିଯିବା ପରେ ସେ ଧାଇଁ ଆସିଥିଲେ ମୋ ପାଖକୁ ଏବଂ ଈଶ୍ୱରଙ୍କୁ ଅଶେଷ ଧନ୍ୟବାଦ ଦେଇ ଔଷଧ ବାକ୍‌ସରୁ ଡେଟଲ୍, ଆୟୋଡିନ୍, ନିଓସ୍ପୋରିନ ପାଉଡର ଦେଇ ଆଣ୍ଠୁ ବ୍ୟାଣ୍ଡେଜ କଲେ, ଫ୍ଲାସ୍‌କରୁ ଗରମ ଚା' କାଢ଼ି ପିଆଇଲେ ଏବଂ ମୋର ପିଠି ଥାପୁଡ଼ାଇ ବଧାଇ ଜଣାଇଲେ। ଏସବୁ କରି ସାରି ସେ ମୃତ ଭାଲୁକୁ ଦେଖିବାକୁ ଗଲେ। ଭାଲୁ ପାଖେ ଶର୍ମା ଓ ଚିମା ପହଞ୍ଚି ସାରିଥିଲେ। ଚିମା ଚିଲ୍ଲେଇ ଚିତ୍କାର କରୁଥିଲା - " ଏ ଶଳାର୍ ଭାଲୁ ଢଙ୍ଗରପଡ଼ାର ବୁଢ଼ୀକୁ ଖାଇଛେଁ।"

ଗୋଟିଏ ମହା ବିପତ୍ତିରୁ ବର୍ତ୍ତିଥିଲି। ଏପରି ଘଡ଼ିସନ୍ଧି ବେଳରେ ଗୁଳି ନ ଫୁଟିବାର ଘଟଣା ମୋ ଜୀବନରେ ପ୍ରଥମ। ସେମାନେ ଭାଲୁକୁ ଘୋଷାଡ଼ି ଘୋଷାଡ଼ି ଗିରି ପାଦଦେଶକୁ ନେବାବେଳେ ମୁଁ ଦୁର୍ଘଟଣାର ଅନୁଶୀଳନ କରୁଥିଲି। ଅଫୁଟା ଗୁଳିଟିକୁ ଚ୍ୟାମ୍ବର ଭିତରୁ ଖୋଲି ପରୀକ୍ଷା କଲି। ଦେଖେ, ତା'ର ବାରୁଦ ଠିପିରେ ଦୁଇଥର ଚୋଟ ଲାଗିଛି; ଅର୍ଥାତ୍ ପୂର୍ବରୁ ନିଶ୍ଚିତ ଭାବେ ଗୁଳି ବ୍ୟବହୃତ ହୋଇଛି, ହୁଏତ ଫୁଟି ନାହିଁ। କେଉଁଠି ? କେଉଁଠି ? ମନେ ପଡ଼ିଲା। ଗତ ବର୍ଷ ଖରାଦିନେ ହୀରାକୁଦ ଜଳଭଣ୍ଡାର ତଟରେ ଗୁଳିଗୁଡ଼ିକର ପ୍ରକ୍ଷେପଣ ଶକ୍ତି ପରୀକ୍ଷା କରୁଥିଲି। ମୋର ମନେ ଅଛି, ଏଲି ଆଲ୍‌ଫାମ୍ୟାକ୍‌ସ ଗୁଳିଟିଏ ଫୁଟି ନ ଥିଲା। ଏକ ହଜାର ଗୁଳି ମଧ୍ୟରୁ ଗୋଟିଏ ଗୁଳି ଫୁଟି ନ ଥାଏ ଅର୍ଥାତ୍ ଶତକଡ଼ .୦୧ ଗୁଳି ଧୋକା ଦେଇଥାଏ।

ଅଫୁଟା ଗୁଳିଟିକୁ ମୁଁ ଅଲଗା କରି ରଖିଥିଲି । ତା'ର ବ୍ୟାଚ୍ ନମ୍ବର, ତିଆରି ବର୍ଷ, ଖରିଦ ମେମୋ ଆଦି ଟିପି ରଖି ଇଙ୍ଗ୍‌ଲିସ୍ ଏଲି କମ୍ପାନୀକୁ କ୍ଷତିପୂରଣ ପାଇଁ ଲେଖିଥିଲି । କମ୍ପାନୀରୁ କୌଣସି ଜବାବ ଆସି ନ ଥିଲା । ମୋ ସମ୍ବଲପୁରୀ ବସାଘର ଦୁର୍ଗାପୂଜା ଅବସରରେ ବାର୍ଷିକ ସଫେଇ ହୁଏ, ଚୂନ ଲଗାଯାଏ । ଏଥିପାଇଁ ଘରର ଆସବାବପତ୍ର ଏପଟ ସେପଟ ହୋଇ ଯାଇଥିଲା । ମୋ ଅନୁପସ୍ଥିତିରେ ମୋ ସ୍ତ୍ରୀ ଏଠି ସେଠି ଗୁଳି ଦେଖି ପୁଣି ସବୁକୁ ଏକତ୍ର କରି ଗୁଳିବାକ୍‌ସରେ ରଖି ଦେଇଥିଲେ । ଦୈବାତ୍ ଏଇ ଅଫୁଟା ଗୁଳିଟା ତା' ଭିତରେ ମିଶି ଯାଇଥିଲା । ବାରୁଦ ଠିପିର ମାଡ଼ଟା ଏତେ ସାମାନ୍ୟ ଯେ ଭଲଭାବେ ନିରୀକ୍ଷଣ ନ କଲେ ଜାଣିବା ସମ୍ଭବ ହେବ ନାହିଁ, ସାଧାରଣ ଆଖିକୁ ଆଦୌ ଜଣାପଡ଼ିବ ନାହିଁ । ପତ୍ନୀଙ୍କୁ ଦୋଷ ଦେଇ ଲାଭ ନାହିଁ । ମୁଁ ନିଜେ ସାବଧାନ ହେବାର ଥିଲା । ଅବଶ୍ୟ ଅଫୁଟା କ୍ୟାଟ୍ରିଜ୍‌କୁ ମୁଁ ନିଜେ ଖୋଲି ପୁଣି ନୂଆ ବାରୁଦ ଠିପି ଦେଇ ଠିକ୍ କରି ପାରିଥାନ୍ତି; କିନ୍ତୁ ଏଲି କମ୍ପାନୀଠୁଁ କ୍ଷତିପୂରଣ ଆଶାରେ ତାହା କରି ନ ଥିଲି । ଏବେ ଅର୍ଥ ଲୋଭର ଫଳପାଇଲି । ଅଳ୍ପକେ ଜୀବନ ରହିଲା ସିନା ! !

ଆଜି ଭାଲୁ ଶିକାରରୁ ଦୁଇଟି ଶିକ୍ଷା ମିଳିଲା । ଏକ- ଅନଭିଜ୍ଞ ଓ ଭୟାଳୁ ଲୋକଙ୍କୁ ଦୁଃସାହସିକ କାର୍ଯ୍ୟରେ ନିଯୋଗ କରିବା ଅପରିଣାମଦର୍ଶିତା । ଦୁଇ- ଟିକିଏ ଭୁଲ, ସାମାନ୍ୟ ଅବହେଳା, ମାତ୍ରାଧିକ ଲୋଭ ଆଣିଥାଏ ବହୁ ବିଶୃଙ୍ଖଳା, ଅନେକ ପ୍ରମାଦ, ଏପରିକି କ୍ଷଣକରେ ଜୀବନ ଶେଷ ହୋଇଯାଏ । ଶିକାର ଏକ ବିପଜ୍ଜନକ କ୍ରୀଡ଼ା, ବିପଦର ବଳୟ ଭିତରେ ଶିକାରୀର ଗତି, ପ୍ରବୃତ୍ତି । ବନ୍ଧୁକ ମଧ୍ୟ ଏକ ସୁପ୍ତ ସିଂହ, ଶିକାରୀର ପ୍ରଥମ ଜାନୁଆର ବନ୍ଧୁକ । ସାମାନ୍ୟ ଅସାବଧାନତାରେ ସେ ହିଂସ୍ର ହୋଇ ଉଠେ ଏବଂ ପରିଣାମ ଭୟାବହ ହୋଇଯାଏ ।



ଗୁଳିଗୋଳା ବାରୁଦ ବନ୍ଧୁକ ସମ୍ବନ୍ଧୀୟ ଅସାବଧାନତାର କୁପରିଣାମ ଥରେ ମୁଁ ସ୍ୱଚକ୍ଷୁରେ ଦେଖିଛି, ଅବଶ୍ୟ ପ୍ରତ୍ୟକ୍ଷ ଭାବେ ମୁଁ ଏଥିରେ ଜଡ଼ିତ ନ ଥିଲି। ସେତେବେଳେ ମୁଁ ରାୟଗଡ ଜିଲ୍ଲାର ଗୁଣପୁର ସହରରେ ଅବସ୍ଥାପିତ ଥିଲି। ଗୁଣପୁର ଏକ ଅରଣ୍ୟ ଘେରା ସୁନ୍ଦର ଛୋଟ ସହର, ଶିଳ୍ପ ଓ କୃଷି ସମୃଦ୍ଧ ଅଞ୍ଚଳ। ବାଣିଜ୍ୟ ବ୍ୟବସାୟ ବେଶ୍ ଚାଲେ। ବିଶେଷ କରି ଜଙ୍ଗଲଜାତ ଦ୍ରବ୍ୟ- ମହୁଲ, ଝୁଣା, ତେନ୍ତୁଳି, ଶାଳମଞ୍ଜି, କାଠ ଓ ବାଉଁଶର ଗନ୍ତାଘର ଏହାର ଚତୁଃପାର୍ଶ୍ୱ ଅଞ୍ଚଳ। ଏଣୁ ସହରଟି ବେପାରୀମାନଙ୍କ ଲକ୍ଷ୍ମୀଥଳି। ମୋର କର ବିଭାଗରେ ଚାକିରି ଦୃଷ୍ଟିରୁ ବ୍ୟବସାୟୀମାନଙ୍କ ଗୁମର ଓ କାରବାର ମୋତେ ବେଶ୍ ଜଣାଯାଏ। ମଖନ୍‌ଲାଲ ବୋଲି ଜଣେ ବ୍ୟବସାୟୀ ଥା'ନ୍ତି। ଧନୀ। ଅର୍ଥ, ପଦାର୍ଥ ଓ ପ୍ରଭାବରେ ବେଶ୍ ପାରଙ୍ଗମ ଓ ପ୍ରତିପତ୍ତିଶାଳୀ ମଧ୍ୟ। ମୁଁ ଗୁଣପୁରରେ ଜଏନ୍ କରିବା ମାତ୍ରେ, ସେ ବୋଧହୁଏ ପ୍ରଥମ ବ୍ୟକ୍ତି (ଜନସାଧାରଣଙ୍କ ତରଫରୁ) ଯେ ମୋତେ ସୌଜନ୍ୟ ସାକ୍ଷାତ କରିଥିଲେ। ତାଙ୍କର ନେତାମାର୍କା ଚେହେରା ଓ ପୋଷାକ ଯେ କୌଣସି ବ୍ୟକ୍ତିକୁ ପ୍ରଭାବିତ କରିପାରିବ। ବ୍ୟବହାର ମଧ୍ୟ ତତୋଽଧିକ।

ମୁଁ ଗୁଣପୁର ଡାକବଙ୍ଗଳାରେ ଥାଏ। ନୂଆନୂଆ ଚାକିରି ମୋର। ବିବାହ କରି ନ ଥାଏ, ସଂସାର ଜଞ୍ଜାଳ ଆରମ୍ଭ ହୋଇ ନ ଥାଏ। ଏକଲା। ଗୁଡ଼ାଏ ପୁସ୍ତକ ଥା'ନ୍ତି ମୋର ସାଥୀ। ସେମାନଙ୍କ ସହିତ ମୋର ନିବିଡ଼ ସମ୍ପର୍କ।

ଛାତ୍ରବେଳର ମୋର ଜଣେ ସହାଧ୍ୟାୟୀ ବନ୍ଧୁ ବିଶ୍ୱରଞ୍ଜନ ସେନାପତି ଗୁଣପୁର କମର୍ସିଆଲ ବ୍ୟାଙ୍କର ଆଞ୍ଚଳିକ ମ୍ୟାନେଜର। ବୟସରେ ମୋଠୁଁ ଅବଶ୍ୟ ବଡ଼, କଲେଜ ପଢ଼ା ବୟସରେ ବିବାହ କରିଥିଲେ- ସଂସାର ବନ୍ଧନରେ ବାନ୍ଧି ହୋଇ ପଡ଼ିଥିଲେ ଯୁବା ବୟସରୁ। ଏବେ ପିଲାଛୁଆ ନେଇ ଗୁଣପୁରରେ ରହୁଛନ୍ତି। ଦୁଇଟି ପିଲାର ପିତା। ବ୍ୟବସାୟୀ ମଖନ୍‌ଲାଲ ତାଙ୍କ ସହିତ ଦୋସ୍ତି ଜମାଇଥା'ନ୍ତି। ମୋର ଗୁଣପୁରକୁ କର ବିଭାଗ ଅଧିକାରୀ ଭାବେ ବଦଳି ଖବର ମଖନ୍‌ଲାଲ ବିଶ୍ୱରଞ୍ଜନଙ୍କଠୁଁ ଶୁଣିଥିଲେ। ମୋର ସ୍ୱଭାବ, ପ୍ରକୃତି,

କାର୍ଯ୍ୟଦକ୍ଷତା, ରୁଚି ସମ୍ବନ୍ଧରେ ସମ୍ପୂର୍ଣ୍ଣ ଚିତ୍ରଟିଏ କରି ନେଇଥିଲେ ମଖନ୍‌ଲାଲ। ଅରଣ୍ୟବିହାର ମୋତେ ଆନନ୍ଦ ଦିଏ- ଏକଥା ମଧ୍ୟ ଜାଣି ରଖିଥିଲେ ମଖନ୍‌ଲାଲ।

ବିଶ୍ୱରଞ୍ଜନଙ୍କର ବନ୍ଧୁତା ଥାଏ ଅଞ୍ଚଳର ପୋଲିସ ଅଫିସର ଡି.ଏସ୍.ପି ଧରଣୀଧର କାନୁନ୍‌ଗୋଙ୍କ ସହିତ। ପାଖାପାଖି ବସା, ଘରୋଇ ସମ୍ପର୍କ ବଢ଼ି ଉଠିଥାଏ। ଉଭୟଙ୍କର ଶିକାର ସଉକ ଥାଏ। ମଝିରେ ମଝିରେ ପାଖ ଜଙ୍ଗଲକୁ ମାଡ଼ିଯା'ନ୍ତି। ଶିକାରର ମଉଜ ଜମେ। ମୁଁ ଗୁଣପୁରରେ ପହଞ୍ଚିବା ମାତ୍ରେ ସେମାନଙ୍କ ସଙ୍ଗେ ସାକ୍ଷାତ ହୁଏ ଏବଂ ମଖନ୍‌ଲାଲ୍ ଶିକାର ଅଭିଯାନର ବନ୍ଦୋବସ୍ତ କରି ଦିଅନ୍ତି। ବିନା ଦ୍ୱିଧାରେ ମୁଁ ରାଜି ହୋଇଗଲି ମଲୁ ପଇଡ଼ ପାଣି ଖୋଜିଲା ଭଳି। ଅରାଜି ହେବାର କାରଣ ନ ଥିଲା। ମନଚାହିଁ ପ୍ରସ୍ତାବ। ଖୁସି ହେଲି।

ଆୟୋଜନ ମୁତାବକ ଖାଦ୍ୟପେୟ ଶିକାର ସରଞ୍ଜାମ ଆଦି ଜିପ୍‌ରେ ଲଦା ହୁଏ, ଆମେ ସଦଳବଳ ବହାରିପଡୁ ଜଙ୍ଗଲରେ ରାତ୍ରଯାପନ ଓ ଶିକାର ଅନ୍ୱେଷଣରେ। ଏ ଅଞ୍ଚଳର ଅରଣ୍ୟ ରାସ୍ତା, ଗଛବୃଛ, ବନ୍ୟଜନ୍ତୁଙ୍କ ବିଷୟରେ ମୁଁ ଅଜ୍ଞ ଥିଲି। ଜଣେ କେବଳ ଆମନ୍ତ୍ରିତ ଅତିଥି ଭଳି ମୋର ଭୂମିକା। ସବୁ ସାମଗ୍ରୀ ବହନ କରିଥିବା ଶିକାରଯାନ ମୁଖ୍ୟ ରାସ୍ତାରୁ ଓହରି ପ୍ରବେଶ କଲା ଅଗମ୍ୟ ଅରଣ୍ୟ ଭିତରକୁ। ଘୋର ବନ। ମୁଗ୍ଧ ହୋଇଗଲି। କେତେଟା କୁଟୁରା ଦୃଷ୍ଟିକୁ ଆସିଥିଲେ। କିନ୍ତୁ ଧରଣୀଧର ବାବୁ ସେଗୁଡ଼ିକୁ ଏଡ଼ାଇ ଦେଇଥିଲେ। କେତେ ବା ମାଂସ କୁଟୁରାର!! ଜାତି ଯିବ, ପେଟପୁରିବନି, ଗୁଳି ସରିବ, ଲାଭ ମିଳିବନି। ସେମାନଙ୍କ ଲକ୍ଷ୍ୟ ବଡ଼ ଜନ୍ତୁ ଉପରେ- ସମ୍ବର, ବାର୍‌ହା ଅଥବା ମିରିଗ। ତେବେ ଅନାୟାସରେ ଗୋଟିଏ ସମ୍ବର ଓ ପରେ ପରେ ଗୋଟିଏ ମିରିଗ ହାସଲ କରିପାରିଥିଲେ। ପୋଲିସ୍ ଅଫିସର ଧରଣୀଧର ବାବୁଙ୍କ ଅଭ୍ରାନ୍ତ ଲକ୍ଷ୍ୟକୁ ମୁଁ ତାରିଫ୍ କରିଥିଲି। ଏଥର ଜିପ୍‌ଯାନରେ ଜାଗା ନାହିଁ। ଭରପୁର ଶିକାର। ମନେ ହେଲା ପୋଷା ହୋଇଥିଲା ଭଳି ଜନ୍ତୁ ବିହାର କରନ୍ତି ଏହି ଅଭୟାରଣ୍ୟଟିରେ। ଗାଡ଼ିଆରୁ ଜାଲ ପକାଇ ପୋଷା ମାଛ ଧରି ଆଣିଲା ଭଳି ମନ ମୁତାବକ ଜନ୍ତୁ ମିଳିବାର ଦୃଷ୍ଟାନ୍ତ ମୁଁ ଆଉ କେଉଁଠି ଦେଖିନାହିଁ। ପାହାନ୍ତା ପହରକୁ ଫେରିଲୁ। ସମସ୍ତେ କ୍ଳାନ୍ତ। ଆଖିରେ ଆଖିଏ ନିଦ। ବାଟରେ ସେମାନେ ମତେ ବଙ୍ଗଳାରେ ଓହ୍ଲାଇ ଦେଲେ ଓ ମଧ୍ୟାହ୍ନଭୋଜନ ପାଇଁ ନିମନ୍ତ୍ରଣ କରିଗଲେ। ମୋର ନିତ୍ୟକର୍ମ ସାରି ସାମାନ୍ୟ ଜଳଖିଆ ପରେ ବିଶ୍ରାମ ନେଲି।

ରବିବାରିଆ ଛୁଟିଦିନ।

ଟେଲିଫୋନ୍‌ର ଘନ ଘନ ଗର୍ଜନ ମୋର ନିଦ୍ରାଭଙ୍ଗ କଲା। ଉଠି ରିସିଭର ଧରିଲି। ଯେମିତି ଗୋଟେ ଘଡ଼ଘଡ଼ି ଶବ୍ଦ ମୋ କାନକୁ ସ୍ତବ୍ଧ କରିଦେଲା! କ'ଣ ହେଲା !!

: "ଶୀଘ୍ର ଆସନ୍ତୁ ଘଟଣାସ୍ଥଳକୁ।"

: " କେଉଁଠିକୁ ?"

: " ଧରଣୀଧର ବାବୁଙ୍କ ବାସଭବନକୁ।"

ଗଲି। ଗୋଟାଏ ଦୁର୍ଘଟଣା- ଏକ ହତ୍ୟାକାଣ୍ଡ- ଅପମୃତ୍ୟୁର କରୁଣ କାହାଣୀ କାୟା ମେଲିଥିଲା। ଶୋକାର୍ତ୍ତର କରୁଣ ଛାୟାରେ ବାସସ୍ଥଳୀ ବିଦାରିତ। ମୁଁ ତ ସ୍ଥାଣୁ ପାଲଟି ଗଲି। ମୋ ମୁହଁରୁ ଭାଷା ସ୍ଫୁରି ନ ଥିଲା।

ଦୁର୍ଘଟଣାର କାରଣ ବୁଝିଲି। ଶିକାର ଫେରନ୍ତେ ଧରଣୀଧର ଜିପ୍‌ରୁ ଜନ୍ତୁ ଓ ଜିନିଷ ସବୁ ଉତାରି ଘରକୁ ନେଲେ। ଚପରାଶି ଓ ଚାକରଙ୍କ ଛାଲିବା ଦାୟିତ୍ୱ। ବୈଠକ ଘରର କୋଣରେ ଗୋଟିଏ ବନ୍ଧୁକ, ରାଇଫଲ କାନ୍ଥକୁ ଡେରି ଥୋଇଥିଲେ। ଶିକାର ଉଜାଗର ପରେ ବିଶ୍ରାମ ଏକାନ୍ତ ଆବଶ୍ୟକ ହୁଏ ଏବଂ ସେ ପ୍ରବେଶ କରନ୍ତି ଶୟନ କକ୍ଷକୁ।

ଅଭିଭାବକମାନେ ଯୁଦ୍ଧ କ୍ଷେତ୍ରରୁ ବିଜୟୀ ହୋଇ ଫେରିଛନ୍ତି। ଆଣିଛନ୍ତି ଜଙ୍ଗଲ ସମ୍ପଦ। ଏଥିରେ ପିଲାମାନଙ୍କ ଅହେତୁକ ଆନନ୍ଦ। ବିଶ୍ୱରଞ୍ଜନଙ୍କ ପୁଅ ଜିତେନ୍ଦ୍ର (ଜିତ୍) ଓ ଧରଣୀଧରଙ୍କ ପୁଅ ସୁଧାକର ସହପାଠୀ- ଉଭୟେ ସପ୍ତମ ଶ୍ରେଣୀର ଛାତ୍ର। ଜିତ୍ ଶିକାରଲବ୍ଧ ଜନ୍ତୁମାନଙ୍କୁ ଦେଖିବା ପାଇଁ ଅଦମ୍ୟ ଆଗ୍ରହରେ ଧାଇଁଲା ସୁଧାକର ଘରକୁ। ତାଙ୍କ ଘର ଅଗଣା ଜଙ୍ଗଲୀ ମାଂସର ସମୁଦ୍ରଟିଏ। ମାଂସ କଟାକଟି କାମ ଚାଲିଥାଏ ଜୋର୍‌ସୋର୍‌ରେ କଂସେଇଖାନା ଭଳି। ଏଣେ ଜିତ୍ ଓ ସୁଧା ଖେଳ କୌତୁକରେ ମାତିଗଲେ। ଶିକାରୀ-ଯୋଦ୍ଧା, ବୀର ପୁଙ୍ଗବମାନଙ୍କ ପୁତ୍ର ସେମାନେ। କ୍ଷେତ୍ରୀୟ ଗୁଣରେ ଉଦ୍‌ବୁଧ।

ଘରକୋଣରେ ଦୁଇଟି ମାରଣାସ୍ତ୍ର ଡେରା ହୋଇଥିଲା। ସେଥିରୁ ଗୋଟିଏ ଗୋଟିଏ ବାଳ ବନ୍ଧୁଦ୍ୱୟ ହାତରେ ଧରିଲେ ଖେଳନା ଭଳି ଏବଂ ପରସ୍ପରକୁ ଆଡକୁ ଲକ୍ଷ୍ୟ କଲେ ତୀର ବିନ୍ଧିବା ଭଙ୍ଗୀରେ। ଜିତ୍ ପୋଖତ ଖେଳୁଆଡ଼ ପରି ଲକ୍ଷ୍ୟଭେଦ ପାଇଁ ଟ୍ରିଗର ଚିପିଲା। କିନ୍ତୁ ଏ କ'ଣ ? ଗୋଟାଏ ଘଡ଼ଘଡ଼ିର ଗର୍ଜନ ଗୃହକୁ କମ୍ପିତ କଲା। ସୁଧାକର ସେଇଠି ଟଳିପଡ଼ିଥିଲା। ତା' ମୁଣ୍ଡଟା ଶରୀରଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇପଡ଼ିଥିଲା। ଘର ଭିତରେ ଏ ବୀଭତ୍ସ କାଣ୍ଡ ଘଟିଥିଲା, ମୃତ୍ୟୁର ତାଣ୍ଡବ ନୃତ୍ୟ କରିଥିଲା। ମୁହୂର୍ତ୍ତକ ମଧ୍ୟରେ ସଂସାର ଶ୍ମଶାନ ପାଲଟିଗଲା। ଖିଆଲି ମଣିଷର ବେପରୱାୟ ଅସାବଧାନତା ଯୋଗୁ ସିନା ବିନା ମେଘେ ବଜ୍ରପାତ ଭଳି ବୀଭତ୍ସ କାଣ୍ଡଟି ଘଟିଗଲା ! ମଣିଷର ଖେଳ ମଧ୍ୟ ସମୟେ ସମୟେ ହୋଇଯାଏ ଏହିପରି କାଳ। କାଳ ପ୍ରତି ପ୍ରତିକ୍ଷଣରେ ସାବଧାନ ରହିବା ଶିକାର ପ୍ରେମୀ ଖେଳୁଆଡ଼ର ପରମ ଦାୟିତ୍ୱ ଓ ପ୍ରଧାନ କର୍ତ୍ତବ୍ୟ। ବନ୍ଧୁକ ଏକ ହିଂସ୍ର ଜନ୍ତୁ ସମାନ ଜୀବନ ନିଏ, ଜୀବନ ଦିଏ, ସବୁବେଳେ ସତର୍କତା ଦାବିକରେ।



ଶିକାର ଓ ବନ୍ଧୁକ ବ୍ୟବହାର ଯେ ଆଦୌ ପିଲାଖେଳ ନୁହେଁ, ବରଂ ବିପଜ୍ଜନକ- ଏକଥା ମଧ୍ୟ ବାଲ୍ୟକାଳ ଅନୁଭୂତିରୁ ଲିପିବଦ୍ଧ ରହିଛି ମୋ ମାନସ ପଟରେ। ମୋର ସମ୍ପର୍କୀୟ ଧୁରଭାଇଙ୍କ କଥା କହୁଛି, ତାଙ୍କ ବାଲ୍ୟକାଳର ନିଜକଥା, ନିଜେ ଅଙ୍ଗେ ନିଭାଇଥିବା ଏକ କାହାଣୀ।

ଦେଶ ସ୍ୱାଧୀନତାପ୍ରାପ୍ତିର ପରବର୍ତ୍ତୀ ସମୟ। ଉପକୂଳବର୍ତ୍ତୀ ସମତଳ ଅଞ୍ଚଳ ହେଲେ ହେଁ, ଗାଁ ଗଣ୍ଡା, ପଲ୍ଲୀର ପରିବେଷ୍ଟନୀ ଥିଲା ଜାଙ୍ଗଲିକ। ଗାଁଟି ମହାଦେବପୁର। ଧୁରଭାଇଙ୍କ ଘର। ସତରେ ଗାଁର ପ୍ରବେଶ ପଥରେ ମହାଦେବ ମନ୍ଦିରଟିଏ। ବାଉଁଶ ବୁଦା ଭିତରୁ ଧଳା ଦେଉଳର ଚୂଡ଼ା ନୀଳ ଆକାଶକୁ ଛୁଇଁଥାଏ, ନେତଟି ଦୂରକୁ ଦିଶୁଥାଏ ଗୁଡ଼ି ଉଡ଼ିଲା ଭଳି। ଗାଁଠାରୁ ଦଶ ମାଇଲ ଦୂରରେ ଦକ୍ଷିଣ ପୂର୍ବ ରେଳ ପଥ ଅତିକ୍ରମ କରିଛି। ସେତେବେଳକୁ ପାଞ୍ଚ ନମ୍ବର ଜାତୀୟ ପଥର ଚିହ୍ନବର୍ଣ୍ଣ ନ ଥାଏ। ଗାଁର ନିକଟତମ ରେଳ ଷ୍ଟେସନ ଭଦ୍ରକ। ସେଠାରୁ ରାତିରେ ରେଳଗାଡ଼ିର ଗର୍ଜନ ଗାଁକୁ ଶୁଭାଯାଏ ଓ ଗ୍ରାମବାସୀମାନେ ତଦନୁଯାୟୀ ରାତ୍ରିର ସମୟ ନିର୍ଦ୍ଧାରଣ କରନ୍ତି। ଘଡ଼ିର ପ୍ରଚଳନ ବିଶେଷ ନ ଥାଏ। ଆଧୁନିକ ସଭ୍ୟତାର ଉଚ୍ଛୃଙ୍ଖଳତା ଗାଁ ପରିବେଶକୁ ପ୍ରବେଶ କରି ନ ଥାଏ ବିଶେଷ।

ଅନ୍ଧାର ରାତିରେ କୌଣସି ଯାତ୍ରୀ ରେଳଗାଡ଼ିରୁ ଓହ୍ଲାଇଲେ, ମହାଦେବପୁର ଏକାକୀ ଯିବା ମୁସ୍କିଲ। ଅଶରୀରୀମାନଙ୍କ ଦୌରାତ୍ମ୍ୟ ବିଷୟରେ ଅନେକ ଗୁଜବ ଶୁଣାଯାଏ। ସେମାନଙ୍କ କଥା ଅଲଗା, କିନ୍ତୁ ଜିଅନ୍ତା ଜନ୍ତୁଙ୍କ ପ୍ରାଦୁର୍ଭାବ କହିଲେ ନ ସରେ। ଭାଲୁ, ଗଧିଆ, ଚିତାବାଘ, ବିଷଧର ସାପ ଓ ହାତୀମାନଙ୍କ ଉପଦ୍ରବ ବଡ଼ ଭୟାନକ ହୋଇ ଉଠେ। ଅଙ୍କାବଙ୍କା ସରୁ ମୋରମ ରାସ୍ତାଟିଏ ଗାଁ ପର୍ଯ୍ୟନ୍ତ ବିସ୍ତୃତ। ରାସ୍ତାର ଉଭୟ ପାର୍ଶ୍ୱରେ ଘୋର ନଟାବଣ। ସୂର୍ଯ୍ୟାସ୍ତ ପରେ ଲୋକେ କେବଳ ଦଳବାନ୍ଧି ଏହି ଭୟସଙ୍କୁଳ ରାସ୍ତାରେ ଯା' ଆସ କରନ୍ତି। ଆତ୍ମରକ୍ଷା ପାଇଁ ହାତରେ

ଥାଏ ମାରଣାସ୍ତ୍ର। ଏକୁଟିଆ ଲୋକେ ରାତିରେ ଗାଡ଼ିରୁ ଓହ୍ଲାଇଲେ ମୁସାଫିରଖାନାରେ ଅପେକ୍ଷା କରି ରହିବାକୁ ହୁଏ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ।

ଗାଁଟିର ଭୌଗୋଳିକ ସ୍ଥିତି କିନ୍ତୁ ଅତୀବ ସୁନ୍ଦର। ଚତୁର୍ଦ୍ଦିଗ ଧାନ କ୍ଷେତ, କ୍ଷେତକୁ ଲାଗି ସମତଳ ଜଙ୍ଗଲ ଲମ୍ବି ଯାଇଛି ଅଦୂରର ଅନୁଚ୍ଚ ପାହାଡ଼ମାଳା ପର୍ଯ୍ୟନ୍ତ। ପାହାଡ଼ର ପାଦ ଦେଶରେ ପ୍ରବାହିତ ବେଗବତୀ କପାଳି ନଈ। ବର୍ଷା କାଳରେ ନଈଟି ପୂର୍ଣ୍ଣଗର୍ଭା ହୋଇ ଉଠେ। ଜଙ୍ଗଲ ଅତିକ୍ରମ କରି କ୍ଷେତ ଓ ଗାଁ ବାଡ଼ିକୁ ପ୍ରଭାବ ବିସ୍ତାର କରେ। କିନ୍ତୁ ଛୋଟ ନଈଟି ଯେତିକି ବେଗରେ ବଢ଼େ; ସେତିକି ବେଗରେ ମଧ୍ୟ ଛିଡ଼େ। ତେଣୁ ବାସିନ୍ଦାମାନେ ଅପକାର ଅପେକ୍ଷା ବେଶୀ ଉପକାର ପା'ନ୍ତି। ଭୁଲିଯା'ନ୍ତି ସାମୟିକ ବନ୍ୟାକ୍ଲିଷ୍ଟତା। ନଈଟି ଚିରସ୍ରୋତା ହୋଇଥିବାରୁ ବର୍ଷସାରା ଫସଲ ଲାଗି ରହିଥାଏ। ଏଠାରେ ଶସ୍ୟକ୍ଷେତରେ ତୃଣଭୋଜୀ ଜନ୍ତୁମାନେ ଜଙ୍ଗଲରୁ ଆସି ଫସଲ ଖା'ନ୍ତି, ନଷ୍ଟ ମଧ୍ୟ କରନ୍ତି। ସେମାନଙ୍କୁ ଶିକାର କରିବା ପାଇଁ ମାଂସ ଭୋଜୀ ହିଂସ୍ର ଜୀବମାନେ ମଧ୍ୟ ବାହାରି ଆସନ୍ତି। ଫଳତଃ ଜନ୍ତୁମାନଙ୍କୁ ଘାଉଡ଼ିବା ପାଇଁ ଲୋକମାନେ ମଞ୍ଚା ବାନ୍ଧନ୍ତି, ବିଲରେ ହୁରୁଡ଼ା ବାନ୍ଧନ୍ତି, ରାତି ସାରା ଟିଣ ପିଟନ୍ତି, ବାଣଫୁଟାନ୍ତି। ଏ ଅଞ୍ଚଳରେ କାର୍ଟୁସ୍ ବନ୍ଧୁକ ନ ଥାଏ। ବେଳେବେଳେ ଶିକାରୀ ଜୁଟିଗଲେ ଦାରୁଖୁନ୍ଦା ବନ୍ଧୁକରେ ଫସଲ ଜଗନ୍ତି, ଜନ୍ତୁ ଶିକାର ମଧ୍ୟ କରନ୍ତି- କଦଳୀ ବିକିବା, ଦିଅଁ ଦେଖିବା ; ଉଭୟ କାମ ହୁଏ, କିନ୍ତୁ କ୍ୱଚିତ।

ଥରେ ଶାରଦୀୟ ସନ୍ଧ୍ୟାରେ ଖଡ଼ଗପୁରର କେତେଜଣ ସୌଖୀନ ଶିକାରୀ ଆସି ମହାଦେବପୁରରେ ପହଞ୍ଚିଲେ। ପ୍ରାକୃତିକ ସୌନ୍ଦର୍ଯ୍ୟଭରା ଏହି ଭୂଭାଗକୁ ଦେଖି ସେମାନେ ଆତ୍ମହରା ହୋଇ ପଡ଼ିଥିଲେ। ସେମାନେ ଧୂରଭାଇଙ୍କର ଅତିଥି ହେଲେ। ଇଲାକାରେ ଧୂରଭାଇଙ୍କର ଥିଲାବାଲା ମାମଲାତକାର ପରିବାର। ବାପ ଭାଇ ଦାଦୀଙ୍କର ପ୍ରତିପତ୍ତି ସମସ୍ତେ ସ୍ୱୀକାର କରନ୍ତି। ଧୂରଭାଇଙ୍କ ବାପା ଗାଁର ମୁଖିଆ। ଭଲମନ୍ଦ ନ୍ୟାୟ ନିଶାପରେ ତାଙ୍କର ନିଷ୍ପତ୍ତି ଶିରୋଧାର୍ଯ୍ୟ। ଘରେ ନୂଆ ଅଭ୍ୟାଗତ- ସୌଖୀନ ଶିକାରୀଦଳ। ଜଣେ ବଙ୍ଗାଳି ଭଦ୍ରବ୍ୟକ୍ତି ରେଳ ବିଭାଗରେ ଠିକାଦାରୀ କାମ କରନ୍ତି ଖଡ଼ଗପୁରରେ। ଆଉ ଦୁଇଜଣ ଗୋରା ଆଙ୍ଗ୍‌ଲୋ ଇଣ୍ଡିଆନ, ରେଳ ବିଭାଗର ପଦସ୍ଥ କର୍ମଚାରୀ। ଅନ୍ୟ ଜଣକ ବିହାରୀ ବ୍ୟବସାୟୀ। ଦଳଟି ସାର୍ବଜନୀନ ଭଳି ସେମାନଙ୍କୁ ଦେଖିବା ପାଇଁ ଲୋକଙ୍କ ଭିଡ଼। ଧୂରଭାଇଙ୍କ ଗୋଡ଼ ତଳେ ପଡୁ ନ ଥିଲା। ତାଙ୍କ ଘରେ ସମ୍ଭ୍ରାନ୍ତ ଅତିଥିମାନେ ଉପସ୍ଥିତ। ସେମାନେ ସାଙ୍ଗରେ ଆଣିଛନ୍ତି ଅନେକ ଶିକାର ସରଂଜାମ- ବନ୍ଧୁକ, ରାଇଫଲ, ବିଭିନ୍ନ କିସମର ଗୁଳି, ବ୍ୟାଟେରୀ ଚାଳିତ ଉଜ୍ଜ୍ୱଳବତୀ ଟର୍ଚ୍ଚ ଲାଇଟ୍, ସର୍ଚ୍ଚ ଲାଇଟ୍, ଥର୍ମୋଫ୍ଲାସ୍, ରୁଚି ସମ୍ପନ୍ନ ଖାଦ୍ୟ ସାମଗ୍ରୀ ପାନୀୟ ଓଗେର।

ସୌଖୀନ ଶିକାରୀମାନଙ୍କୁ ଏପରି ଜାଗାକୁ ନେବାକୁ ହେବ, ଯେଉଁଠି ସେମାନେ ନିଶ୍ଚିତ ଭାବେ ସଫଳ ହେବେ। ପର୍ବତ ପାଖ ଥଇଲା କିଆରୀ, ପାଖ ମାଳଜମିରେ କନ୍ଦମୂଳ ଓ ବାଦାମ ଚାଷ ବହୁଳ ଭାବେ ହୋଇଛି। ସେଠାରେ ବାର୍‌ହାପଲ ମୁଣ୍ଡିଆରୁ ଗଡ଼ି କ୍ରମାଗତ ଦୁଇ ରାତି ଫସଲ ଧ୍ୱଂସ କରିବାରେ ମାତିଛନ୍ତି। ଯୋଗକୁ ଶିକାରୀ ଦଳ ଉପସ୍ଥିତ। ସେଠି ଉଚ୍ଚ ହୁଡ଼ା ତଳେ ଚୁପ୍ ହୋଇ ଜଗି ରହିବା ପାଇଁ ସମସ୍ତଙ୍କ ମତ ପ୍ରକାଶ ପାଇଲା। ଧୁରଭାଇ ମନ ଛନଛନ। କିନ୍ତୁ ବାପା ତାଙ୍କର ଛାଡ଼ିବାକୁ ନାରାଜ। ପିଲାଲୋକ। କେତେବେଳେ କେଉଁ କଥା। ଶିକାର ବଡ଼ ଦାୟିତ୍ୱ କଥା। କିନ୍ତୁ ନିକଟ ଅତୀତରେ ଧୁରଭାଇ ତାଙ୍କ ସାହସର ପରିଚୟ ଦେଇଛନ୍ତି। ସେଦିନ ସେ ହାଇସ୍କୁଲରୁ ଫେରୁଥିଲେ। ଗାଁଠାରୁ ହାଇସ୍କୁଲ ଖଣ୍ଡେଦୂର। ରାସ୍ତା ସଂକୀର୍ଣ୍ଣ, ଦୁଇ ଧାରରେ ଶିଳୁ ଓ କିଆବୁଦାର ଅରଣ୍ୟ, ଜନ୍ତୁଟାଏ ଛପିଥିଲେ ଦେଖିବା ଅସମ୍ଭବ। ଖରାଦିନ। ଶିଆଳଟାଏ ପାଗଳ ହୋଇ ଅନେକ ଲୋକଙ୍କୁ ଆଘାତ କରିଥାଏ। ଗାଁ ମୁଣ୍ଡ ଗୋହିର ରାସ୍ତା। ଗାଁ ଆଡୁ ଡାକ ପଡ଼ିଲା- ବାୟା ବିଲୁଆ, ବାୟା ବିଲୁଆ। ଧୁରଭାଇଙ୍କ ଅନ୍ୟ ଉପାୟ ନାହିଁ, କେଉଁଠି ଛପିଯିବା ପାଇଁ ସ୍ଥାନ ନାହିଁ, ପାଖରେ ମଧ୍ୟ ସେମିତି ଗଛ ନାହିଁ। ଆଖି ପିଛୁଳାକେ ବିଲୁଆଟା ମୁହଁ ମେଲି, ଜିଭକୁ ଲହ ଲହ କରି ଧୁରଭାଇଙ୍କ ପାଖକୁ ମାଡ଼ି ଆସିଲା ଖୁବ୍ ବେଗରେ। ଧୁରଭାଇଙ୍କ ହଂସା ଉଡ଼ିଗଲା। ଯାହା ବୁଦ୍ଧି ମୁଣ୍ଡକୁ ଢୁକିଲା କରି ବସିଲେ ତତ୍‌କ୍ଷଣାତ୍। ବାଳକ ହେଲେ କ'ଣ ହେବ, ବଳ ବହୁତ, ସାହସ ତତୋଽଧିକ। ବିଲୁଆ ଦନ୍ତାଘାତ କରିବା ପୂର୍ବରୁ ତା ମୁହଁକୁ ଦୁଇ ହାତରେ ଜାବୁଡ଼ି ଧରି ଶୂନ୍ୟକୁ ଟେକିନେଇ ବୁଲାଇବାକୁ ଲାଗିଲେ ଚକିରି ଭଳି। ଏହିପରି ଘୂରେଇ ଘୂରେଇ କିଛି ସମୟ ପରେ ଭୂଇଁରେ ଦୁଇ ଚାରି ଥର ପିଟିଦେଲେ। ଜନ୍ତୁଟି ନିସ୍ତେଜ ହୋଇଗଲା ପରେ ତାଙ୍କ ହାତର ଜାବ ଖୋଲିଲା। ସେତେବେଳକୁ ବିଲୁଆର ପ୍ରାଣବାୟୁ ଉଡ଼ି ଯାଇଥିଲା। ଗାଁ ଲୋକେ ଠେଙ୍ଗା ବାଡ଼ି ଧରି ଶୃଗାଳର ପିଛା କରିଥିଲେ। ଅତି ଆଶ୍ଚର୍ଯ୍ୟଜନକ ଭାବେ ମାରାତ୍ମକ ଜୀବଟି ମରି ପଡ଼ିଥିବାର ଦେଖି ଧୁରଭାଇଙ୍କୁ ବାହାବା କଲେ। ଧନ୍ୟ ତାଙ୍କର ସାହସ। ଧୁରଭାଇଙ୍କ ହୁଣ୍ଡାଳିଆ ବୁଦ୍ଧି, ଯାହା ଭାବନ୍ତି, କରନ୍ତି ଓ ଦରକାର ପଡ଼ିଲେ ସବୁତିକ ବଳ ଖଟାଇ ଦିଅନ୍ତି ଉଦ୍ଦେଶ୍ୟ ସାଧନ ପାଇଁ।

ଧୁରଭାଇ ଯେତେବେଳେ ଶିକାରୀ ଦଳ ସହିତ ଯିବାକୁ ବାହାରିଲେ ତାଙ୍କ ପାଇଁ ବାଟ ଦେଖାଳି ଭୀମା ବାପାଙ୍କ ଆଗରେ ଓକିଲାତି ବାଢ଼ିଲା- "ଆମେ ଏତେ ଲୋକ ଯାଉଛୁ ସାଆନ୍ତେ, ବାବୁମାନଙ୍କ ପାଖରେ ଅଛି ବନ୍ଧୁକ, ଭୟ କ'ଣ ? ପିଲାଟା ମନ କରିଚି। ଯାଉ।"

ବାପା ତୁନି ପଡ଼ିଲେ। ଖିଆ ପିଆ ସାରି ସେମାନେ ଯାଇ ଥଳିଆ କିଆରି ବଡ଼ ହୁଡ଼ା ପାଖେ ଜଗି ବସିଲେ ଲୁଚି କରି। ନିଶା ଗର୍ଜୁଛି। ମୁଣ୍ଡ ଉପରେ ମୁକ୍ତ ଆକାଶ।

ତାରାଗୁଡ଼ିକ ଆଖି ମିଟିମିଟି କରୁଥାନ୍ତି। ମନ ଉତ୍ତେଜନାରେ ପରିପୂର୍ଣ୍ଣ। ଖୁଟ୍ କିନି ଶବ୍ଦ ହେଲେ ଛାତି ଧୁଡ୍ କରି ହେଉଥାଏ। ଦୂରରୁ ବନହସ୍ତୀର ବିଗ୍ଘ୍ୟଲ ସ୍ୱର ଥରେ ଶୁଭିଲା। ଏମାନେ ସତର୍କ ହୋଇଗଲେ। ବଙ୍ଗାଳି ଭଦ୍ରଲୋକ ଜଣକ ମତ ପ୍ରକାଶ କଲେ- "ମଞ୍ଚାଣ ଉପରେ ବସିଥିଲେ ଭଲ ହୋଇଥାନ୍ତା।" କିନ୍ତୁ ହାତୀ ଗର୍ଜନ ଆଉ ଶୁଭି ନ ଥିଲା। ସେମାନେ ସତର୍କତାର ସହିତ ଥଳିଆ କିଆରିକୁ ଚାହିଁ ରହିଲେ। କିନ୍ତୁ ଜନ୍ତୁ ଦିଶୁ ନାହାନ୍ତି। କ'ଣ ହେଲା ? ବାଟ କଢ଼ାଳି ଜଗୁଆଳ ଭୀମା କହିଲା – "ଜନ୍ତୁ ଜୁନ୍ତା କଥା କହି ହେବନି। କାଲି ଆସିଥିଲେ। ଆଜି ଆସିବେ ବୋଲି ଠିକଣା କ'ଣ ? ସେମାନଙ୍କୁ ଯେଉଁଠି ଖାଦ୍ୟ ମିଳିଗଲା, ପଲକଯାକ ଲାଖି ଗଲେ...."

ଶିକାରୀମାନେ ଥଳିଆ କିଆରିରେ ଜଗି ରହିଲେ ରାତି ଶେଷ ହେବା ପର୍ଯ୍ୟନ୍ତ। କିନ୍ତୁ କୌଣସି ଜନ୍ତୁ ଦୃଶ୍ୟ ହେଲେ ନାହିଁ ରାତି ସାରା। ରାତି ଅନିଦ୍ରା କେବଳ ସାର ହେଲା। ରିକ୍ତ ହସ୍ତ, ବିଫଳ ମନୋରଥରେ ଘରକୁ ବାହୁଡ଼ିଲେ। ମୁହଁଟିମାନ ଶୁଖି ଯାଇଥାଏ ସତେ ଯେମିତି ଖେଳାଳିମାନେ ପରାସ୍ତ ହୋଇ ଫେରିଛନ୍ତି କ୍ରୀଡ଼ାଭୂମିରୁ! ଶିକାର କଥା, କିଏ ଗ୍ୟାରେଣ୍ଟି ଦେଇ ପାରିବ ? ମିଳିଲେ ମେଞ୍ଚାଏ, ନୋହିଲେ କେଞ୍ଚାଏ।

ସେମାନେ ରାତ୍ର ଉଜାଗର ବଶତଃ କ୍ଲାନ୍ତ ହୋଇ ପଡ଼ିଥିଲେ। ମଧ୍ୟାହ୍ନ ଭୋଜନ ପରେ ଘୋର ନିଦ୍ରାରେ ଶୋଇ ରହିଲେ ଧୁରଭାଇଙ୍କ ଫର୍ଚ୍ଚା କୋଠରିଟିରେ। କିନ୍ତୁ ଧୁରଭାଇଙ୍କ ମନ ଥାଏ ବନ୍ଧୁକ ପାଖେ। ଗତ ରାତିରେ ବନ୍ଧୁକ କିଛି ସମୟ କାନ୍ଧେଇ ଥିବାରୁ, ତା' ସଙ୍ଗେ ସାମାନ୍ୟ ପରିଚୟ ହୋଇ ସାରିଥିଲା ଅବଶ୍ୟ। କିପରି ଗୁଳି ଭର୍ତ୍ତି କରିବାକୁ ହୁଏ, ଘୋଡ଼ା ଟେକି ଗୁଳି ଚଳେଇବାକୁ ହୁଏ, ଅଗ୍ରଭାଗ ମାଛିକୁ ଲକ୍ଷ୍ୟ ସହିତ ମିଳାଇ କିପରି ନିଶାଣ କରିବାକୁ ହୁଏ- ଏସବୁ ବିଷୟରେ ପୁଙ୍ଖାନୁପୁଙ୍ଖ ବୁଝି ନେଇଥିଲେ କୈଶୋରିକ ଉତ୍ସୁକତାରେ। ଅତିଥିମାନେ ନିଦ୍ରାଭିଭୂତ ବନ୍ଧୁକର ଗୋଟାଏ ଅଧେ ଗୁଳି ଫୁଟାଇବାକୁ ସୁଯୋଗ ଖୋଜୁଥିଲେ, ମନ ଖଜବଜ ହେଉଥିଲା। ଶୁଣିଲେ, ଗାଁ ଉପରମୁଣ୍ଡ 'କେଳୁଆ ବୁଦା'ରେ ବାରହା କେଇଟା ରହିଯାଇଛନ୍ତି। ଗତ ରାତିରେ ଜଙ୍ଗଲରୁ ବାହାରକୁ ଆସିଥିଲେ, ସକାଳ ହୋଇଯିବାରୁ, ଆଉ ପର୍ବତ ଖୋଲକୁ ଫେରି ପାରି ନ ଥିଲେ। ଆଉ ସମ୍ଭାଳି ନ ପାରି ସମ୍ବାଦଦାତା ମକରା ଶଅର ସାଙ୍ଗରେ ବନ୍ଧୁକ ସହିତ ଗୁଳି ନେଇ ଚୁପ୍‌କରି 'କେଳୁଆ ବୁଦା' ଆଡ଼କୁ ଆଗେଇଲେ। ସତକୁ ସତ ଦନ୍ତାବାରହାଟେ ବୁଦା ପାଖରେ ହାବୁଡ଼ିଗଲେ ଏବଂ ଧୁରଭାଇ ତତ୍‌କ୍ଷଣାତ ତା'ର ବେକମୁଣ୍ଡାକୁ ଲକ୍ଷ୍ୟ କରି ଫାୟାର କଲେ। ଗୁଳି ବାଜିଥିଲା, କିନ୍ତୁ ସଠିକ୍ ଜାଗାରେ ନୁହେଁ। ତେଣୁ ବାରହାଟା ଜଖମ ହୋଇ ସେହି ଗହଳ ବୁଦା ଭିତରେ କେଉଁଠି ଲୁଚିଗଲା। ଘାଏଲା ଦନ୍ତା ପାରହାକୁ ଅନୁଧାବନ କରି ଠାବ କରିବା ଅନଭିଜ୍ଞ ଧୁରଭାଇଙ୍କ ଦକ୍ଷତା ଓ କ୍ଷମତା ବାହାରେ। ଅଧା ସଫଳତା ହାସଲ ରକିଛନ୍ତି, ବାକି

ଅର୍ଦ୍ଧକ ପାଇଁ ଘରକୁ ଧାଇଁଲେ ଶିକାରୀମାନଙ୍କ ସାହାଯ୍ୟ ପାଇଁ। କିନ୍ତୁ ସୌଖୀନ ଶିକାରୀମାନେ ଏବେ ବିଶ୍ରାମରତ। ସେମାନଙ୍କ ନିଦ୍ରାଭଙ୍ଗ କରାଯାଇ ନ ପାରେ- ବାପାଙ୍କ ନିର୍ଦ୍ଦେଶ ଥିଲା। କିନ୍ତୁ ବିନାନୁମତିରେ ଧୁରଭାଇ ବନ୍ଧୁକ ଧରି ଧୃଷ୍ଟତା ପ୍ରଦର୍ଶନ କରିଥିବାରୁ ପିତାଙ୍କର କଡ଼ା କୈଫିୟତ। ତାଙ୍କ ଉପରେ ଏବେ ୧୪୪ ଧାରା ଜାରି।

ସନ୍ଧ୍ୟା ଆସିଲା। ପଶ୍ଚିମ ଆକାଶରେ ଚତୁର୍ଥୀ ତିଥିର ବାଙ୍କ ଜହ୍ନ ଅନୁଜ୍ଜ୍ୱଳ ଆଲୋକ ବର୍ତ୍ତିକା ଜାଳି ରଖିଥିଲା। ଶିକାରୀମାନେ ବାରହା ଘାଏଲ ହୋଇଥିବା ସମ୍ବାଦ ପାଇ ବ୍ୟସ୍ତ ହୋଇ ପଡ଼ିଲେ। ମକରା ଶଅର ମନ ମାଂସ ପାଇଁ ବ୍ୟାକୁଳ ଥିଲା। ସେ ସେଇ କେଳୁଆବୁଦା କଡିରେ ଲରଙ୍ଗ ପଙ୍ଗର ହେଉଥିଲା, ଘାଏଲ୍ ବାରହାର ସନ୍ଧାନ ନେଉଥିଲା। କେଳୁଆବୁଦାର ଅନତିଦୂରରେ ପଙ୍କୁଆ ପୋଖରୀ କୂଳରୁ ଶବ୍ଦ ଶୁଣିଲା- ଚବର, ଚବର। ଜହ୍ନର ଅସ୍ପଷ୍ଟ ଆଲୁଅ। କଳାକୃତିର ଜନ୍ତୁଟାଏ ପାଣିରେ ପଶିଚି ନା କ'ଣ! ବାରହା ପଙ୍କରେ ଲୋଟିବାକୁ ସୁଖପାଏ। ନିଶ୍ଚୟ ସେଇ ଗୁଳିବିଦ୍ଧ ବାରହାଟା ଗୁଳି ଜ୍ୱାଳାରୁ ରକ୍ଷା ପାଇବା ପାଇଁ ପଙ୍କ ପାଣିରେ ପଶିଛି। କେମିତି ଯାଇ ଶିକାରୀମାନଙ୍କୁ ଖବର ଦେବ ତାକୁ ତର ଅଣ୍ଟିଲା ନାହିଁ, ଏକା ନିଃଶ୍ୱାସକେ ଧଇଁସଇଁ ହୋଇ ଧାଇଁଲା। ତାଜା ସମ୍ବାଦଟି ଶୁଣି ବଙ୍ଗାଳି ଭଦ୍ରଲୋକ ଜଣକ ଉତ୍ସାହିତ ହୋଇ ଉଠିଲେଏବଂ ଆଦୌ ବିଳମ୍ବ ନ କରି ରାଇଫଲ୍‌ଟି ଧରି ପୋଖରୀକୂଳକୁ ଗଲେ। ହୁଡ଼ା ଉପରେ ପହଞ୍ଚି ଅତି ଅପ୍ରତ୍ୟାଶିତ ଭାବେ ଅସ୍ପଷ୍ଟ ଜନ୍ତୁ ଆଡ଼କୁ ତାଗ କରି ଗୁଳି ମାରି ଦେଲେ। ଗୁଳି ଗର୍ଜନରେ ଚତୁର୍ଦ୍ଦିଗ କମ୍ପି ଉଠିଲା ଓ ତା'ର ପ୍ରତିଧ୍ୱନି ପର୍ବତମାଳାରୁ ଛୁଟି ଆସିଲା ଲହରେଇ ଲହରେଇ। କିନ୍ତୁ ଏ କ'ଣ ହେଲା ? ପାଣି ମଧ୍ୟରୁ ଚିତ୍କାର ଶୁଣାଗଲା- ମରିଗଲି..., ମରିଗଲି...।

କଏ ? ମଣିଷଟାଏ ନା କ'ଣ ?

ଏବେ ବଙ୍ଗାଳି ଭଦ୍ରଲୋକଙ୍କ ଅବସ୍ଥା ବାରଣ୍ଡା ଦି'କଡ଼ା। ତାଙ୍କ ବୁଦ୍ଧି ହଜିଗଲା। ବାଟ ବଣା ହୋଇଗଲା। ଭଲ ଭାବେ ନ ବୁଝି, ନ ଦେଖି ହୁଣ୍ଡା ଶଅର କଥାରେ ବିଶ୍ୱାସ କରି ଗୁଳି ଟିପି ଦେଇଛନ୍ତି। ମୁଣ୍ଡ ଉପରେ ଚଡ଼କଟିଏ। ଜନ୍ତୁ ଭାବି ମଣିଷକୁ ଗୁଳି ମାରିଛନ୍ତି। ବଡ଼ ବିଷମ କଥା। ହୁଏତ ନରହତ୍ୟା ଅଭିଯୋଗରେ ଦଣ୍ଡିତ ହେବେ। ତାଙ୍କ ଗୋଡ଼ ହାତ ଥରିଲା, ରାଇଫଲଟି ଆପେ ଆପେ ହାତରୁ ଖସି ପଡ଼ିଲା।

ଲୋକଟା ପାଣି ଭିତରେ ଆକୁଳ ଆର୍ତ୍ତନାଦ କରୁଥାଏ। ଘଟଣା ଅବିକା ପ୍ରଘଟ ହୋଇଯିବ। ନିଆଁ ଜଳିଲେ ଅଣ୍ଟିରେ ରଖିବା ସମ୍ଭବ ନୁହେଁ। ଆଉ ସେଠି କ୍ଷଣେ ନ ରହି ଭଦ୍ରବ୍ୟକ୍ତି ଏକମୁହାଁ ହୋଇ ଘରକୁ ଦୌଡ଼ିଲେ ଏବଂ ବାପାଙ୍କ ପାଖେ ଶରଣ ପଶିଲେ। ଜାଣି ଶୁଣି ସେ ଭୁଲ କରି ନାହାନ୍ତି।

ଘଟଣାର ଗୁରୁତ୍ୱ ଉପଲବ୍ଧି କରି ଧୁରଭାଇଙ୍କ ପିତା ଶୀଘ୍ର ସାନ ଭାଇଙ୍କୁ ଡାକି ତାରି ଦାୟିତ୍ୱରେ ବାରିପଟେ ଶିକାରୀ ବାବୁମାନଙ୍କୁ ପଠା କରାଇ ଦେଲେ ଭଦ୍ରକ ଷ୍ଟେଶନକୁ। ନିଜେ ବାହାରିଲେ ଘଟଣାର ତଦନ୍ତ ପାଇଁ।

ଆସି ଦେଖନ୍ତି, ପୋଖରୀ ପଙ୍କରେ ପଡ଼ି ରହିଛି ଗାଁ ଧୋବା ପରି ଜେନା। ତା ବାଁ ଗୋଡ଼ ଆଣ୍ଠୁ ତଳେ ଗୁଳି ପଶି ଯାଇ ବାହାରି ଯାଇଛି। ଆଣ୍ଠୁ ତଳଠୁଁ ହାଡ଼ ଦୁଇ ଖଣ୍ଡ ହୋଇଯାଇଛି। ପୋଖରୀର ଜଳ ରକ୍ତାକ୍ତ। ପରିଜେନାର ଚେତା ଅଛି। ସେ କହି ପାରୁଛି, କିନ୍ତୁ ଉଠିବାକୁ ଅକ୍ଷମ।

"କିଏ ? ତୁ ଏଠି କ'ଣ କରୁଥିଲୁ ?"

କାନ୍ଦକାନ୍ଦ ହୋଇ କହିଲା ପରି ଜେନା - "କ'ଣ କରିବି ସାଆନ୍ତେ ମୋ ଭାଗ୍ୟ ଦୋଷ। କପଟ କରିଥିଲି ବୋଲି ଆଜି ମୋର ଏ ଦୁର୍ଦ୍ଦଶା।"

"କ'ଣ କଥାଟା କହୁନୁ କାହିଁକି ସଫା ସଫା ?" ବାପାଙ୍କ ଅପେକ୍ଷାକୃତ ଟାଣ ସ୍ୱର।

"ଆଜ୍ଞା ଦି'ପହର କଥା। ନିଧିଆ, ସତୁରା, ମୁଁ ଏଠିକି ଆସିଲୁ, ବାଡ ଦେଇ ପାଣି ଉଠାଇଲୁ ଟିଣରେ। ପଙ୍କରେ ଅନେକ ଗଡ଼ିଶା, ଚେଙ୍ଗ, ଶେଉଳ ଥିଲେ। ପଙ୍କ ଚିପି ଚିପି ମାଛ ଧଇଲୁ। ବଡ଼ ବଡ଼ ଶେଉଳ କେଇଟା ମୁଁ ଏ ପଙ୍କରେ ଲୁଚାଇ ଥିଲି ସେମାନଙ୍କ ଅଜଣାରେ। ଯାହା ମାଛ ପାଇଲୁ, ଶେଷରେ ବାଣ୍ଟ କଲୁ। ସଞ୍ଜ ପରେ ମୁଁ ଲୁଚାଇଥିବା ମାଛକୁ ପଙ୍କରୁ ନେବା ପାଇଁ ଆସିଥିଲି। ମାଛ ଖୋଜୁଥିଲି। ସ୍ଥାନଟା ହଠାତ୍ ଠଉରାଇ ପାରିଲି ନାହିଁ। ଏତିକି ବେଳେ କିଏ ଗୁଳିମାରିଲା। ଆଃ, ବାବୁ ମରିଗଲି। ମୋ ପାପର ଫଳ। ଗଲତି କରିଥିଲି, ଗୁଳି ଖାଇଲି, ଠାକୁର ଠକାମି ସହନ୍ତି ନାହିଁ ସାଆନ୍ତେ।"

ବିଚରା ପରିଆ ଆଉ ବେଶୀ କିଛି କହି ପାରିଲା ନାହିଁ। ଯନ୍ତ୍ରଣା ଅଧିକ ହେଉଥିଲା।

ଗାଁ ଲୋକମାନେ ଘଟଣାଟା ଜାଣିଲେ। କିନ୍ତୁ କୈଫିୟତ ମାଗିବେ କାହାକୁ ? ଧୁର ଭାଇଙ୍କ ପିତା ଯେ ପ୍ରତିପତ୍ତିଶାଳୀ ! ଲୋକମାନେ ପରିଆକୁ ପାଣିରୁ ଆଣି ଶଗଡ଼ରେ ଥୋଇଲେ ଏବଂ ଭଦ୍ରକ ଡାକ୍ତରଖାନାକୁ ନେଲେ ଆଶୁ ଚିକିତ୍ସା ପାଇଁ।

ଦୁଇ ମାସପରେ ପରିଆ ଅବଶ୍ୟ ଆରୋଗ୍ୟ ଲାଭ କଲା, କିନ୍ତୁ ତା'ର ବାମ ଗୋଡ଼ଟି ସମ୍ପୂର୍ଣ୍ଣ ଅଚଳ ହୋଇଗଲା। ବାବୁମାନେ ଯେଉଁ ଟଙ୍କା ତା'ର ଚିକିତ୍ସା ପାଇଁ ଦେଇ ଯାଇଥିଲେ, ସେଥିରେ ସେ କିଛି ଦିନ ଚଳିଗଲା। ଏବେ ଅକର୍ମଣ୍ୟ। ତା'ର ସେଦିନ ପରମାୟୁ ପୁରି ନ ଥିଲା। ମରିବାକୁ ଆଉ କେତେ ଡେରି ଥିଲା ଯେ ? ନିଜର କୌଣସି ଭୁଲ୍ ନ ଥାଇ ମଣିଷ ମଧ୍ୟ ମୃତ୍ୟୁବରଣ କରେ, ଯାନବହୁଳ ରାଜରାସ୍ତାରେ ଦୁର୍ଘଟଣା ଭଳି। ବନ୍ଧୁକଟିଏ ବନ୍ୟ ହିଂସ୍ରଜନ୍ତୁ ଠାରୁ ଆହୁରି ଭୟାନକ। ଠିକ୍ ଭାବେ ଏହାକୁ ବ୍ୟବହାର ନ କଲେ, ବିପଦ ଅବଶ୍ୟମ୍ଭାବୀ, ଯେପରି ଆଜିର ମଣିଷ ମାରାତ୍ମକ ପରମାଣୁ ଅସ୍ତ୍ରକୁ ହାତରେ ଧରି ନିଜ ସ୍ଥିତିକୁ ବିପର୍ଯ୍ୟସ୍ତ କରି ଚାଲିଛି। ନିଜ ହାତରେ ଅସ୍ତ୍ର ଧରି ଅନ୍ୟକୁ ମାରିବ ବୋଲି ନିଜେ ମରୁଛି ପ୍ରତି କ୍ଷଣରେ ସିନା !

ଉପରେ ଉପରୋକ୍ତ ଦୁର୍ଘଟଣା କେତୋଟି ବିଧିର ବିଧାନ ବା ଅଦୃଷ୍ଟର ଇଚ୍ଛା କହି ଉଡ଼ାଇ ଦେଲେ ଠିକ ହେବ ନାହିଁ। ଅବଶ୍ୟ ଅନିବାର୍ଯ୍ୟତାକୁ ବିବାକେ ଅସ୍ୱୀକାର କରାଯାଇ ପାରେନା କିନ୍ତୁ ନିବାର୍ଯ୍ୟତାକୁ ନିୟନ୍ତ୍ରଣ କରିହୁଏ ସାବଧାନତାର ସୂତ୍ରରେ। ମୁଁ ନିଜ ଅଭିଜ୍ଞତାରୁ ସାବଧାନତାର ଶିକ୍ଷାକୁ ତିଳେ ତିଳେ ପାଳନ କରିବାକୁ ଚେଷ୍ଟା କରିଛି। ତଥାପି ସେଦିନ ଭାଲୁ ଆକ୍ରମଣରେ ମରୁ ମରୁ ବଞ୍ଚି ଗଲି। ବନ୍ଧୁକର ଅନ୍ୟ ନଳିଟିରେ ଗୁଳିଟି ଫୁଟି ନ ଥିଲେ ହୁଏତ ଆଜି ଏ ପୁସ୍ତକ ରଚନା କରିବାକୁ ମୁଁ ନଥାନ୍ତି। ଅତଏବ ଶିକାରୀର ଜୀବନ ସର୍ବଦା ଶଙ୍କାପୂର୍ଣ୍ଣ। ପ୍ରତି ମୁହୂର୍ତ୍ତରେ ବିପଦକୁ ଆଖି ଆଗରେ ରଖି ବାଟ ଚାଲିବା କୁଶଳୀ ଶିକାରୀର କର୍ତ୍ତବ୍ୟ- ମୋର ପରାମର୍ଶ।



ଭାଲୁ ସହିତ ମୁକାବିଲା ଏବଂ ତା'ର ମୃତ୍ୟୁପରେ ଗୌନ୍ତିଆ ଶର୍ମାଙ୍କ କଥା ଓ କାରବାର ଦେଖି ମୋ ପିଲାଦିନର ଅଙ୍ଗେ ନିଭେଇଥିବା ଦୁଇଟି ଘଟଣା ମୋ ମନକୁ ବାରମ୍ବାର ସ୍ପର୍ଶ କରିଥାଏ। ଦୃଶ୍ୟ ଦୁଇଟି ବର୍ଣ୍ଣନା ନ କରି ରହିପାରୁନି। ଗୋଟିଏ ଅନୁଭୂତି ହେଉଛି ମୁଁ ପଞ୍ଚମ ଶ୍ରେଣୀରେ ପଢୁଥିଲା ବେଳର।

ବାଙ୍କୀର ସ୍ୱନାମଧନ୍ୟ ବରେନ୍ଦ୍ର କୃଷ୍ଣ ବିଦ୍ୟାପୀଠ। ବ୍ରିଟିଶ ବେଳର ବିଦ୍ୟାଳୟଟିଏ। ୧୯୨୧ ମସିହାରୁ ସ୍ଥାପିତ। ପୁରାତନ ରାଜବାଟି ଭଳି ପଥର ନିର୍ମିତ ଅଟ୍ଟାଳିକା- ଶିକ୍ଷାୟତନର ଗାମ୍ଭୀର୍ଯ୍ୟ ପୁରି ରହିଥାଏ। ଏହାର ଅବସ୍ଥିତି ଠିକ୍ ମହାନଦୀର ତଟରେ ଏବଂ ବାଙ୍କୀ ଟାଉନ୍‌ର ଉପକଣ୍ଠରେ। ପଶ୍ଚାତ୍ ଭାଗରେ ସୁଦୀର୍ଘ ବିଶାଳ ନଦୀ। କୂଳରେ ବିରାଟ ବନ୍ଧ, ଠିକ୍ ବନ୍ଧ ଏପାଖରେ ଆମର ସ୍କୁଲ। ସମ୍ମୁଖରେ ପୁରାତନ କଟକ- ସୋନପୁର ରୋଡ୍- ଗେଟି, ଗେଣ୍ଡୁଟି, କରକଟାର ନାଲି ରାସ୍ତାଟି ଲମ୍ବି ଯାଇଛି ପୂର୍ବ ଓ ପଶ୍ଚିମ ଦିଗକୁ।

ସେଦିନ ଶନିବାର ହୋଇଥାଏ। ସେତେବେଳେ ଶନିବାର କେବଳ ସକାଳୁଆ ସ୍କୁଲ। ପରଦିନ ରବିବାରଟି ସାପ୍ତାହିକ ଛୁଟିଦିନ। ଏଣୁ ଶନିବାର ଦିନଟି ଅପେକ୍ଷାକୃତ ହାଲୁକା ଲାଗେ ଏବଂ ଛୁଟି ଅବ୍ୟବହିତ ପୂର୍ବରୁ ଆନନ୍ଦରେ ଆମେ ଉତ୍‌ଫୁଲ୍ଲ ଥାଉଁ। ମାଘ ମାସ ଶୀତ ଦିନ। ସାଙ୍ଘାତିକ ଶୀତ ପଡ଼ିଥାଏ। ଦେହ ହାତ ବରଫ ପାଲଟି ଯାଇଥାଏ। ସକାଳ ପହରୁ ଘନ କୁହୁଡ଼ି ଘେରି ରହିଥାଏ ସର୍ବତ୍ର। ଆମେ ଥାଉ ଶ୍ରେଣୀରେ। ପାଠରେ ମନ ନ ଥାଏ। କେତେ ବେଳେ ଛୁଟିଘଣ୍ଟି ବାଜିବ, ସେଇ ମୁହୂର୍ତ୍ତକୁ ଅପେକ୍ଷା କରିଥାଉ। ସମୟ ମାତ୍ର ସକାଳ ଆଠ ହେବ। ସ୍କୁଲ ଛୁଟି ହେବ ଦଶଟାରେ। ଛୁଟି ପରେ ଦିନର ଅବଶିଷ୍ଟ ସମୟତକ ଧନୁଶର, ତୀର, ଛିଟିକିଣି ନେଇ ଲକ୍ଷ୍ୟ ଅଭ୍ୟାସ କରିବୁ କିମ୍ବା କାଣ୍ଡିଆରେ ଅଠା ଲଗାଇ ଗୋବରା ବା ହରଡ ଚଢ଼େଇ ଧରିବୁ, ନୋହିଲେ ଫାଶ ପକାଇ ଯୋର କୂଳରେ ଜଗି ରହିବୁ; ଡାହୁକ, ବଗ, କାଦୁଅ ଖୁମ୍ପି ଚଢ଼େଇ

ଧରିବୁ ବା କଣ୍ଡିଆ, ଖୋପା ଜାଲ ଧରି କଙ୍କି ପ୍ରଜାପତି ଧରିବୁ। ଶନିବାର ସ୍କୁଲ ଛୁଟି ପରେ ଓ ରବିବାର ସମ୍ପୂର୍ଣ୍ଣ ଦିନଟି ଏଇପରି ଅନେକ କାର୍ଯ୍ୟକ୍ରମରେ ପରିପୂର୍ଣ୍ଣ। ଏଣୁ ସକାଳ ଶ୍ରେଣୀରେ ଆଦୌ ମନ ନ ଥାଏ। ଚଗଲା ମନ ଧାଉଁଥାଏ ବାହାର ଜଗତ ଆଡ଼କୁ। ଛୁଟି ଘଣ୍ଟା ବାଜିବା ପର୍ଯ୍ୟନ୍ତ ମୁଁ ଓ ମୋର ଅନୁଗତ କେଇଜଣ ସାଥୀ ଫନ୍ଦି ଫିକର, ବାହାନା କରି ବାହାରକୁ ଯିବାକୁ ଲାଗିଥାଉ। ମାଷ୍ଟଙ୍କ ରୁକ୍ଷ ବଦନ, ନାଲି ଆଖି ଓ ବେତର ତାଡନା ଏଡାଇବା ପାଇଁ ଆମ ପାଖେ ଥାଏ- ଏକ, ଦୁଇ ଚାଲ୍।

ସବୁଆଡ଼ କୁହୁଡ଼ି ଭରିଥାଏ। ସୂର୍ଯ୍ୟ ଲୁଚି ରହିଥାଏ ଆକାଶର ବଉଦ ଖୋଳ ଭିତରେ। ଭୂଇଁ ଉପରେ କାକର ଗାଧୁଆ ଦୁର୍ବାଦଳରାଜି ଧଳା ଚାଦରଟିଏ ଘୋଡ଼ି ହେଲା ଭଳି ଦିଶୁଥାଏ। ଗଛପତ୍ରର ଶିଶିର ବିନ୍ଦୁ ଏକତ୍ରିତ ହୋଇ ତଳକୁ ଖସୁଥା'ନ୍ତି ଟପ୍ ଟପ୍ ବର୍ଷା ଟୋପା ଭଳି। ଉତ୍ତର ପଟୁ ମାଡ଼ି ଆସୁଥାଏ କୋହଲା ପବନ ଅସ୍ଥିମଜ୍ଜାକୁ ଥରାଇଲା ଭଳି।

ପିରିଅଡ଼ଟା ସଠିକ୍ ମନେ ନାହିଁ। ବୋଧହୁଏ ଅଙ୍କ ପିରିଅଡ଼। ଗଣିତ ପାଠ ମୋତେ ଅରୁଆ। ପଢ଼ାରେ ଧାନ ନ ଥାଏ, ଦେହ ମନ ଭିଡ଼ିମୋଡ଼ି ହେଉଥାଏ। ଏଣୁକରି 'ଦୁଇ' ଆଳରେ ମାଷ୍ଟଙ୍କଠୁଁ ଲମ୍ବା ଅନୁମତି ନେଇ ଖସି ଆସିଲି ପଛପଟ ନଦୀବନ୍ଧ ଉପରକୁ। ଆପେକ୍ଷା କରିଥାଏ ମୋର ସାଙ୍ଗ ପ୍ରମୋଦକୁ। ସେ ତ ମୋର ଚେଲା, ମୋ ଠାର ଧରିନିଏ ଠିକ୍ ଭାବେ। ମୋ ପଛେ ପଛେ ସେ ମଧ ଶ୍ରେଣୀରୁ 'ଦୁଇ' ବାହାନା ବଳରେ ଖସି ଆସିଲା। ବେନି ବନ୍ଧୁ ବିଦ୍ୟା ବନ୍ଧନରୁ ମୁକ୍ତ ହୋଇ ଆସି ମନଖୁସିରେ ନଦୀବନ୍ଧ ଉପରେ ଇତସ୍ତତଃ ବୁଲିଲୁ। ତା'ପରେ ନିରୋଳା ନଦୀ ତୁଠରେ ଶୌଚର ବାହାନା କରି ଗୋଡ଼ ହାତ ପଖାଳିଲୁ, ମୁହଁକୁ ମହାନଦୀ ଜଳରେ ଧୋଇଲୁ। ଏଥର ପଥର ଶିଢ଼ି ଉଠି ପୁଣି ବନ୍ଧ ଧରିଲୁ। ଠିକ୍ ବନ୍ଧ ତଳେ ଆମ ସ୍କୁଲ ହତା। ନାଗୁଆରୀ କଣ୍ଟା, ବାଇଗବା, ଶିଳୁ ଗଛରେ ସ୍କୁଲର ହତାବାଡ଼ ତିଆରି। ପୂର୍ବପଟ ହତା ବାଡ଼କୁ ଲାଗି କିଆବଣ ଏବଂ ବାଉଁଶବୁଦା। କିଆବଣ ଭିତରେ ଦୀର୍ଘକାୟ ଝଙ୍କାଳିଆ ଜାମୁକୋଳି ଗଛ କେତୋଟି ବହୁ ଯୁଗରୁ ତିଷ୍ଠିତ। ଜାମୁକୋଳି ପାଚିଥିଲା ବେଳେ ଆମେ ଅବସର ସମୟରେ ମାଙ୍କଡ଼ ଭଳି ଗଛ ଅଗକୁ ଚଢ଼ି ପେଟେପେଟେ ଜାମୁକୋଳି ଖାଉ। ଏବେ ଶୀତଦିନେ ଗଛଗୁଡ଼ିକ ଅବଶ୍ୟ ଶୁଷ୍କ ଦିଶୁଥାନ୍ତି। ନଈ କୂଳିଆ କାଲୁଆଥଣ୍ଡା ପବନରେ ତାଳପତ୍ର ଦୋହଲୁଥାନ୍ତି। ଶୀତ ପ୍ରତି ଖାତିର ନ ଥାଏ, ଦେହକୁ ଥଣ୍ଡାଲାଗୁ ନ ଥାଏ ଯେହେତୁ ମନ ମସଗୁଲ ଥାଏ, ତନୁକୁ କଷ୍ଟ ଆଦୌ ଲାଗୁ ନ ଥାଏ।

ଆମେ ଜାଣି ଜାଣି ମନ୍ଥର ପଦପାତ କରି ଶ୍ରେଣୀରେ ଯୋଗଦେବାକୁ ଯାଉଛୁ। ହତାବାଡ଼ ପାଖରେ ପହଞ୍ଚିଛୁ, ଏହି ସମୟରେ କିଆ ଭିତରୁ ହଠାତ୍ ଗୋଟିଏ ମହାବଳ

ବାଘର ଗର୍ଜନ ଶୁଣି ଆମର ପିଳେହି ପାଣି ହୋଇଗଲା। ଏମିତି ଖୋଲା ସ୍ଥାନରେ ଖୁବ୍ ନିକଟରେ ହେଣ୍ଟାଳ ଶୁଣି ଆମେ ଏକାବେଳକେ ଜଡ଼ବତ୍। ପ୍ରାଣ ବିକଳରେ କିଏ କୁଆଡ଼େ ପଡ଼ି ଉଠି ଆଣ୍ଠୁ ଗଣ୍ଠି ଛିଣ୍ଡାଇ ଧାଇଁବାକୁ ଲାଗିଲୁ।

ବାଘ ଥରେ ମାତ୍ର ଗର୍ଜନ କରି ସେଇ କିଆବଣ ଭିତରେ ନୀରବ ରହିଗଲା।

ବାଘ ହେଣ୍ଟାଳ ସମସ୍ତେ ଶୁଣିଛନ୍ତି। ଘଡ଼ଘଡ଼ି ରଡ଼ି ଭଳି ଗମ୍ଭୀର। ସମସ୍ତେ ସ୍ତମ୍ଭୀଭୂତ। ବାଘଟେ ଆସିଲା କାହୁଁ? ଏଠି ପାଖରେ କୌଣସି ଜଙ୍ଗଲ ନାହିଁ। ବଣ ନଟା ଯାଇଁ ଡମପଡ଼ା, ଡାଳବସ୍ତ, କୃଷ୍ଣପ୍ରସାଦ ଓ ଗୟଳବାଙ୍କ ଆଡ଼େ, ଏଠାରୁ କମ୍‌ସେ କମ୍ ପନ୍ଦର ମାଇଲ ଦୂରରେ। ବାଘଟା ଏତେ ଗାଁ ଗଣ୍ଡା ବସ୍ତି ପାର ହୋଇ ଏତେ ବାଟ ଆସିଲା ବା କିପରି? ସମସ୍ତେ ଚକିତ ଓ ଆଚମ୍ବିତ। ସଭିଙ୍କ ମୁହଁରେ ଗୋଟେ କଥା- ବାଘ, ବାଘ।

ପ୍ରମୋଦ ଓ ମୁଁ ଛାନିଆ ହୋଇ ନଣକୂଳ ଦେଇ ଅନ୍ୟ ବାଟ ଧରିଲୁ। ଛାତି ଉଠୁଥାଏ, ପଡୁଥାଏ। ସ୍କୁଲର ସାମ୍ନା ଫାଟକ ଦେଇ ବାରଣ୍ଡାକୁ ଚଢ଼ିଲୁ। ଦେଖୁ, ଅନେକ ଛାତ୍ର ଏବଂ ଶିକ୍ଷକ ଇତି ମଧ୍ୟରେ କୋଠାଛାତ ଉପରକୁ ଚଢ଼ି ଜାମୁଗଛ ମୂଳ କିଆବଣ ଆଡ଼କୁ ଲକ୍ଷ୍ୟ କରିଛନ୍ତି ଉଦ୍‌ବେଗର ସହିତ। ଗର୍ଜନଟା ସେଇଆଡୁ ଆସିଥାଏ। ବାଘଟା ସେଇଠି କେଉଁଠି ଛପିଛି ନିଶ୍ଚୟ। ଆଖିକୁ ଦିଶୁ ନ ଥାଏ। ଗୋଠ ମାତିରେ ଖଣ୍ଡିଆ ମାତିଲେ ଭଳି ମୁଁ ଇତି ମଧ୍ୟରେ ଛାତ ଉପରକୁ ଉଠିଯାଇ କିଆବଣ ଆଡ଼କୁ ଟିପେଇ ଦେଖୁଥାଏ। ବାଘର ଆବିର୍ଭାବ ନେଇ ପରସ୍ପର ବିରୋଧୀ ମତ ପ୍ରକାଶ ପାଉଥାଏ। କିଏ ମତ ଦେଉଥାଏ- ଏଟା ସପ୍ତଶଯ୍ୟା ପର୍ବତରୁ ସରଣ୍ଡା ଦେଇ ନଦୀ ପାର ହୋଇ ଚାଲି ଆସିଛି। ରାତିରେ ଚରିବାକୁ ସରଣ୍ଡା ଆସିଥିଲା, ସକାଳ ହେବାରୁ ଆଉ ଫେରି ପାରି ନାହିଁ। ଭୋରରୁ ମହାନଦୀ ପାର ହୋଇ ଏପଟକୁ ପଳାଇ ଆସିଛି। ବାଘ ପାଣି ପହଁରିବାରେ ପାରଙ୍ଗମ- ଇତ୍ୟାଦି।

ଉତ୍ତେଜନା ଲାଗିଥାଏ, ବନ୍ୟା ଜଳଭଳି ବଢୁଥାଏ କ୍ରମଶଃ। ଅଞ୍ଚଳରେ ନୂଆ ଘଟଣାଟିଏ।

ବାଘ ଆବିର୍ଭାବ ସମ୍ବାଦ ଚାରିଆଡ଼େ ପ୍ରଘଟ ହୋଇଗଲା। ସଂଲଗ୍ନ ଗାଁ ଖମାରଙ୍ଗ, ବେଦପୁର ଓ ଚର୍ଚ୍ଚିକାର କେଇଜଣ ସାହସୀ ଲୋକ ଠେଙ୍ଗା, ବାଡ଼ି, ଭାଲି, ଭୁଜାଲି ଧରି ବାଘ ସଙ୍ଗେ ଲଢ଼ିବାକୁ ଉପସ୍ଥିତ ହୋଇଗଲେ ସତେ ଯେମିତି ଅତୀତରେ ସେମାନେ ବାଘ ସଙ୍ଗେ ମୁହାଁମୁହିଁ ହୋଇ ଲଢ଼େଇ କରିଛନ୍ତି। (କିନ୍ତୁ ସେମାନଙ୍କ ପୂର୍ବ ପୁରୁଷ କେବେ ବାଘର ମୁହଁ ଦେଖି ନ ଥିବେ)। ନିକଟସ୍ଥ ଗାଁର ଓ ବିଦ୍ୟାପୀଠ ଛାତ୍ରାବାସର କେତେଟା ବୁଲା କୁକୁର କୁକୁରୀ ସମବେତ ହୋଇ କିଆବଣ ପର୍ଯ୍ୟନ୍ତ ଭୋ ଭୋ କରି ଭୂମି ଯାଉଥାନ୍ତି ଏବଂ ପୁନଶ୍ଚ ଲୋକମାନଙ୍କ ପାଖକୁ ଫେରି ଆସୁଥାନ୍ତି।

ଆମ ସ୍କୁଲରେ ନଟବର ମାଷ୍ଟ୍ରେ ଶିକାରୀ ସାର୍ ନାମରେ ଅଭିହିତ। ଦୈବାତ୍ ସେଦିନ ସେ ସ୍କୁଲରେ ଅନୁପସ୍ଥିତ ଥିଲେ। ଅନତିଦୂର ଚର୍ଚ୍ଚିକା ଗ୍ରାମରେ ତାଙ୍କର ଘର। ଶନିବାର ଦିନ ପ୍ରାୟତଃ ସ୍କୁଲକୁ ଆସନ୍ତି ନାହିଁ। ମାଷ୍ଟ୍ର ଚାକିରି ସହିତ କ୍ଷେତବାଡ଼ି ବୁଝିବାକୁ ହୁଏ। ଆବଶ୍ୟକସ୍ଥଳରେ ହଳ ଲଙ୍ଗଳ ଧରନ୍ତି। ସେ ଦେଖିବବାକୁ ବେଶ୍ ଦୀର୍ଘକାୟ, ଲମ୍ବା, ଶ୍ୟାମଳ ରଙ୍ଗ, ହାଡୁଆ ଦେହ। ଚେହେରାରେ ଯେତିକି ରୁକ୍ଷ', ସ୍ୱଭାବରେ ସେତିକି ବଦ୍‌ରାଗୀ ଚାତ୍ରମାନେ ତାଙ୍କ ନାଁ ଶୁଣିଲେ ଭୟଭୀତ ହୋଇପଡ଼ନ୍ତି। ଆମେ ସବୁ ତାଙ୍କୁ ନଟଖଟିଆ ମାଷ୍ଟ୍ରେ ବୋଲି ତାଙ୍କ ପଛରେ କହି ଭୁକି ହେଉ। ସେ ଶିକାର ଯାହା କରନ୍ତୁ ନା କାହିଁକି, ଜଣେ ଦକ୍ଷ ବଣୁଆ ବୋଲି ନିଜକୁ ଭାବି ନେଇଥାନ୍ତି ଏବଂ ବନ୍ଧୁକ ଚାଳନାରେ ନିଜ ଦକ୍ଷତା ନେଇ ପ୍ରଚାର କରନ୍ତି ଏବଂ ବାହାସ୍ଫୋଟ ମାରନ୍ତି ମଧ୍ୟ। ତାଙ୍କ ବୀରତ୍ୱ ଓ ବୀର୍ଯ୍ୟ ନେଇ ଆତ୍ମବିଜ୍ଞାପନରେ ଥାଏ ତାଙ୍କର ପ୍ରଚୁର ଆତ୍ମତୃପ୍ତି। କାଁ ଭାଁ କେତେବେଳେ ମହାନଦୀ ବାଲି ପଠାରୁ ପଟେ ଅଧେ ଚକୁଆ ମାରିଲେ ତା'ର ବେକକୁ ରସିରେ ବାନ୍ଧି ବନ୍ଧୁକ ନଳିର ଅଗ୍ରଭାଗରେ ଝୁଲାଇ ବୀର ଦର୍ପରେ ଗୃହକୁ ଫେରନ୍ତି, ନିଜକୁ ବିଜୟୀ ବୀର ବୋଲି ବିବେଚନା କରି ପ୍ରଶଂସାର ପାତ୍ର ହେବାକୁ ଦାବି କରନ୍ତି।

ନଟିଆ ସାର୍ ସେଦିନ ସ୍କୁଲକୁ ନ ଆସି ସକାଳୁ କ୍ଷେତକୁ ହଳ ଲଙ୍ଗଳ ନେଇ ଚାଲି ଯାଇଥିଲେ। ବାଘ ସମ୍ବାଦ ପାଇ ସେ କ୍ଷେତରେ ହଳ ଲଙ୍ଗଳ ଛାଡ଼ି ଦେଇ ଘରକୁ ଧାଇଁଲେ ଏବଂ ସେଠୁ ବନ୍ଧୁକ ଧରି ଧଇଁସଇଁ ହୋଇ ହଳୁଆ ଝାଳନାଳ ଦେହରେ ସ୍କୁଲ ଛାତ ଉପରକୁ ଚଢ଼ି ବାଘର ଆନୁମାନିକ ସ୍ଥିତି ଠାବ କରି ଦାନ୍ତ ଚୋବାଇଲେ।

ବାଘ ଇତି ମଧ୍ୟରେ କିଆବଣ ଭିତରୁ ବାହାରି ପାଖରେ ଥିବା ରହାସ ମୁକ୍ତିଆରଙ୍କ ନଡ଼ା ଭାଡ଼ି ତଳେ ଆଶ୍ରୟ ନେଲାଣି। ବାଘ ମଧ୍ୟ ଆଉ ଆଦୌ ହେଣ୍ଟାଳି ନାହିଁ। ମହାବଳ ଜନ୍ତୁଟି ମୋର ଦୃଶ୍ୟ ହେଉ ନ ଥାଏ। କାରଣ ଅନ୍ୟମାନଙ୍କ ତୁଳନାରେ ମୋର ଉଚ୍ଚତା କମ୍ ଥାଏ। ବଳବାନ୍ ବୟୋଜ୍ୟେଷ୍ଠ ଛାତ୍ର ଓ ଶିକ୍ଷକମାନଙ୍କୁ ଠେଲି ଆଗକୁ ଯିବା ସମ୍ଭବ ହେଉ ନ ଥାଏ। ଯାହା ଖାଲି ସେମାନଙ୍କ ପଛରେ ରହି ମୁଁ ବିବରଣୀ ଶୁଣୁଥାଏ ପ୍ରତ୍ୟକ୍ଷଦର୍ଶୀ ଘୋଷକମାନଙ୍କ ମୁହଁରୁ। ବାଘ ଶିକାର ସ୍ୱଚକ୍ଷୁରେ କେତେ ଉପଭୋଗ୍ୟ, ତାହା ପ୍ରତ୍ୟକ୍ଷଦର୍ଶୀ ହିଁ ଜାଣେ। ଇନ୍ଦ୍ରିୟାନୁଭୂତିକୁ ପ୍ରକାଶ କରାଯାଇ ପାରେନା, କେତେକ ଅନୁଭବ ଇନ୍ଦ୍ରିୟ ଭିତରେ ସୀମାବଦ୍ଧ ରହିଯାଏ।

ଏବେ ବାଘ ଆଶ୍ରୟ ନେଇଥିବା ନଡ଼ାଗଦା ଭାଡ଼ି ଜାମୁ ଗଛଠୁଁ ୪୦/୫୦ ଫୁଟ ଦୂରରେ। ଆଉ ଦଣ୍ଡେ ବିଳମ୍ବ ନ କରି ନଟ ମାଷ୍ଟ୍ରେ ସ୍କୁଲ ଛାତରୁ ଓହ୍ଲାଇଲେ ଏବଂ ଚଉକସ ପାଇକଥା ମାରି ବନ୍ଧୁକକୁ କାନ୍ଧରେ ଝୁଲାଇ ଜାମୁଗଛ ଚଢ଼ିଲେ ବୀର ଠାଣିରେ। ତାଙ୍କ ମୁହଁରୁ ବାଘ ପ୍ରତି ଅଶ୍ରାବ୍ୟ ଅଶ୍ଳୀଳ ଭାଷାର ଫୋଟକା ଫୁଟୁଥାଏ,

ବାଘର ଚୌଦ ପୁରୁଷ ଶ୍ରାଦ୍ଧ କରୁଥା'ନ୍ତି। ଆମେ ସବୁ ତାଙ୍କ ସାହସକୁ ଧନ୍ୟ କହୁଥିଲୁ। ସେ ଗଛ ଦୋକାନିକୁ ହଠାତ୍ ଉଠି ଯାଇ ଅପ୍ରତ୍ୟାଶିତ ଭାବେ ଗୋଟାଏ ଗୁଳି ନଡ଼ାଗଦା ତଳକୁ ଫୁଟାଇ ଦିଅନ୍ତେ ବାଘ ଜୋର୍ କରି ଗର୍ଜନ କରି ଉଠିଲା। ମନେ ହେଲା ଭୂଇଁଟା ଫାଟିଗଲା ତା ଗୁରୁ ଗର୍ଜନରେ। ଆଶ୍ଚର୍ଯ୍ୟ। ଆମେ ସବୁ ଦେଖୁ ନଟ ମାଷ୍ଟେ ଆଉ ଗଛରେ ନାହାନ୍ତି। ସେ ଦୁଲ୍‌କରି ଖସିପଡ଼ି କିଆବଣ ଭିତରେ ହାମୁଡ଼େଇ ପଡ଼ିଛନ୍ତି। ତାଙ୍କର ଆଉ ସୁର୍ ଶବ୍ଦ କିଛି ନାହିଁ। ଏଣେ ବାଘ ଭୟ। ଜନ୍ତୁଟା ମରି ନାହିଁ ବା ତା ଦେହରେ କୌଣସି ଗୁଳିବାଜିନାହିଁ- ଆମେ ସମସ୍ତେ ନିଃସନ୍ଦେହ। ବନ୍ଧୁକଫୁଟା ଶବ୍ଦରେ ବାଘ ହେଣ୍ଡାଳି ପୁଣି ପଶି ଯାଇଥିଲା ସେଇ କିଆବଣ ଭିତରକୁ। କିନ୍ତୁ ନଟିଆ ମାଷ୍ଟ୍ରେଙ୍କ ଅବସ୍ଥା କ'ଣ ହେଲା ଦେଖିବାକୁ କେହି ନାହିଁ, ବୁଝିବାକୁ ନାହିଁ। ଗଛମୂଳ କିଆବଣ ପାଖକୁ ଯିବା ପାଇଁ କାହାର ବା ସାହସ ଅଛି ? ଠେଙ୍ଗା, ବାଡ଼ି, ଅସ୍ତ୍ର ଧରିଥିବା ଉପସ୍ଥିତ ଗାଁ ବାଳୁଏ ବୁଲା କୁକୁର ଲାଙ୍ଗୁଡ଼ ପଛଗୋଡ଼ ସନ୍ଧିରେ ଭର୍ତ୍ତି କରି ପଛକୁ ଦୌଡ଼ିବା ଭଳି କେହି ଆଉ ସାହସ କରି ଆଗକୁ ବଢ଼ିଲେ ନାହିଁ, ବରଂ ପଛକୁ ଫେରିବା ଉପକ୍ରମ କରୁଥାନ୍ତି। କୋଠା ଛାତ ଉପରେ ସମସ୍ତଙ୍କ ଭିଡ଼। ଏଣେ ନଟ ମାଷ୍ଟ୍ରଙ୍କ ବୃଦ୍ଧ ବାପା କେତେବେଳେ ଘଟଣାସ୍ଥଳରେ ହାଜର। ସେ ଜାମୁଗଛ ମୂଳକୁ ନ ଯାଇ ସେଇ କୋଠା ଉପରେ ନଟିଆରେ, ନଟିଆରେ, ଚିତ୍କାର କରୁଥାନ୍ତି। ତାଙ୍କ ବିଳାପରେ କେହି ତରଳୁ ନ ଥାନ୍ତି। ବାଘ ପାଖକୁ ଯିବ କିଏ ? ପ୍ରତି ଜୀବନର ଯବଙ୍କୁ ଭୟ।

ବାଘ ଦଶାଠାରୁ ନଟିଆ ମାଷ୍ଟ୍ରଙ୍କ ଦୁର୍ଦ୍ଦଶା ଉତ୍କଟତର ହୋଇ ଉଠିଲା। ଜୀବନକୁ ପାଣି ଛଡ଼ାଇ ତାଙ୍କ ଅବସ୍ଥା ପରଖିବା ପାଇଁ କେହି ଆଗଭର ହେଲେ ନାହିଁ। ମାଷ୍ଟ୍ରମାନେ ପରସ୍ପର ମୁହଁକୁ ଚାହାଁ ଚୁହିଁ ହେଲେ। ଏପରି ସ୍ଥଳେ କ'ଣ ବା କରାଯାଇ ପାରେ ? କେବଳ ଆହା ଛଡ଼ା ଅନ୍ୟ କୌଣସି ଭାଷା କାହା ପାଟିରୁ ବାହାରୁ ନ ଥିଲା।

ଇତି ମଧ୍ୟରେ ସମ୍ବାଦ ପହଞ୍ଚି ସାରିଥିଲା ବାଙ୍କୀର ଡେପୁଟୀ କଲେକ୍ଟରଙ୍କ ପାଖେ। ସେ ବନ୍ଧୁକଧାରୀ ଦକ୍ଷ ପ୍ରହରୀ କୁମାର ପ୍ରଧାନକୁ ସାଙ୍ଗରେ ଧରି ଘଟଣାସ୍ଥଳରେ ଉପସ୍ଥିତ ହୁଅନ୍ତି ଏବଂ ପ୍ରହରୀ ମହାଶୟ କିଆବଣ ଭିତରେ ପଶି ବାଘକୁ ଅନୁଧ୍ୟାନ କରି ନିରାପଦ ଦୂରରେ ରହି ବନ୍ଧୁକ ଚଳାନ୍ତି। ବାଘର କୁଁ କାଁ ନାହିଁ। ଗୋଟିଏ ଗୁଳି ଚୋଟରେ ତା'ର ପ୍ରାଣବାୟୁ ଉଡ଼ିଗଲା।

ଗୋଟିଏ ଅପେରା ଦେଖି ହରଷରେ ଘର ବାହୁଡ଼ା ଗ୍ରାମୀଣ ଦର୍ଶକ ଭଳି ଆମେ ସବୁ କୋଠା ଉପରୁ ଓହ୍ଲାଇ ଆସିଲୁ। ଏବେ ଉଦ୍ଧାରକାରୀ ଦଳ ନଟ ମାଷ୍ଟ୍ରଙ୍କ ଆଡ଼କୁ ଆଗେଇଲା। ଥୋକାଏ ଲୋକ ମଲା ବାଘକୁ ଘୋଷାଡ଼ି ପଦାକୁ ଆଣିଲେ। ଆମେ ସବୁ ମଲା ବାଘ ଉପରେ କ୍ଷଣେ ନଜର ପକାଇ ନଟମାଷ୍ଟ୍ରଙ୍କ ହାଲତ ଦେଖିବା ପାଇଁ ଉଦ୍‌ଗ୍ରୀବ ହୋଇଥାଉଁ। କିଆବଣ ଭିତରେ ନଟ ମାଷ୍ଟେ ସଂଜ୍ଞାହୀନ ହୋଇ ପଡ଼ିଥାନ୍ତି।

ତାଙ୍କୁ ସ୍ୱେଚ୍ଛାସେବକମାନେ ଟେକି ଟେକି ଆଣି ଖୋଲା ଜାଗାରେ ଶୁଆଇ ଦେଲେ। ମୁଣ୍ଡର କେଉଁ ଅଜଣା ଜାଗାରେ ଆଘାତ ଲାଗିଥାଏ। କାନ୍ଧ ଓ ଆଣ୍ଠୁରେ କ୍ଷତ ଚିହ୍ନ ଏବଂ ରକ୍ତସ୍ରାବ ହେଉଥାଏ ସେଥିରୁ। ହୃତ୍‌ପିଣ୍ଡ ଅବଶ୍ୟ ଚାଲୁଥାଏ, ନାଡ଼ି ପରୀକ୍ଷା କରି ଦେଖିଲେ ଖେଳ ସାର୍। ତାଙ୍କ ମୁଣ୍ଡ ଓ ମୁହଁରେ ପାଣି ସିଞ୍ଚି କାନ ଫୁଙ୍କି ଚେତା ଫେରାଇଲେ ଏବଂ ସେଇଠୁ ତାଙ୍କୁ ହାସପାତାଳକୁ ସ୍ଥାନାନ୍ତରିତ କରାଗଲା ଏକ ଦଉଡ଼ିଆ ଘଟ ସାହାଯ୍ୟରେ।

ଏଣେ ଡେପୁଟି କଲେକ୍‌ଟର ଦେହୁରୀ ସାହେବ ସୂକ୍ଷ୍ମ ନଜରରେ ବାଘକୁ ନିରୀକ୍ଷଣ କରି ଦେଖନ୍ତି, ବାଘଟି ବୃଦ୍ଧ ଏବଂ ରୁଗ୍‌ଣ। ତା' ଦେହରେ ଅନେକ କ୍ଷତସ୍ଥାନ, ଘା' ପାଚି ପୂଯ ଦୁର୍ଗନ୍ଧ ବାହାରୁଚି। ଅତଏବ ପୂର୍ବରୁ ସେ କେଉଁଠି ଗୁଳିମାଡ଼ ଖାଇଛି। ଶୁଣିଥିଲେ, ସରଣ୍ଡା, ଅଂଶୁପା, ମାଳବାରପୁର ଅଞ୍ଚଳରେ ବାଘଟେ ମାତିଥିଲା କେଇଦିନ ହେଲା। ସ୍ଥାନୀୟ ବାଣୁଆମାନେ ତା' ପିଛା ଲାଗି ଯାଇଥିଲେ, କିନ୍ତୁ ମାରି ପାରି ନ ଥିଲେ ତାକୁ। ବାଘଟି ଗତ ରାତିରେ ଜୀବନରକ୍ଷା ପାଇଁ ମହାନଦୀ ପାର ହୋଇ ଏପଟକୁ ପଳାଇ ଆସିଛି। ନଟ ମାଷ୍ଟ୍ରେ ବାଘ ମୁହଁରୁ ବର୍ତ୍ତିବାର ରହସ୍ୟ ଏବେ ବୁଝା ପଡ଼ିଲା।

ନଟ ମାଷ୍ଟ୍ରେଙ୍କ ଦକ୍ଷିଣ ଗୋଡ଼ ଭାଙ୍ଗି ଯାଇଥିବାର ଶୁଣିଲୁ। ସେ ପ୍ରାୟ ଏକ ମାସ ହେବ ଡାକ୍ତରଖାନାରେ ରହି ଚିକିତ୍ସିତ ହେଉଥା'ନ୍ତି। ମସ୍ତିଷ୍କ ଆଘାତରେ ସେ ବେଳେବେଳେ ବିଳିବିଳଉଥାନ୍ତି ଏବଂ ସଂଜ୍ଞା ମଧ୍ୟ ହରାଉଥାନ୍ତି। ତାଙ୍କୁ ସମବେଦନା ଦେବା ପାଇଁ ଆମେ ମଝିରେ ମଝିରେ ଡାକ୍ତରଖାନା ଯାଇଥାଉଁ। ବିପତ୍ତି ବେଳରେ ଗୁରୁଙ୍କ ପ୍ରତି 'ଆହା' ପଦେ ପ୍ରକାଶ କରିବା ଛାତ୍ରର କର୍ତ୍ତବ୍ୟ। ନଟ ମାଷ୍ଟ୍ରଙ୍କ ସଦା ଗରମ ମୁହଁ ଏବେ ନରମ ଦିଶୁଥିଲା ଆମକୁ।

ମଲା ବାଘଟିର ଚମଡ଼ା ଉତୁରା ଯାଇ ଛାଲଟିକୁ ପ୍ରଧାନ ଶିକ୍ଷକ ଫକୀରମୋହନ ପଟ୍ଟନାୟକଙ୍କୁ ଉପହାର ଦିଆଯାଇଥିଲା ଡେପୁଟି କଲେକ୍ଟର ଦେହୁରୀ ମହାଶୟଙ୍କ ତରଫରୁ। ଛାଲକୁ ଦେଶୀ ପଦ୍ଧତିରେ ଖରାରେ ଶୁଖାଯାଇ ମୁଲାୟମ କରାଗଲା। କ୍ଷୁଦ୍ର ଲୋମବିଶିଷ୍ଟ ହଳଦୀ ରଙ୍ଗର ପ୍ରଶସ୍ତ ବାଘ ଛାଲଟି ମଖମଲ ଭଳି ମସୃଣ ଓ ଚକ୍‌ଚକ୍ ଦିଶିଲା। ପ୍ରଧାନଶିକ୍ଷକଙ୍କ ଚୌକି ପଛ କାନ୍ଥରେ କଣ୍ଟାପିଟି ବିସ୍ତୃତ ଭାବେ ଟଙ୍ଗା ହେଲା। ପରବର୍ତ୍ତୀ କେଇ ବର୍ଷ ବିଦ୍ୟାପୀଠର ଛାତ୍ର ଥିବା ସମୟରେ ବାଘ ଛାଲ ଉପରେ ନଜର ପଡ଼ିଲା ମାତ୍ରେ ମୋର ମନେ ପଡ଼ିଯାଏ ନଟ ମାଷ୍ଟ୍ରଙ୍କ ଦୁର୍ଦ୍ଦଶା ଏବଂ ହସର ଲହରୀ ଉଠି ଆସେ ଆପେ ଆପେ।

◆

ମୋର ଆଉ ଗୋଟିଏ ସ୍ମରଣୀୟ ଅଥଚ ବିଡ଼ମ୍ବନାପୂର୍ଣ୍ଣ ଘଟଣାଟିଏ ଘଟିଥିଲା ସେଇ ବାଲୁତ ବେଳରେ, ସେଇ ସ୍କୁଲରେ ପଢୁଥିଲାବେଳେ। ଆଖି ଆଗରେ ଦୃଶ୍ୟଟି ଭାସି ଉଠୁଛି। ଘଟଣାର ମହାନାୟକ ଥିଲେ ସେଇ ନଟିଆ ସାର୍। ତାଙ୍କର ବିଚିତ୍ର ଶିକାର ସଉକ ହେଉ ଅଥବା ବାହାସ୍ଫୋଟ ଗୁଣ ହେଉ, ଘଟଣାଟି ତାଙ୍କ ପିଛା ଲାଗି ରହିଥିଲା ଗୋଟେ ଅଭୁଦ କଳାରେ। ସେ ମଧ୍ୟ ସେଥର ହାସ୍ୟର ବସ୍ତୁ ବନି ଯାଇଥିଲେ। ଏବେ ବି ସେ କଥା ମନେ ପଡ଼ିଲେ ମୁଁ ଆପେ ଆପେ ବହେ ନ ହସି ରହିପାରେ ନାହିଁ। ଘଟଣାଟିରେ ମୁଁ ନିଜେ ସମ୍ପୃକ୍ତ ଥିଲି- ଛୋଟବେଳେ ଅଙ୍ଗେ ନିଭେଇଥିବା ଏକ ଲୋମହର୍ଷୀ କାହାଣୀ। ତାହା ନିମ୍ନରେ ବର୍ଣ୍ଣନା କରୁଛି-

ସପ୍ତମ ଶ୍ରେଣୀର ଛାତ୍ର ଥିଲି। ମୁଣ୍ଡ ଉପରେ ମାଇନର୍ ପରୀକ୍ଷା। ମୋର ହେଙ୍ଗଡ଼ା ଗୁଣ ପାଇଁ ମୋର ପିତାମାତା ଚିନ୍ତିତ ଥା'ନ୍ତି। ମୋର ଉପର ଭାଇ ଭଉଣୀମାନେ ଖୁବ୍ ଭଲ ପଢୁଥିଲେ। କିନ୍ତୁ ମୋର ଶିକ୍ଷାର୍ଜନ ସମ୍ବନ୍ଧରେ ପିତାମାତା ସନ୍ଦୀହାନ। କାରଣ ବହି ସହିତ ବହୁ ସମୟ ବସିବା ମୋର ଅଭ୍ୟାସ ନ ଥିଲା; ହୁଏତ ରୁଚି ବିରୁଦ୍ଧ। କମ୍ ସମୟ ପଢ଼େ, କିନ୍ତୁ ସେତିକିରେ ଆଶାଠୁଁ ଅଧିକ ଫଳ ପାଏ। ବାପା କହନ୍ତି, ପିଲାଟା ଯଦି ବେଶୀ ସମୟ ପାଠରେ ମନ ଦିଅନ୍ତା, କ୍ଲାସରେ ପୋଜିସନ୍ ରଖନ୍ତା। ତେବେ ମୁଁ ବଡ଼ ହେଲେ ଚଗଲା ଗୁଣ ଆପେ ଅପସରି ଯିବ ବୋଲି ମତ ଦେଇଥାନ୍ତି। କିନ୍ତୁ ମୋର ସ୍ୱଭାବରେ ଶିକ୍ଷକଗୋଷ୍ଠୀ ଏବଂ ଅଭିଭାବକ ମହଲ ସନ୍ତୁଷ୍ଟ। ସମସ୍ତେ ମୋତେ ଶ୍ରଦ୍ଧା କରନ୍ତି- ମୁଁ ଅନୁଭବ କରୁଥିଲି।

ସେତେବେଳେ ପାଠ ପଢ଼ା ଛଡ଼ା ଅନ୍ୟ ମନୋରଞ୍ଜନ ବିଶେଷ ନ ଥାଏ ଆମ ଅଞ୍ଚଳରେ। ବିଜୁଳିବତୀ ସମ୍ବନ୍ଧରେ ଗାଁର ସହରୀ ଚାକିରିଆଙ୍କଠୁଁ ଶୁଣି ସେ ଯୁଗର ଉଦ୍ଭାବନ ବିଜୁଳିବତୀର କାର୍ଯ୍ୟ କରାମତି ଆଈ ମା' କାହାଣୀଠୁ ଆହୁରି ଗୁଢ଼ ମନେହୁଏ। ଆମ ଅଞ୍ଚଳରେ କେବଳ କେତୋଟି ପେଟ୍ରୋମାକ୍ସ ଲାଇଟ୍ ଥାଏ ଥିଲାବାଲାଙ୍କ

ପାଖେ। ଧନିକ ଶ୍ରେଣୀଲୋକଙ୍କର କାଁ ଭାଁ ସାଇକଲଟିଏ ଥାଏ। କିନ୍ତୁ ପର୍ବପର୍ବାଣୀ, ଦୋଳଯାତ୍ରା, ଝାମୁଯାତ୍ରା, ରଥଯାତ୍ରା ଜାକଜମକରେ ପାଳିତ ହୁଏ। ବାର ମାସରେ ତେର ପର୍ବ ଲାଗି ରହିଥାଏ। ଚଇତି ଘୋଡ଼ା, ଗୋଟିପୁଅ ନାଚ, ଅପେରା, ପାଲା, ଦାସକାଠିଆ ଆଦିରେ ସ୍ୱାତନ୍ତ୍ର୍ୟ ଥାଏ। ଗାଁ ଭୂଇଁ ଅଞ୍ଚଳ, ଖଣ୍ଡମଣ୍ଡଳ ଆନନ୍ଦ ଉଲ୍ଲାସରେ ଉଛୁଳି ଉଠେ। ସେତେବେଳେ ପଲ୍ଲୀ ଜୀବନରେ ଚେତନା ଥାଏ, ଥାଏ ମୂଲ୍ୟବୋଧ।

କିନ୍ତୁ ରୁଟିନବନ୍ଧା ଦୈନନ୍ଦିନ ପଢ଼ାପଢ଼ି ପାଠ୍ୟକ୍ରମ ଆଦି ଗତାନୁଗତିକ ଜୀବନରୁ ସାମୟିକ ମୁକ୍ତି ପାଇଁ ବଣଭୋଜି କିମ୍ବା ବହିର୍ଗମନର ଆକର୍ଷଣ ଅନେକ ଦିନ ହେବ ଆମ ମନକୁ ଆଚ୍ଛନ୍ନ କରି ରଖିଥିଲା। ଏଥି ପାଇଁ କଳ୍ପନା ଜଳ୍ପନା ଚାଲିଥିଲା। ସ୍କୁଲ ପିଲାଙ୍କ ମଧ୍ୟରେ ମୋତେ ନେତୃତ୍ୱ ନେବାକୁ ପଡ଼ିଥିଲା। ଶ୍ରେଣୀଶିକ୍ଷକଙ୍କ ଜରିଆରେ ପ୍ରଧାନ ଶିକ୍ଷକଙ୍କ ପାଖରେ ପ୍ରସଙ୍ଗଟି ପହଞ୍ଚାଇଲି। ପ୍ରସ୍ତାବଟି ପ୍ରଧାନଶିକ୍ଷକଙ୍କ ସମ୍ମତି ଲାଭ କଲା। କିନ୍ତୁ ବଣଭୋଜିର ମନୋନୀତ ହୋଇପାରିଲା ନାହିଁ।

ଅନେକ ପରସ୍ପର ବିରୋଧୀ ପ୍ରସ୍ତାବ ପ୍ରଧାନ ଶିକ୍ଷକଙ୍କ ପାଖେ ଉପସ୍ଥାପିତ ହେଲା। କିଏ ମତ ଦେଲା, ପ୍ରାକୃତିକ ସୌନ୍ଦର୍ଯ୍ୟଭରା ମହାନଦୀ କୂଳରେ ଭଟ୍ଟାରିକା ଠାକୁରାଣୀଙ୍କ ମନ୍ଦିର କିମ୍ବା କଣ୍ଟିଲୋର ନୀଳମାଧବ ମନ୍ଦିର ଅଥବା ଓଡ଼ଗାଁର ରଘୁନାଥଜୀଉ ମନ୍ଦିର, ନୋହିଲେ ଶରଣକୂଳର ଲଡୁବାବା। ଆଉ କିଏ ଯୁକ୍ତି ବାଢ଼ିଲା ଓଡ଼ିଶାର ନବନିର୍ମିତ ରାଜଧାନୀ ମନ୍ଦିର ମାଳିନୀ ଭୁବନେଶ୍ୱର ନଗରୀ ପାଇଁ। ଏଗୁଡ଼ିକ ଐତିହାସିକ ତଥା ଦର୍ଶନୀୟ ସ୍ଥାନ ଅବଶ୍ୟ, କିନ୍ତୁ ସବୁରି ମୂଳରେ ଥିଲା ଅର୍ଥ। ଏତେ ଦୂର ବାଟ ପାଇଁ ଆର୍ଥିକ ସମ୍ବଳ ଏବଂ ଯାନବାହନର ଆୟୋଜନ ସହଜସାପେକ୍ଷ ନୁହେଁ। ଅତଏବ ପ୍ରସ୍ତାବଗୁଡ଼ିକ ଆପେ ଆପେ କାଟ ଖାଇଗଲା।

ମୋ ମନ ଭିତରେ ପ୍ରସ୍ତାବ ବଳବତ୍ତର ରହିଥିଲା। ଆମ ଶ୍ରେଣୀ ଶିକ୍ଷକ ଗୋପୀନାଥ ସାର୍ ମୋତେ ସୁଖ ପାଉଥିଲେ। ସୁବିଧା ଦେଖି ତାଙ୍କୁ ପୁନର୍ବାର ମନଭିତରେ ଉବୁଟୁବୁ ହେଉଥିବା ପ୍ରସ୍ତାବଟି ଉତ୍‌ଥାପନ କଲି। ବାଙ୍କୀଠାରୁ ଡମପଡ଼ା ମାତ୍ର ସାତ ମାଇଲ ଦୂର, ସେଠୁ ଚନ୍ଦକା ଅଭୟାରଣ୍ୟ ଆରମ୍ଭ। ପିଲାଦିନେ ବାପାଙ୍କ ସଙ୍ଗେ କୁଜି, ବାଙ୍ଗରା ମୋଟରରେ ବସି ମୋ ବଡଭଉଣୀ ଶାଶୁ ଘର କଟକ ଗଲାବେଳେ ଅନେକ ଜଙ୍ଗଲ ରାସ୍ତା ଦେଇ ଯିବାକୁ ହୁଏ। ରାତିରେ ବସ୍ ଆଗରେ ଗୟଳବାଙ୍କ ମୋଡ଼ ନିକଟରେ ବାଘ ସଙ୍ଗେ ହାବୁଡ଼ା ହାବୁଡ଼ି ହେବା କଥା ଶୁଣିଥାଏ। କିନ୍ତୁ ଜିଅନ୍ତା ଜଙ୍ଗଲୀ ବାଘକୁ ଏତେ ମୁହାଁମୁହିଁ ଦେଖିବା ମୋଭାଗ୍ୟରେ ଜୁଟି ନ ଥିଲା। କେବଳ ବାପା ବଡ଼ବାପାଙ୍କଠୁଁ ଶୁଣିଥିଲି ଯାହା। କାହିଁକି କେଜାଣି, ଅରଣ୍ୟର ଆକର୍ଷଣ ମୋତେ ଆନନ୍ଦପ୍ରଦ ହୋଇଥିଲା ପିଲାଟି ବେଳରୁ। ଏଣୁ ଚନ୍ଦକା ଭିତରେ ଏକ ଜଳାଶୟ କୂଳରେ ବଣଭୋଜି କଲେ ଭଲ ହୁଅନ୍ତା ବୋଲି ଗୋପୀନାଥ ସାର୍‌ଙ୍କୁ

ମଗାଇଲି । ବାଃ, ପ୍ରସ୍ତାବଟି ସୁନ୍ଦର, ଖର୍ଚ୍ଚ ବହୁଳ ନୁହେଁ ବୋଲି ମତଦେଇ ଗୋପୀସାର୍ ହେଡ୍‌ମାଷ୍ଟ୍ରଙ୍କ ପାଖକୁ ଗଲେ । ତାଙ୍କ ସଙ୍ଗେ କଥାବାର୍ତ୍ତା କରି ମୁହଁରେ ହସଟିଏ ଧରି ଆସି ଆମକୁ ଆଶାବାଣୀ ଶୁଣାଇଲେ । ସଙ୍ଗେ ସଙ୍ଗେ ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ଆମ୍ଭମାନଙ୍କ ମଧ୍ୟରେ ତତ୍ପରତା ବୃଦ୍ଧି ପାଇଲା । ଏଣେ ତେଣେ ଦୌଡ଼ାଦୌଡ଼ି କଲି । ତାଲିକା ପରେ ତାଲିକା ପ୍ରସ୍ତୁତ ଚାଲିଲା । ଇଚ୍ଛୁକ ଛାତ୍ରମାନଙ୍କଠୁଁ ଚାନ୍ଦା ଆଦାୟର ଭାର ମୋ ଉପରେ ନ୍ୟସ୍ତ ରହିଲା । ଦିନ,ବାର, ସମୟ ଧାର୍ଯ୍ୟ ହୋଇଗଲା । କେବଳ ଗାଡ଼ିଟିଏ ଯୋଗାଡ କରିବା ସମସ୍ୟା ।

ଆଗରୁ କହିଛି, ମୋ ବଡ଼ବାପା ରାୟ ବାହାଦୂର ଖଗେନ୍ଦ୍ର ଚନ୍ଦ୍ର ମହାପାତ୍ର ୧୯୨୧ ମସିହାଠୁଁ ୧୯୪୭ ପର୍ଯ୍ୟନ୍ତ ବାଙ୍କୀ ଗଡ଼ଜାତ ଅଞ୍ଚଳର ଥିଲେ ଅପ୍ରତିଦ୍ୱନ୍ଦ୍ୱୀ ପ୍ରଶାସକ, ଅବୈତନିକ ମାଜିଷ୍ଟ୍ରେଟ୍, ହାଇସ୍କୁଲର ସେକ୍ରେଟାରୀ, ବ୍ରିଟିଶ ସରକାରଙ୍କ ଏ ଇଲାକା ଶାସନରେ ମୁଖ୍ୟ କାରପଦଟଦାର ଇତ୍ୟାଦି । ସ୍ୱାଧୀନତା ପରେ ଆଉ ସରକାରୀ ଚାକିରି ନ କରି ସ୍ୱଇଚ୍ଛାରେ ଅବସର ନେଇଥିଲେ । କିନ୍ତୁ ତାଙ୍କ ପ୍ରଭାବ ଅତୁଟ ରହିଥିଲା । ମୁଁ ଥିଲି ଆମ ଘରର ସର୍ବକନିଷ୍ଠ ପୁତ୍ର । ମୋର ଅଳି ଅଝଟରେ ସେ କେବେହେଲେ ଅରାଜି ହୁଅନ୍ତି ନାହିଁ । ତାଙ୍କର ବ୍ୟକ୍ତିଗତ ପ୍ରଭାବ ପକାଇ ସ୍ଥାନୀୟ କଣ୍ଟ୍ରାକ୍ଟର ପ୍ରାଣକୃଷ୍ଣ ସାହୁଙ୍କଠାରୁ ବିନା ଭଡ଼ାରେ ବଣଭୋଜି ପାଇଁ ତାଙ୍କ ଟ୍ରକ୍‌ଟି ହାସଲ କଲି । ସେଥି ପାଇଁ ଶିକ୍ଷକ ତଥା ଛାତ୍ର ସମ୍ପ୍ରଦାୟଙ୍କଠାରୁ ଧନ୍ୟବାଦର ପାତ୍ର ହୋଇଥିଲି । ସବୁ ବ୍ୟବସ୍ଥା ସୁରୁଖୁରୁରେ ହୋଇଗଲା । ଆମେ ଗଲୁ ସର୍ବମୋଟ ଚାଳିଶ ପିଲା ଟ୍ରକ୍ ଡାଲାରେ ବସି । ଭିତରେ ଡ୍ରାଇଭର କ୍ୟାବିନରେ ପାଞ୍ଚ ଛ'ଜଣ ଶିକ୍ଷକ ଗଲେ ଅଭିଭାବକ ସାଜି ।

ଡମପଡ଼ା ଅତିକ୍ରମ କଲାପରେ ତାଳବସ୍ତ ଗାଁ । ସେଠୁଁ ଜଙ୍ଗଲ ଭିତରକୁ ତିନି ମାଇଲ ଗଲୁ । ମକର ସଂକ୍ରାନ୍ତି ପରଦିନ କଥା ! ଶୀତୁଆ ଛୋଟ ଦିନ । ସକାଳୁ ବାହାରୁ ବାହାରୁ ଡେରି ହୋଇଯାଇଥିଲା । ପାଞ୍ଚ ଭାଇ ଆଖଡ଼ା ପରି କଥା । ଏସବୁ ଘଟଣାରେ ସାଧାରଣତଃ ବିଳମ୍ବ ହୋଇଯାଇଥାଏ । ବେଳ ଆସି ଗୋଟାଏ ହେଲାଣି । ଟ୍ରକ୍ ଅଟକିଲା ନିବିଡ଼ ନଟା ଭିତରେ । ଗୋଟିଏ ପ୍ରକାଣ୍ଡ ପ୍ରସ୍ତରଖଣ୍ଡ ମୂଳ ଦେଶରେ । ପର୍ବତାକାରର ଏତେ ବଡ଼ ମୁଗୁନି ପଥର ଖଣ୍ଡ ମୁଁ କେବେ ଦେଖି ନାହିଁ । ଯାକୁ କାଳିଶୁଣୀ ପାହାଡ଼ ବୋଲି ଲୋକେ କହନ୍ତି । ଜଙ୍ଗଲ ଦେବୀ କାଳିଶୁଣୀ ଠାକୁରାଣୀ ଏଠି ପୂଜିତା । ପଥର ପାଖେ ପାଖେ ଝରଣାଟିଏ ପ୍ରବାହିତ ହେଉଥିଲା । ମନ ଖୋଲି ଦେହ ହାତ ନିର୍ମଳ ପାଣିରେ ଧୋଇଲୁ । ଆଦିବାସୀ ଲୋକମାନେ ପାଣିକୁ ବନ୍ଧେଇ ରଖିଥିଲେ । ଟାପୁରେ ମୁଣ୍ଡ ଉଚ୍ଚର ପାଣି ସବୁବେଳେ ରହୁଥିଲା । ବନ୍ୟଜନ୍ତୁମାନେ ଏଠୁ ପାଣି ପିଅନ୍ତି । ବାରହା, ସମ୍ବର, ବଣ ମଇଁଷି, ହାତୀ ଆଦି ପାଣିରେ ବୁଡ଼ି ପଙ୍କରେ ଲୋଟିବାକୁ ସୁଖ ପାଆନ୍ତି । ସେମାନଙ୍କ ପାଦଚିହ୍ନ ନରମ ମାଟିରେ ସ୍ପଷ୍ଟ

ଭାବେ ଛାପି ରହିଥିଲା । ପାଣି ଭିତରେ ବଡ଼ ବଡ଼ ମାଛ ଖେଳୁଥିବାର ଲକ୍ଷ୍ୟକଲୁ । ପାଣି ଉପରେ ମୁଢ଼ି ଭସାଇଲୁ । ରୋହି, ଭାକୁର, ଚେଙ୍ଗ, ଗଡ଼ିଶା, ସେଉଳ ମାଛ ସବୁ ଶୂନ୍ୟକୁ କୁଦାମାରି ମୁଢ଼ି ଗୁଡ଼ିକ ଖାଇଗଲେ । ମାଛ ମାରିବା ଏଠି ନିଷେଧ । ବିଶ୍ୱାସର ଆଇନ ଭଙ୍ଗ କଲେ ଠାକୁରାଣୀ ରୁଷ୍ଟା ହେବେ । ଅନ୍ୟ ପିଲାମାନେ ମାଛ ଖେଳ ମନ ଲଗାଇ ଦେଖୁଥିଲେ । କୋଳାହଳମୟ ସ୍ଥାନ ? ମୋତେ ଭଲ ଲାଗୁ ନ ଥିଲା । ବଣ ରାଇଜର ପ୍ରାକୃତିକ ଦୃଶ୍ୟରାଜିରେ ମୁଁ ଆତ୍ମବିସ୍ମୃତ ହୋଇ ପଡ଼ିଥିଲି । ଭିତର ଅରଣ୍ୟର ବିଜନତା ମୋତେ ଆକୃଷ୍ଟ କଲା । ସାଥୀ ପିଲାଙ୍କ ମେଳରୁ ଚୁପ୍ କରି ଖସି ଆସି ଗଲି ଭିତରକୁ ଭିତରକୁ । ଏମିତି କେତେ ବାଟ ଆସିଗଲିଣି, ମୋର ହୋସ୍ ନ ଥିଲା । ମନରେ ମଧ ଭୟ ନ ଥିଲା । ଅରଣ୍ୟ ନିର୍ଜନତାର କଥା କହୁଥିଲା । ଏଗଛରୁ ସେ ଗଛ ମୟୂର ପଲ ଡେଣା ହଲାଇ ଫଡ଼୍ ଫଡ଼୍ ଶବ୍ଦ କରୁଥିଲେ । ଅନେକ କିସମର ମାଙ୍କଡ଼ ଡିଆଁ ମାରୁଥିଲେ ଗଛରୁ ଗଛକୁ । ବନାନୀର ଅନିର୍ବଚନୀୟ ଶୋଭାରେ ମୁଁ ମୋହିତ ହୋଇଥିଲି । ନିଜକୁ ହଜାଇ ଦେଇଥିଲି ଜଙ୍ଗଲ ସହିତ ।

ପେଟକୁ ଭୋକ ଲାଗିଲା । ସେମାନେ ଖୋଜୁଥିବେ ନିଶ୍ଚୟ । ତରତର ହୋଇ ଫେରିଲି । ରାସ୍ତା କେଉଁଆଡ଼େ ? ଆଗରେ ଖାଲି ନଟା, ବୁଦା, ଘଞ୍ଚ ବୃକ୍ଷମାଳା । ସବୁଆଡ଼େ ସମାନ ଦିଶୁଛି । ପୁଣି ପାଦର ଗତି ଦ୍ରୁତ କଲି । କାଳିଶୁଣୀ ପାହାଡ଼ କେଉଁଆଡ଼େ ? ମନ ଅସ୍ଥିର ହେଲା, ଭୟ ମୋତେ କବଳିତ କଲା । ଜଙ୍ଗଲର ଶେଷ କେଉଁଠି ? ସୀମାହୀନ ସମୁଦ୍ର ପରି ଏହାର ବ୍ୟାପ୍ତି । ଭୋଜି ସ୍ଥାନକୁ ଠଉରାଇ ନ ପାରି ନିରାଶ ଏବଂ ଅନୁଶୋଚନାର ପ୍ରଚଣ୍ଡ ଦହନରେ ମୋର ଅବସ୍ଥା ଶୋଚନୀୟ ହୋଇପଡୁଥିଲା । ଯେଉଁ ଜଙ୍ଗଲ ଭିତରକୁ ନିଜକୁ ଠେଲି ଦେଇଥିଲି; ଏଥର ଜୀବନ ଭୟରେ ବିପଦ ଗଣିଲି । ଆଗରେ ଜନ୍ତୁଙ୍କର ହୁରୁଡ଼ା ଶବ୍ଦ ଶୁଣିଲି । ଛାତିରେ ନେଣ୍ଡାଏ ଛେପ ପକାଇଲି । ଏତିକି ବେଳେ ମହାବଳ ବାଘଟାଏ ଅଚାନକ ହେଣ୍ଟାଳି ବସିଲା । ଥରେ ବାଘର ହେଣ୍ଟାଳ ସ୍କୁଲ ପାଖ କିଆବୁଦା ଭିତରୁ ଶୁଣିଥିଲି । ଏଥର କିନ୍ତୁ ବାଘ ଗର୍ଜନ ମୋତେ ମୃତବତ୍ କରିଦେଲା । ହେଣ୍ଟାଳ ବନ୍ଦ ହେଲା ପ୍ରାୟ ଅଧ ମିନିଟ ପରେ । ବାଘ ନିଶ୍ଚୟ ପାଖରେ କେଉଁଠି ଅଛି । ନିଜକୁ ସମ୍ଭାଳି ନେଇ କୌଣସି ମତେ ନିକଟରେ ଥିବା ବଡ଼ ଗଛଟିରେ ଚଢ଼ିବାକୁ ଲାଗିଲି । ଆଗରୁ ଗଛ ଚଢ଼ାର ଅଭ୍ୟାସ ଥିଲା । ଗଛର କୁବ୍ ଉପରକୁ ଚଢ଼ି ଦୋକାନି ଡାହିରେ ଦୁଇ ଗୋଡ଼କୁ ମେଲାଇ ବସି ରହିଲି । ବାଘ ମୋତେ ଆଉ କଦାପି ସ୍ପର୍ଶ କରିପାରିବନି ବୋଲି ହୃଦ୍‌ବୋଧ ହେବାରୁ ଦମ୍ଭ ଆସିଲା, ମନରେ ସାହସ ସଞ୍ଚାରିତ ହେଲା । ପେଟରୁ ଭୋକ ଉଭେଇ ଯାଇଥିଲା ବାଘ ଭୟରେ । ଆଉ କିନ୍ତୁ ବାଘର ସ୍ୱରଶବ୍ଦ ଶୁଣିଲି ନାହିଁ । ପୁଣି କ୍ଷୁଧା ଉତ୍କଟତର ହେଲା । ଦେଖିଲି ଯେଉଁ ବୃକ୍ଷଟିରେ ମୁଁ ଆଶ୍ରୟ ନେଇଛି ତାହା ଏକ ପଣସ ବୃକ୍ଷ ।

ସେଥିରେ ଛୋଟ ଛୋଟ ପଣସ ପଠା ଓହଳିଛି । ପକେଟରେ ଛୋଟ ଦାତୁଆ ଛୁରିଟିଏ ରଖିଥିଲି । ( ଏବେ ମଧ୍ୟ ଅଭ୍ୟାସଟି ଦୂର ହୋଇନି, ଏବେ ଛୁରି ଅପେକ୍ଷା କଲମ ବେଶୀ ଜରୁରୀ ହୋଇପଡ଼ିଛି ।) ହାତ ବଢ଼ାଇ ପଣସ କଠାଟିଏ ତୋଳି ଆଣିଲି ଏବଂ ତହିଁରୁ କଅଁଳ ମଞ୍ଜି କାଢ଼ି ଖାଇଲି । ଭୋକବେଳେ ସବୁ ସୁଆଦ ଲାଗେ । ତଳକୁ ଓହ୍ଲାଇବାକୁ ଆଉ ସାହ ନ ଥାଏ । ସୂର୍ଯ୍ୟ ବୁଡ଼ିଗଲେଣି । ଛପି ଛପି ଅନ୍ଧାର ମାଡ଼ି ଆସୁଥିଲା । ଅନ୍ୟ କେଉଁଆଡ଼େ ଯିବାର ଉପାୟ ନ ଥିଲା । ସାରା ରାତିଟି ଏହି ଗଛରେ ବିତିବ । ଅନ୍ୟ ଉପାୟ ବା କ'ଣ ଅଛି ?

ଶୀତ ରାତି । ପୁରାହାତ ସୁଏଟରଟିଏ ଦୈବାତ୍ ପିନ୍ଧିଥିଲି । ପକେଟରୁ ରୁମାଲଟିଏ ଆଣି ମୁଣ୍ଡରେ ବାନ୍ଧିଲି । ଏକ ଅସମ୍ଭବ ଜଡ଼ତା ଦେହ ଓ ମନକୁ କାବୁ କରି ଦେଇଥିଲା । ଅନ୍ଧାର ଘନେଇଲା । କେଇଟା ଟିଟିଭ ପକ୍ଷୀ ରାବି ବସିଲେ । ନିଶାଚର ଚଢ଼େଇମାନେ ପହରା ଦେବା ଆରମ୍ଭ କରିଦେଲେ । ଭଣ ଭଣ ପଚା ଗନ୍ଧରେ ନାକ ଫାଟି ପଡୁଥାଏ । ପ୍ରବାହିତ ପବନକୁ ଭିତ୍ତିକରି ଗନ୍ଧ ଆସୁଥିବା ଦିଗକୁ ଠଉରାଇଲି । ତଳ ନଟାବୁଦା ମୂଳେ କ'ଣ ଗୋଟେ ଖସ୍ ଖସ୍ ଶବ୍ଦ ହେଲା । ଛାତି ଉଠିଲା, ପଡ଼ିଲା । ଅନ୍ୟ ଏକ ଉଚ୍ଚ ବୃକ୍ଷରେ ହନୁ ଖିଙ୍କାରିବା ଆରମ୍ଭ କରି ଦେଇଥିଲା । ବହିରୁ ପଢ଼ିଥିଲି, ବାଘ ନିକଟରେ ହେଲେ ହନୁ ଏମିତି ଖିଙ୍କାରି ଉଠେ । ତା' ସ୍ୱରରେ ବଣର ତୃଣଭୋଜୀ ନିରୀହ ପଶୁମାନଙ୍କ ପାଇଁ ସତର୍କ ଘଣ୍ଟି । ବାଘ ଏ ଅଞ୍ଚଳରେ ନିଶ୍ଚିତ ଭାବେ କେଉଁଠି ଛପି ରହିଛି । ବାଘକୁ ଦେଖିବାର ଅବଦମିତ ଉତ୍କଣ୍ଠା ସହିତ ଅହେତୁକ ଭୟ ମୋତେ ସ୍ଥାଣୁ କରି ଦେଇଥିଲା । ଯାହା ଦୁର୍ଭାଗ୍ୟ ଘଟିବାର ଘଟିଗଲାଣି । ଜୀବନ ଉପରେ ଆଶା ଛଡାଇ ଦେଇ ଦୃଢ଼ ଭାବେ ଗଛ ଡାଳରେ ବସି ରହିଲି । ଶୀତର ପ୍ରକୋପ କ୍ରମଶଃ ବଢୁଥାଏ । ଗୋଡ଼ ହାତ ବରଫ ଭଳି ଥଣ୍ଡା । ବୁଦା ମୂଳେ କଡ୍ କଡ୍ ଶବ୍ଦ ହେଲା । ରାତିର ସମୟ ମାପି ଜାଣିବା ସମ୍ଭବ ନ ଥିଲା । ଆକାଶ ମେଘମୁକ୍ତ ଥିଲା । ଅନ୍ଧକାରମୟ ରଜନୀରେ ତାରାଗୁଡ଼ିକ ଟୋଫା ଦିଶୁଥିଲେ । ଭୂଇଁ ତଳ କିଛି ଦିଶୁ ନ ଥିଲା । ଅନୁମାନ କରି ଖାଲି ଯାହା ଠଉରାଇବା କଥା । ପୁଣିଦାନ୍ତରେ ହାଡ଼ ଖଣ୍ଡ ଖଣ୍ଡ କିରବାର ଶବ୍ଦ । ବାଘ ଗଛ ତଳ ବୁଦା ଭିତରେ ଲୁଚାଇ ଥିବା ଶିକାରକୁ ଖାଉଛି- ଏହା ସୁସ୍ପଷ୍ଟ ହେଲା । ସଦ୍ୟ ଶିକାରକୁ କିଛି ଖାଇ, ଉଚ୍ଛିଷ୍ଟ ଅଂଶକୁ ଶାଗୁଣା, ଶୃଗାଳଙ୍କ ଦୃଷ୍ଟିରୁ ଦୂରରେ ରଖିବା ପାଇଁ ଗହଳ ଗଛଲତା ଆଢୁଆଳରେ ଲୁଚାଇଥାଏ । ଶିକାର ପଚିବା ପରେ ଖୁବ୍ ଆରାମରେ ପେଟେ ଖାଇ ଦିନା କେତେ କୋରଡ଼ ଭିତରେ ଶୋଇ ରହେ । ମଢ଼ର ଉତ୍କଟ ଦୁର୍ଗନ୍ଧ ମୋ ଘ୍ରାଣେନ୍ଦ୍ରିୟକୁ ବିବ୍ରତ କରୁଥାଏ । ଏତିକି ବେଳକୁ ବଣୁଆ ମଶାମାନେ ମୋ ଉପରେ ଅତ୍ୟାଚାର ଆରମ୍ଭ କରିଥାନ୍ତି । ମୁଣ୍ଡଉପରେ ବିରୁଡ଼ି ବସାଟିଏ ଦେଖିଥିଲି । ସାମାନ୍ୟ ହଲ୍‌ଚଲ୍ ହେଲେ ବିରୁଡ଼ିମାନେ ଆକ୍ରମଣ

କରି ବସିବେ। ନିକଟସ୍ଥ ଅନ୍ୟ ପାଖରୁ ବନହସ୍ତୀର ପିଁକାର ମୋ ରକ୍ତକୁ ଜମାଟ ବାନ୍ଧୁଥିଲା। କଅଁଳ ହାତୀଛୁଆମାନଙ୍କୁ ଦନ୍ତାହାତୀ ଓ ମା' ହାତୀର ଆତଙ୍କ ଆହ୍ୱାନ-ଶତ୍ରୁ ଖୁବ୍ ନିକଟରେ, ସାବଧାନ ରୁହ।

କିଛି ସମୟ ଅନ୍ତେ ଜହ୍ନ ଉଇଁଲା। ବୋଧହୁଏ କୃଷ୍ଣପକ୍ଷର ପଞ୍ଚମୀ ତିଥି, ଏଣୁ ଚନ୍ଦ୍ରାଲୋକ ଥିଲା କ୍ଷୀଣ। କିନ୍ତୁ ପୂର୍ବାପେକ୍ଷା ତଳ ଦୃଶ୍ୟ ହେଉଥିଲା ଯଦିଚ ଅସ୍ପଷ୍ଟ। ହଠାତ୍ ବୁଦା ଭିତରୁ କୁଦାମାରି ବାଘଟା ମୋ ଗଛ ମୂଳରେ ଠୁକା ହୋଇ ବସି ରହିଲା। ମୋର ପିଳେହି ପାଣି। ମୋତେ ଦେଖିନେଲା ବା ମୋର ଗନ୍ଧ ବାରିନେଲା ନା କ'ଣ? ଯଦି ବାଘ ଗଛ ଚଢ଼ିବା ଆରମ୍ଭ କରେ? ଗୋଟାପଣେ ଥରିବାକୁ ଲାଗିଲି। ଦେଖିଲି, ବାଘ ମୋ ଆଡ଼କୁ ପିଠି କରି ବସିଛି। ମୋ ପ୍ରତି ତା'ର ଲକ୍ଷ୍ୟ ନାହିଁ। ଗୁରୁ ଭୋଜନଟିଏ ଅବି ଶେଷ କରିଛି। ଦୁଇ ତିନିଟା ହାଇ ମାରି ଗଛ ମୂଳରେ ଚାରିଗୋଡ଼କୁ ମେଲି ଆରାମରେ ଶୋଇ ରହିଲା। ତା'ର ଆଚରଣର ରାଜକୀୟତା ମୁଁ ଲକ୍ଷ୍ୟ କରିଥିଲି। ବନର ରାଜା ସେ। ତା'ର ଭୟ କାହାକୁ?

ଗଛ ମୂଳରେ ବାଘ; ମୁଁ ଉପରେ। ଦୁର୍ଭାଗ୍ୟ ଦୂରବସ୍ଥା ବଖାଣିବାକୁ ଭାଷା ନାହିଁ। ଗଛ ଡାଳକୁ ଭଲ ଭାବେ କୁଣ୍ଢାଇ ଧରି ଦେହକୁ ଚାପି ରଖିଲି। ଗଛରୁ ଖସି ନ ପଡ଼ି ସାହସର ସହିତ ବସି ରହି ପାରିଥିଲି। ଏବେ ସେ କଥା ମନେ ପଡ଼ିଲେ ନିଜକୁ ନିଜେ ବଧେଇ ନ ଦେଇ ରହି ପାରେନି। ସେ ସାହସ ଟିକକ ନ ଥିଲେ, ଆଜି ହୁଏତ ଏ ଆତ୍ମକଥା ବର୍ଣ୍ଣନା କରିବାକୁ ମୁଁ ନ ଥାନ୍ତି।

ଦୁଇଟା ଗଧିଆ ଖେଣ୍ଟିଆଖେଣ୍ଟି ଲାଗି ବାଘର ଉଚ୍ଛିଷ୍ଟ ଖାଦ୍ୟକୁ ପ୍ରସାଦ ମଣି ଖାଇବାକୁ ଲାଗିଲେ। ରାତି ଶେଷ ହେଲା। ଗଛ ଗହଳ ଭିତରୁ ବାହାରି ସୂର୍ଯ୍ୟ ଆକାଶକୁ ମୁଣ୍ଡ ଟେକିଲେ। ବାଘ ସ୍ଥାନ ଛାଡ଼ି କେତେବେଳେ ଚାଲି ଯାଇଥିଲା। ମୋ ଗୋଡ଼ ହାତ ସବୁ କାଠ ପରି ଠେଙ୍ଗା। ମାଂସପେଶୀ କଠିନ ହୋଇଥିଲା। ପାଟି ଫିଟୁ ନ ଥିଲା। ତଣ୍ଟି ଖୋଲୁ ନ ଥିଲା। ଆଦିବାସୀ କାଠୁରିଆ ଦୁଇଜଣ କାନ୍ଧରେ କୁରାଢ଼ି ଥୋଇ ସେଇ ବାଟେ ଯାଉଥିଲେ। ଦମ୍ ନେଇ ଚିତ୍କାର କଲି। ସେମାନେ ଦୁହେଁ ଚକିତ ଆଖିରେ ମୋତେ ଚାହିଁଲେ। ବାବୁ ପିଲାଟିର ଏମନ୍ତ ଦୁରବସ୍ଥା ଦେଖି ବ୍ୟସ୍ତ ହୋଇପଡ଼ିଲେ। ସେମାନଙ୍କ ସାହାଯ୍ୟରେ ବହୁ କଷ୍ଟରେ ଗଛରୁ ଓହ୍ଲାଇଲି। ଶରୀରରେ ଶକ୍ତି ନ ଥିଲା। ନିସ୍ତେଜ, ଦୀପ୍ତିହୀନ ମୁହଁ। ପୁରା ଆଲିକିଆ ହୋଇପଡ଼ିଥିଲି। ସେମାନେ ତତ୍ପର ହୋଇ କାଠରେ ନିଆଁ ଲଗେଇ ମୋତେ ସେକି ବସିଲେ। ଟିକିଏ ବଳ ଆସିଲା ଦେହକୁ। ଲାଉ ତୁମ୍ବାରେ ସେମାନେ ଖଜୁରୀ ରସ (ନୀରା) ରଖିଥିଲେ। ମୁହଁ ଲଗାଇ ପିଇଲି। ଦମ୍ ମାରିଲି। ସଙ୍କଟ ସମୟରେ ଲୋକ ଦୁଇ ଜଣଙ୍କର ଅଶେଷ ସାହାଯ୍ୟ ପାଇଥିବାରୁ କୃତଜ୍ଞତା ଜଣାଇଲି। ଦୁର୍ଦ୍ଦଶାର କାରଣ କାଣି ସେମାନେ ମୋତେ

ସାବଧାନବାଣୀ ଶୁଣାଇଥିଲେ। ଜଙ୍ଗଲର ବାଟ ନ ଜାଣି ଏପରି ବେପରବାୟ ଭାବେ ବୁଲିବା ସର୍ବାଦୌ ବର୍ଜନୀୟ। ଦୃଷ୍ଟିର ଅସାବଧାନତା ପଥଭ୍ରଷ୍ଟର କାରଣ। ଅଜଣା ଜଙ୍ଗଲ ଭିତରେ ଅଗ୍ରସର ହେବାକୁ ହେଲେ ଗୋଟିଏ ଗଛର କଞ୍ଚା ଡାଳପତ୍ର ଯିବା ବାଟରେ ଚିହ୍ନ ସ୍ୱରୂପ ପକାଇ ପକାଇ ଯିବାକୁ ହୁଏ ବୋଲି ଜଙ୍ଗଲ ତଥ୍ୟର ପ୍ରଥମ ଶିକ୍ଷା ଲାଭକଲି। ଆଦିବାସୀ ଦ୍ୱୟଙ୍କର ନିଃସ୍ୱାର୍ଥପର ସାହାଯ୍ୟ ଜୀବନରେ କେବେ ଭୁଲି ପାରିବି ନାହିଁ। ସେମାନଙ୍କର ନାମ ଏବଂ ଠିକଣା ଅଦ୍ୟାପି ମୋ ଶିକାର ଡାଏରୀରେ ଉଲ୍ଲିଖିତ। ଜଣକର ନାମ ମଙ୍ଗୁ ଓ ଅନ୍ୟ ଜଣଙ୍କର ପଓ୍ୱନ। ପରବର୍ତ୍ତୀ ଜୀବନରେ ଅନେକ ଥର ଚେଷ୍ଟା କରିଛି ସେମାନଙ୍କୁ ସାକ୍ଷାତ କରିବା ପାଇଁ; କିନ୍ତୁ ଅସମ୍ପୂର୍ଣ୍ଣ ଠିକଣା ପ୍ରତିବନ୍ଧକ ହୋଇଛି। ଯାହା ହେଉ, ସେଦିନ ସେମାନଙ୍କ ସହାୟତାରେ ବଣଭୋଜିର ସ୍ଥାନକୁ ଅକ୍ଳେଶରେ ଆସି ପହଞ୍ଚିଲି। ଦିନ ୧୦ଟା ସମୟ ହେବ। ଭୋଜି ସ୍ଥାନର ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ। ହଣ୍ଡା, ବାଲ୍‌ଟି, ଡେକ୍‌ଚି ଆଦି ସବୁ ଜିନିଷ ଇତସ୍ତତଃ ହୋଇ ପଡି ରହିଥିଲା। କ'ଣ ହେଲା ଏମାନଙ୍କର ?

କେତେଗୁଡ଼ିଏ ଲୋକ ଏକତ୍ରିତ ହୋଇ ଭୋଜି ସ୍ଥାନ ଆଡ଼କୁ ଆସୁଥିବାର ଲକ୍ଷ୍ୟ କଲି। ଦେଖିଲି ବାଙ୍କୀରୁ ଥାନା ଅଫିସର, ତହସିଲଦାର, ରେଭିନ୍ୟୁ ଅଫିସର ଏବଂ ହେଡ୍‌ମାଷ୍ଟର ଫକୀରମୋହନ ପଟ୍ଟନାୟକ ଆଦି ଅନେକ ଶିକ୍ଷକ ଘଟଣାସ୍ଥଳରେ ଉପସ୍ଥିତ ହେଲେ। ସେମାନଙ୍କ ସହିତ ବନ୍ଧୁକଧାରୀପୋଲିସ ଦୁଇଜଣ। ସେମାନେ ମୋତେ ଦେଖି ବିସ୍ମିତ ହେଲେ ଏବଂ ଅତି ଆନନ୍ଦରେ କୁଣ୍ଢାଇ ପକାଇଲେ। ସେମାନଙ୍କର ଧାରଣା ଭୁଲ ଥିଲା, ତଥ୍ୟ ବିଭ୍ରାନ୍ତିକର। ଏ ଅଞ୍ଚଳରେ ବାଘ ମାତିଥିବାର ଗୁଜବ ଶୁଣିଥିଲେ ଏବଂ ମୋର ଆକସ୍ମିକ ଅନ୍ତର୍ଦ୍ଧାନ ସାଙ୍ଗକୁ ଗତ ସନ୍ଧ୍ୟାରେ ବାଘ ହେଣ୍ଟାଳ, ସେମାନଙ୍କର ଧାରଣା ଦୃଢ଼ କରିଥିଲା। ମଣିଷଖିଆ ବାଘ ସମ୍ବନ୍ଧରେ ପୋଲିସ ଅଲିଖିତ ସମ୍ବାଦ ପାଇଥିଲେ ଆଗରୁ। ଏଣୁ ମୋତେ ଯେ ବାଘ ଗତ ସନ୍ଧ୍ୟାରୁ ଖାଇ ଯାଇଛି, ଏଥିରେ କାହାର ସନ୍ଦେହ କରିବାର ଅବକାଶ ନ ଥିଲା। ମୋ ବଡ଼ବାପାଙ୍କର ଅନୁରୋଧ ଏବଂ ବୋଉର ତଣ୍ଟିଫଟା ବିକଳ ବିଳାପ ଏହି ଉଚ୍ଚକ୍ଷମତାସମ୍ପନ୍ନ ଉଦ୍ଧାରକାରୀ ଦଳଙ୍କୁ ମୋ ମର ଶରୀର ଖୋଜିବା ପାଇଁ ପଠା କରାଇଥିଲା। ନରହନ୍ତା ବାଘକୁ ଜବତ କରିବା ପାଇଁ ଶାସନ କର୍ତ୍ତୃପକ୍ଷଙ୍କ ତତ୍ପରତା ଉପଲବ୍ଧି କରିଥିଲି। କିନ୍ତୁ ମୁଁ ଯେଗୋଟାକଯାକ ବଞ୍ଚିଛି, ଏହା ଥିଲା ପରମାଶ୍ଚର୍ଯ୍ୟର ବିଷୟ। ଆଉ ଗୋଟିଏ କଥା, ମୋ ପାଇଁ କୁଆଡ଼େ ସେମାନେ ସ୍କୁଲ ପ୍ରାଙ୍ଗଣରେ ଶୋକସଭା ପାଳନ କରି ସିଧା ଏ ସ୍ଥାନକୁ ଆସିଥିଲେ। ଛାଡ଼ି ଯାଇଥିବା ଜିନିଷଗୁଡ଼ିକ ଗୋଟେଇ ନେବା ଅନ୍ୱେଷଣର ଥିଲା ଦ୍ୱିତୀୟ କାରଣ। ଯାହା ହେଉ, ଶୋକସଭା ଦ୍ୱାରା ମୋର ଆୟୁଷ ଯେ ବୃଦ୍ଧି ପାଇଛି, ସେମାନେ ମୋତେ କହିଥିଲେ। ମୁଁ ପ୍ରଗଲ୍‌ଭ ହୋଇ ସେମାନଙ୍କ ଆଗରେ ଗତ ରାତିର ଅନୁଭୂତି ବର୍ଣ୍ଣନା କରି ଚାଲିଥିଲି।

ଭୋଜି ସାମଗ୍ରୀଗୁଡ଼ିକ ଏପରି କାହିଁକି ଫିଙ୍ଗି ପଳାଇଥିଲେ ବୋଲି ପଚାରିଲି। କାରଣ ଶୁଣି ହସି ହସି ଫାଟି ପଡ଼ିଥିଲି। ଏବେ ମଧ୍ୟ ସେ କଥା ମନରେ ପଡ଼ିଲେ ହସର ସୁଅକୁ ନିୟନ୍ତ୍ରଣ କରିପାରେ ନାହିଁ। ଘଟଣାଟି ଏଇପରି- ପଶ୍ଚିମାକାଶରେ ଅସ୍ତଗାମୀ ସୂର୍ଯ୍ୟ। ମୋତେ ବହୁତ ସମୟ ଅପେକ୍ଷା କଲେ ସେମାନେ। ମୁଁ ନଆସିବାରୁ ସମସ୍ତେ ଧାଡ଼ି ବାନ୍ଧି ଖାଇ ବସିଲେ। ଯେତେବେଳେ ମହାବଳ ବାଘଟା ହେଣ୍ଟାଳିଲା, ଜଣାଗଲା ସେ କାଳିଶୁଣୀ ପାହାଡ଼ର ଖୁବ୍ ନିକଟରେ। ବେଳ ରତରତ। ବାଘ ଗର୍ଜନ ଶୁଣି ସମସ୍ତେ ଭୟରେ କଣ୍ଠାପାଣି। ଅଧା ଖିଆରୁ ଯେ ଯୁଆଡ଼େ ଉଠି ପ୍ରାଣ ବିକଳରେ ଟ୍ରକ୍ ପାଖକୁ ଧାଇଁଲେ। କେଇଟା ମଧ୍ୟ ଖଣ୍ଡିଆଖାବରା ହେଲେ। ସେଇ ଅଗଁଠା ହାତରେ ଡ୍ରାଇଭର ଗାଡ଼ି ଷ୍ଟାର୍ଟ କରିଦେଲା। କିଏ ଆସିଲା, ନ ଆସିଲା ତା'ର ବା ହିସାବ ରଖୁଛି କିଏ? ନିଜ ଜୀବନ ଯେଉଁଠି ବିପନ୍ନ; ପର କଥା ଚିନ୍ତା କରିବାକୁ ବେଳ କାହିଁ? ଆମ ନଟିଆ ସାର୍‌ଙ୍କର ଖାଇବା ପୂର୍ବରୁ ମଳତ୍ୟାଗ କରି, ପେଟକୁ ଭଲ ଭାବେ ସଫା କରି, ପାକସ୍ଥଳୀକୁ ସମ୍ପୂର୍ଣ୍ଣ ଖାଲି କରି ଖାଦ୍ୟଖାଇବାର ଅଭ୍ୟାସ। ମାଂସଲୋଭୀ ତ! ଏଣୁ ସେ ପଙ୍‌କ୍ତି ଭୋଜନରେ ବସି ନ ଥିଲେ। ଗାମୁଛା ପାଳଟି ବୁଦା ଭିତରକୁ ଝାଡ଼ା ଯାଇଥିଲେ। ଏତିକିବେଳେ ବାଘ ଗର୍ଜନ ଶୁଣିଲେ। ଆଉ ଶୌଚ ହେବେ କ'ଣ? ସେଇ ହଗୁରା ଦେହରେ ଟ୍ରକ୍ ଆଡ଼କୁ ଦ୍ରୁତ ଗତିରେ ଧାବିତ। ଦୁର୍ଭାଗ୍ୟକୁ କଣ୍ଟାବୁଦାରେ ଗାମୁଛାଟି ଲାଗି ଦେହରୁ ଅଲଗା ହୋଇଯାଇଥିଲା। ଲଙ୍ଗଳା ଦେହରେ ଟ୍ରକ୍ ଉପରକୁ ଉଠିଥିଲେ। ଦୁଇ ହାତ ପାପୁଲିରେ ଦେହର ଗୁପ୍ତାଙ୍ଗଟିକୁ ଲୁଚାଇବାର ଅପେଚେଷ୍ଟା କରିଥିଲେ। କାହାର ସେ ଦିଗକୁ ଲକ୍ଷ୍ୟ ନ ଥିଲା। ନିଜ ନିଜ ଜୀବନ ରକ୍ଷା କରିବାକୁ ସମସ୍ତେ ବ୍ୟାକୁଳ ଥିଲେ। କିଛି ବାଟ ଟ୍ରକ୍ ଚାଲିଲା ପରେ ଜନୈକ ଛାତ୍ର ନିଜ ଦେହରୁ କାମିଜଟିଏ ଖୋଲି ନଟିଆମାଷ୍ଟଙ୍କ ଲଜ୍ଜା ନିବାରଣ କରିଥିଲା।

ଆଜିର ଉଦ୍ଧାରକାରୀଦଳ ଭିତରେ ନଟିଆ ମାଷ୍ଟ୍ରେ ଥିଲେ ଅନ୍ୟତମ। ଅନ୍ୟମାନେ ବାଲ୍‌ଟି, ହଣ୍ଡା, ଦରି ଗୋଟାଉ ଥିଲାବେଳେ, ସେ ସାମାନ୍ୟ ଦୂରରେ ରଖିଥିବା ତାଙ୍କ ପ୍ୟାଣ୍ଟସାର୍ଟ ସଂଗ୍ରହ କରୁଥିବାର ଦେଖାଯାଇଥିଲା। ତାଙ୍କ ମୁହଁରେ ଥିଲା ଅସ୍ଫୁଟ ଭାଷା, ବାଘ ପ୍ରତି ଅଶ୍ଳୀଳ ଗାଳିଗୁଲଜ ଏବଂ ନିଜ ଭୁଲ୍ ପ୍ରତି ନିଜକୁ ତିରସ୍କାର- ବନ୍ଧୁକଟିକୁ କାହିଁକି ବଣଭୋଜିରେ ଆଣି ନ ଥିଲେ। ସତେ ଯେମିତି ଅସ୍ତ୍ରଟି ହାତରେ ଥିଲେ ବୀର ପୁଙ୍ଗବ ଭଳି ବାଘ ସଙ୍ଗେ ଲଢ଼େଇ କରି ପାରିଥାନ୍ତେ! ଯାହା ହେଉ, ସେ ଦିନ ତାଙ୍କ ମୁହଁରୁ ପ୍ରତୀୟମାନ ହେଉଥିଲା ଅନୁଶୋଚନାର ତୀବ୍ର ଯନ୍ତ୍ରଣା।

◆

ଆଜି ଏ ଚିର୍ମରା ଅଞ୍ଚଳରେ ବାଘର ପ୍ରକୋପ ଓ ତା'ର ପରାକ୍ରମ କ୍ରମଶଃ ବୃଦ୍ଧି ପାଇବାରୁ ଲୋକେ ଏଠାକାର ଭୂମ୍ୟାଧିପତି ଗୌନ୍ତିଆଙ୍କର ଚରଣାଶ୍ରିତ ହୋଇଥିଲେ। ସେ ଅଞ୍ଚଳର ବାପା ମା', ଅନ୍ଧାରିମୂଳକର ମଣ୍ଡଳାଧିକାରୀ। ବିପଦ ବେଳେ ସେ ହିଁ ହର୍ତାକର୍ତ୍ତା, ତାଙ୍କର ବନ୍ଧୁକ ସହାୟ- ଲୋକମାନଙ୍କର ଭରସା। ସେ କିନ୍ତୁ ଜାଣନ୍ତି, ନିଜର ସକ୍ଷମତା। ଲୋକମାନେ ସମବେତ ହୋଇ ଶର୍ମାଙ୍କୁ ଗୁହାରି କଲେ। ବାଘ ତ ସମସ୍ତଙ୍କ ଶତ୍ରୁ। ଶର୍ମା ବା କେମନ୍ତ ଏଡାଇ ପାରିବେ ଜନତାର ଆର୍ତ୍ତ ନିବେଦନ। ଅଗତ୍ୟା ବାଘକୁ ନିଜେ ମାରିବାକୁ ରାଜି ହୋଇଗଲେ, ଭୀତ ଜନତାକୁ ଅଭୟ ବାଣୀ ଶୁଣାଇଲେ। ଅଣ୍ଟାଭିଡ଼ି ବାହାରି ପଡ଼ିଲେ ଜନତାର ଅନୁରୋଧକ୍ରମେ। କେଜାଣି କାହିଁକି ଗୋଠବାହୁଡ଼ା ଗାଈଦଳ ଉପରେ ଦୁର୍ବୃତ୍ତ ବାଘର ଦୁଷ୍ଟ ଦୃଷ୍ଟି। ବାଘ ଭୟରେ କିଛିଦିନ ହେଲା ଗାଈମାନଙ୍କୁ ଜଙ୍ଗଲ ଭିତରକୁ ଛଡ଼ା ଯାଉ ନ ଥିଲା। ଶର୍ମା ଅଭୟ ଦେଲାରୁ ସବୁ ଗାଈଙ୍କୁ ଏକତ୍ର କରି ଜଙ୍ଗଲ ଭିତରକୁ ଚରିବାକୁ ଛାଡ଼ିଦେଲେ। ଶର୍ମା ସଦଳବଳ ବାହାରି ପଡ଼ିଲେ ଗୋଠ ସହିତ। ନିଜ ହାତରେ ବନ୍ଧୁକ ଥିଲା। କିନ୍ତୁ ଏକ ପରମ ସୁଯୋଗକୁ ହାତଛଡ଼ା କରି ବସିଲେ। ଫେରିଲା ବେଳକୁ ସତକୁ ସତ ଗୋଠ ଭିତରକୁ ବାଘ ଝଡ଼ ଭଳି ମାଡ଼ି ଆସୁଥିବାର ଦେଖିଲେ ଗୋଠ ମଝିରେ ରହି। ଚିମା ଭୋତ୍ରା ତ ଆଉ ନ ଥିଲା ଏ ସଂସାରରେ, କିନ୍ତୁ ପାଖେ ପାଖେ ଥିଲେ ଧାରୁଆ ଅସ୍ତ୍ରଧାରୀ ଶର୍ମାଙ୍କ ଦୁଇଜଣ ଟହଲିଆ ଠିକ୍ ତାଙ୍କ ଦେହରକ୍ଷୀ ଭଳି। ଏ ଟହଲିଆ ଦୁଇଜଣ ଶର୍ମାଙ୍କ ବୋଲହାକ କରନ୍ତି, ଜମିବାଡ଼ିର ଭଲମନ୍ଦ ତଦାରଖ କରନ୍ତି; ଅମଳ ବୁଝନ୍ତି, ବେପାର ସମ୍ଭାଳନ୍ତି, ଗୁମାସ୍ତା ଭଳି କାମ କରନ୍ତି, ରହନ୍ତି ଶର୍ମାଙ୍କ ଘରେ। ଶର୍ମାଙ୍କ ଛୋଟ ଦୋକାନ ଥାଏ। ଦୋକାନ ବୋଇଲେ ସେମିତି କିଛି ଆଖି ଦୃଶିଆ ଘର ବା କ୍ୟାବିନ୍ ନାହିଁ। ତାଙ୍କ ଦାଣ୍ଡ ଘରଟି ଏକ କ୍ଷୁଦ୍ର ଦୋକାନର ଭୂମିକା ଗ୍ରହଣ କରିଥାଏ। ସେ ସେଥିରେ ସବୁଠୁଁ ଆବଶ୍ୟକ ପଦାର୍ଥ- ଲୁଣ, କିରାସିନି, ତେଲ ରଖିଥାନ୍ତି। ତା' ସାଙ୍ଗକୁ ଧୂଆଁପତ୍ର, ଦୁକୁତା, ବିଡ଼ି

ଏବଂ ଦିଆସିଲି। ଦୋକାନ ପାଇଁ ପଣ୍ୟ ପଦାର୍ଥ ଆମଦାନି କରନ୍ତି ଦୂର ହେମଗିରି ସଦର ମହକୁମାରୁ। କୌଣସି ଯାନବାହନ ଏପରିକି ଶକଟରେ ମଧ୍ୟ ଗିରିପଥ ଦେଇ ଜିନିଷ ଆଣିବା ସମ୍ଭବ ନୁହେଁ। ପରିବହନ କାର୍ଯ୍ୟରେ ବିନିଯୋଗ କରିଥାନ୍ତି ତାଙ୍କର ଥୋଡ଼ିଆ ବଳଦ କେତୋଟି। ବଳଦ କାନ୍ଧର ଉଭୟ ପାର୍ଶ୍ୱରେ ଝୁଲା ଯାଇଥାଏ ପଦାର୍ଥପୂର୍ଣ୍ଣ ଟିଣ ଡବା ଅବା ବସ୍ତା। ଯାତୁ ସେ ବୋହି ନିଅନ୍ତି ଲୋକଙ୍କଠୁ ସଂଗୃହୀତ ବନ୍ୟଜାତ ଦ୍ରବ୍ୟ ବା କୃଷି ପଦାର୍ଥ। ବଦଳ ସୂତ୍ରରେ ହେମଗିରିଠାରୁ ଘେନି ଆସନ୍ତି ଆବଶ୍ୟକ ସାମଗ୍ରୀ। ଏଠି ସେର, କିଲୋ ପଲାର ବ୍ୟବହାର ନାହିଁ, ବାପଅଜା କାଳରୁ ଚଳି ଆସୁଛି ମୁଠି, ମାଣ, ଡିବାର ପରିମାଣ। ଟଙ୍କା ପଇସାର ଚଳଣି କ୍ୱଚିତ। ଚୌଦ ଖଣ୍ଡ ମୌଜାର ଅରଣ୍ୟବାସୀ ସାଉକାର-ଗୌନ୍ତିଆଙ୍କ ଏହି ପୈତୃକ ବଣିଜ ଉପରେ ନିର୍ଭରଶୀଳ।

ଶର୍ମାଙ୍କର ଏହି ଟହଲିଆ ଦେହରକ୍ଷୀ ଦୁଇଜଣ- ମନୁଆ ଓ କାହ୍ନୁଆ- ଜଙ୍ଗଲର ଧାର ଧାରନ୍ତି ନାହିଁ। ହେମଗିରି ଅଞ୍ଚଳରୁ ଆସି ଶର୍ମାଙ୍କ ସହିତ ରହି ଆସିଛନ୍ତି ହେତୁ ପାଇବା ଦିନରୁ। ସ୍ୱୟଂ ଶର୍ମା ଯେତେବେଳେ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ, ସେମାନେ ବାଧ ହୋଇ ମାଲିକଙ୍କ ସୁରକ୍ଷା ପାଇଁ ବାହାରି ପଡ଼ିଥିଲେ। ସେଦିନ ବାଘଟା ପ୍ରକୃତରେ ଜୋର୍ ଗର୍ଜନ କରି ଗୋଠ ଭିତରକୁ ଝାମ୍ପ ଦେଲା, ଯାହା ଅନିଷ୍ଟ ଉପଦ୍ରବ କରିବାର ଥିଲା ନିର୍ବିରୋଧରେ କରିଗଲା। ଶର୍ମା କେବଳ ବାଆକୁ ବତା ଭଳି ବିପଦର ବଳୟ ଭିତରେ ରହିଥିଲେ, ଉଭୟ ପାର୍ଶ୍ୱରେ ତାଙ୍କର ଅସ୍ତ୍ରଧାରୀ ଗୃହରକ୍ଷୀ ଦି'ଜଣ। ସେ କିଛି ନ କରିପାରି, ଭୟରେ ପାହାଡଟିଏ ପରି ଛିଡ଼ା ହୋଇ ରହିଥିଲେ। ସୌଭାଗ୍ୟକୁ ମଣିଷ ଉପରେ ବାଘର ଲକ୍ଷ୍ୟ ନ ଥିଲା, ତା'ର ନଜର ବାଛୁରି, ଛଡ଼ା ବା ଛେଳି ଉପରେ। କେତୋଟି ଛଡ଼ା ଓ ଛେଳିଙ୍କୁ କ୍ଷତ ବିକ୍ଷତ କଲା ଏବଂ ବାଛୁରି ଘୋଷାଡ଼ି ନେଇ ନଟା ଭିତରେ ପଶିଗଲା। ବାଘ ତା କାମ ସାରି ଚାଲିଯିବା ପରେ ଶର୍ମା ସଫେଇ ଦେଲେ- ପୁରୁଣା ବାରୁଦ ନିଆଁ ଧରିଲା ନାହିଁ। ଏକଥା ପ୍ରକାଶ କଲାବେଳକୁ ତାଙ୍କ ଗୋଡ଼ ଥରୁଥିଲା, ଦେହ ବିବାକେ ଝାଳରେ ବୁଡ଼ି ଯାଇଥିଲା। ସେ ଅନୁତପ୍ତ ମନେ ହେଉଥିଲେ। ଟହଲିଆ ମନୁଆ ତାଙ୍କ କଥାକୁ ପାଳି ଧରି କହିଲା- "ଯେ ବାଘ ନୁହେଁ; ସାକ୍ଷାତ କଳି। କଳିକୁ ଛାର ବନ୍ଧୁକ କ'ଣ କରିବ? ଯାହାକୁ ଭୈରବ ଡାକିବ, ତା'ର ନିଶ୍ଚିତ ମରଣ ଜାଣ। କଳିକୁ ମାରିବା ଚିନ୍ତା କରିବାକୁ ମାନେ ଇଁ କାଳ! ଏଥର ଚୁପ୍‌ଚାପ୍ ରହ!"

ମଣିଷ ନିଜ ବଳ ନିଜେ ହିଁ ଜାଣିଥାଏ। ପର କଥାରେ ପାଣିକୁ ଡେଇଁବା ଭଳି ଘଟଣାଟିଏ ଘଟିଗଲା। ମରିବାକୁ ଆଉ କେତେ ସମୟ ଡେରି ଥିଲା ଯେ! ଶର୍ମା ଚିନ୍ତିତ, ବ୍ୟଥିତ, ବିବ୍ରତ ହେଲେ। ଏଠି ମରଣ ଯନ୍ତା ଭିତରେ ମଣିଷ ବାସ କରୁଛି। ତାଙ୍କ ଗୋସମ୍ପଦ ବିପନ୍ନ। ଚାଷବାସ, ବଣିଜରେ ଘୋର ବ୍ୟାଘାତ ସୃଷ୍ଟି ହେଲାଣି। ବାଘକୁ ଯଦି ତୁରନ୍ତ ହତ୍ୟା କରା ନ ଯାଏ ସଙ୍କଟ ବଢ଼ି ଚାଲିବ, ସେ ହେବେ ସବୁଠୁଁ

ବେଶୀ କ୍ଷତିଗ୍ରସ୍ତ। ବାଘ କ୍ରମଶଃ ମଣିଷ ମାରିଲାଣି। ଚିମା ଭୋତ୍ରାର ଜୀବନ ବାଘ ମୁହଁରେ ଗଲା। ଦିନବେଳେ ମଧ୍ୟ ବାଘ ଉତ୍ପାତ କଲାଣି- ଖବର ମିଳୁଛି। ତା'ର ଆଉ କାହାକୁ ଭୟଭ୍ରାନ୍ତି ନାହିଁ। ଲୋକଙ୍କୁ ଖାତିର ନାହିଁ, ମୁହଁ ବଢ଼ିଗଲାଣି। କାହା ଜୀବନଟା କେତେ ବେଳେ ବାଘ ମୁହଁରେ ଯିବ, କିଏ କହିପାରିବ ?

ଏଣୁ ଶର୍ମା ବ୍ୟସ୍ତ ହୋଇ ଆମ ପାଖକୁ ତ୍ରାଣବାର୍ତ୍ତା ପଠାଇଥିଲେ ପତ୍ର ମାଧ୍ୟମରେ।

ଚିମା ଭ୍ରୋତାକୁ ବାଘ ମାରିଲା କିପରି ଶୁଣିବା ପାଇଁ ମୁଁ ଅତ୍ୟନ୍ତ ଉଦ୍‌ଗ୍ରୀବ ଥିଲି। ସେ ଏ ଅଞ୍ଚଳର ପ୍ରଥମ ବ୍ୟକ୍ତି, ଯିଏ ବାଘ ଦ୍ୱାରା ମୃତ୍ୟୁବରଣ କଲା। ଦୁର୍ଭାଗ୍ୟ। ଯେଉଁ ବ୍ୟକ୍ତିଟି ଶିକାରୀମାନଙ୍କ ସହିତ ନିବିଡ଼ ଭାବେ ସମ୍ପୃକ୍ତ, ଶିକାରୀର ସହଚର ଏବଂ ଜନ୍ତୁମାନଙ୍କ ଆତଯାତ, ହାବଭାବ, ଆକାର, ଆକୃତି, ପ୍ରକୃତି, ରହିବା ସ୍ଥାନ ଆଦିର ନିର୍ଭୁଲ ଚିତ୍ର ଓ ତଥ୍ୟ ଦେଇପାରେ ଜଙ୍ଗଲର କୀଟ କହିଲେ କିଛି ଭୁଲ ହେବ ନାହିଁ, ସେ ପୁଣି ଭଗ୍ୟର ବିଡ଼ମ୍ବନାରେ ସିନା ପ୍ରାଣ ହାରିଲା ! !

ଦୁଃଖଦ ଘଟଣାଟି ଥିଲା ଏଇପରି- ଚିମା ଭ୍ରୋତା ନିଜର ଗାଈ ସହିତ ଗୌନ୍ତିଆ ଶ୍ରୀଚରଣ ଶର୍ମାଙ୍କର ମଧ୍ୟ ବହୁ ଗାଈ ପାଳିଥାଏ ଭାଗ ସୂତ୍ରରେ। କେଲୁଆପଡ଼ା ଛେମୁଡ଼ି ପାହାଡ଼ର ପାଦ ଦେଶରେ ମଜବୁତ୍ କାଠର ବଡ଼ ଗୁହାଳଟିଏ ବନେଇଥାଏ ନୂଆଭାବେ। ଗୁହାଳର କବାଟ ମଧ୍ୟ ଶକ୍ତ କାଠରେ ନିର୍ମିତ। ଗୁହାଳ ନର୍ମାଣରେ ଗୌନ୍ତିଆ ବହୁ ସାହଯ୍ୟ କରିଥିଲେ- କାଠରୁ କୁଟା ପର୍ଯ୍ୟନ୍ତ। ଗୁହାଳଟିରେ ଥା'ନ୍ତି ବହୁ ଗାଈ ବାଛୁରୀ, ଛଡ଼ା, ଦାମୁଡ଼ି- କିଏ ଗର୍ଭିଣୀ, କିଏ ବା ସଦ୍ୟ ପ୍ରସବା। ଠିକ୍ ଗୁହାଳକୁ ଲାଗି ଚିମାର ଛଣ ଛପର ଘର। ଛେମୁଡ଼ି ପାହାଡ଼କୁ ଚିମା ଘର ପଛ କରିଛି। ସେଇଠୁ ବନସ୍ତର ବିବିଧ ବୃକ୍ଷଗୁଡ଼ିଏ ନିବିଡ଼ ଭାବେ ବଢ଼ିଥାନ୍ତି। ଅନତି ଦୂରରେ ପାହାଡ଼ି ଝରଣାଟିଏ ଖସି ଆସିଛି ତଳକୁ। ଝରଣାର ଝର ଉପରେ ଆଖପାଖର ବାସିନ୍ଦାମାନେ ନିର୍ଭର କରନ୍ତି। ଖରା ଦିନେ ଜଳଝର ଶୁଖିଗଲେ ବିଶେଷ କରି ଗୋପାଳକମାନେ ଅସୁବିଧା ଭୋଗନ୍ତି। ବର୍ଷାର ଆଗମନ ପର୍ଯ୍ୟନ୍ତ ଗାଁରୁ ଗୋଧନକୁ ନେଇ ଗାଈଆଳ ଜଙ୍ଗଲ ଭିତରେ ସାମୟିକ ବାସ କରେ ଯେଉଁଠି ମନ୍ଦିଏ ଜଳର ସୁବିଧା ଥାଏ। ଗାଁ କୂଅ ପୋଖରୀ ଶୁଖିଗଲେ ସମସ୍ତଙ୍କୁ ଦୂର ବାଟ ଯିବାକୁ ହୁଏ। ଗାଁ ମାଇପେ ଜଳ ଘଟ ମୁଣ୍ଡେଇ ମୁଣ୍ଡେଇ ମାଇଲ ମାଇଲ ଦୂରରୁ ଆସନ୍ତି। ପାର୍ବତ୍ୟ ପଲ୍ଲୀର ଏହି ଜଳକ୍ଲିଷ୍ଟ ବିରଳ ଦୃଶ୍ୟଟି ମୁଁ ବହୁବାର ସ୍ୱଚକ୍ଷୁରେ ଦେଖିଛି। ତେବେ ଗ୍ରୀଷ୍ମ ଉତ୍କଟ ହେଲେ ଏପରି ପରିସ୍ଥିତି ଉପୁଜେ।

ଛେମୁଡ଼ି ପାହାଡ଼ଠାରୁ ଚିର୍ମିରା ଗାଁ ଡାକେ ବାଟ। ଖୁବ୍ ପାଖରେ ବସତି ନାହିଁ। ଚିମା ଭୋତ୍ରା ସଂସାର ଗଢ଼ିଥାଏ ସେଇ ଝରଣା କୂଳ ପାହାଡ଼ ମୂଳ ନିରୋଳା ନିସ୍ତରଙ୍ଗ ଜାଗାଟିରେ। ଜଙ୍ଗଲର ମଣିଷ ସେ, ଜଙ୍ଗଲ ତା'ର ଜଗତ। ଘରେ କେବଳ ତା'ର ଯୁବତୀ ସ୍ତ୍ରୀ 'ଦୂରା'। ସେମାନଙ୍କ ବିବାହ ବେଶୀ ବର୍ଷ ହେବନି। ତେବେ କୌରସି

ଶିଶୁ ସେମାନଙ୍କ କୋଳ ମଣ୍ଡନ କରି ନାହିଁ। ଦାମ୍ପତ୍ୟ ଜୀବନ ଗଡ଼ି ଚାଲିଥାଏ। ପର୍ବତ ପଟରୁ ସୁରୁଯ ଉଏଁ, ଆକାଶରେ ଚାଲେ, ପୁଣି ଅସ୍ତ ହୁଏ ଆରପଟ ପର୍ବତ ଶଯ୍ୟାରେ। ବର୍ଷା ଆସେ ଓ ବସନ୍ତ ମଧ୍ୟ। ଚିମାର ସବୁ ସମାନ, ତା ଜୀବନରେ ଦୁରା ସମ୍ପୂର୍ଣ୍ଣ ସାମିଲ। ଗୋଟାଏ ଅର୍ଥ ଉଦ୍ଦେଶ୍ୟ ନେଇ ସେମାନେ ଛନ୍ଦି ବାନ୍ଧି ହୋଇ ନ ଥିଲେ। ମୁଷିପଡ଼ାର ଧାଙ୍ଗଡ଼ୀ 'ଦୁରା', ବନରୁ କାଠ ଆଣେ, ବାପ ସହିତ ବିଲରେ କାମ କରେ। କେଲୁଆପଡ଼ାର ଧାଙ୍ଗଡ଼ା 'ଚିମା'। ସେମାନଙ୍କୁ ବୟସ ଛୁଇଁଥିଲା, ଗୁନିଆର ପରାମର୍ଶ ଓ ସମ୍ମତିରେ ସେମାନେ ଦୁହେଁ ସଂସାର ତୋଳିଲେ ସଭିଙ୍କ ଭଳି। ଦୁରା ଘର ସମ୍ଭାଳେ, ପାଇଟି କରେ, ଗାଈ ଗୁହାଳ ପୋଛେ, ଭାତ ଫୁଟାଏ, ତିଅଣ କରେ, ଦି'ପହରେ ଚିମା ପାଇଁ ଖାଦ୍ୟ ନେଇ ଜଙ୍ଗଲକୁ ଯାଏ ଯେଉଁଠି ଗୋଈ ଗୋରୁଙ୍କର ଚାରଣ ଭୂଇଁଥାଏ। ଜଙ୍ଗଲରେ ଚିମା ଗାଈ ଜଗେ, ଦୁରା ସଂଗ୍ରହ କରେ ବନଜାତ ଦରବ- ଝୁଣା, ମହୁ, ମହୁଲ। ସଞ୍ଜ ହେଲେ ସ୍ୱାମୀ ସହିତ ଗୋଠ ଧରି ଘରକୁ ଫେରେ। ଏମିତି ସେମାନଙ୍କ ସଂସାର ବିତିଥାଏ ସବୁଦିନ।

ସେଦିନ ବେଳ ବୁଡ଼ନ୍ତେ ଗାଈମାନେ ସାଇତା ହେଲେ ଗୁହାଳ ଭିତରେ। ଦୁରା ଘରକୁ ଗଲା ଡିବିରି ଜାଳିବା ପାଇଁ ଏବଂ ଚିମା ଗଲା ଝରଣାକୁ ଧୂଆଧୋଇ ହେବା ପାଇଁ ସବୁଦିନ ଭଳି। ଏତିକି ବେଳେ ରୁଦ୍ଧ ଗୁହାଳ ଭିତରୁ ଶୁଭିଲା ଗାଈମାନଙ୍କର ହମ୍ବାରଡ଼ି।

" ଏ ମା, ଏ ତ କାଳର ରଡ଼ି!!"

ଡିବିରି ଜଳିଲାନି, ସେଥିରେ ତେଲ ନ ଥିଲା। ଦୁରା ଟାଙ୍ଗିଆ ଖୋଜିଲା, ଚିତ୍କାର କଲା। ବାଘ ଗୁହାଳ ଭିତରେ ପଶି ଉତ୍ପାତ ଆରମ୍ଭ କରି ଦେଇଛି। ବାଘ ଓ ଗାଈମାନଙ୍କ ଭିତରେ ଧସ୍ତାଧସ୍ତି, ଗର୍ଜନ, ଖାଦ୍ୟ ଓ ଖାଦକ ମଧ୍ୟରେ ଲଢ଼େଇ; ଆକ୍ରମଣ ଓ ଆତ୍ମରକ୍ଷାର ଗୋଟେ ଖଣ୍ଡଯୁଦ୍ଧ। ଚିମା ଆଉ ଗୋଡ଼ ହାତ ଧୋଇବ କ'ଣ, ହେମ୍ବାଳ ଓ ହମ୍ବାରଡ଼ି ଶୁଣି ଏକମୁହାଁ ହୋଇ ଦୌଡ଼ିଲା ଗୁହାଳ ଆଡ଼କୁ। କବାଟ ବନ୍ଦ ଥିବା ଦେଖି ଦୁର୍ଗତ ଗାଈମାନଙ୍କୁ ମୁକୁଳେଇବା ଉଦ୍ଦେଶ୍ୟରେ ଖୋଲିଦେଲା କିଳିଣି। ଦୁଆର ଖୋଲିବା ମାତ୍ରେ ତା ଉପରକୁ ଝାମ୍ପ ଦେଲା ଚିତା। ଚିମା ଥିଲା ଅପ୍ରସ୍ତୁତ, ନିରସ୍ତ୍ର। ସେ ଜାଣି ନ ଥିଲା ଯେ ଗାଈମାନେ ଗୁହାଳରେ ପଶିବା ପୂର୍ବରୁ ଚାଲାଖ ଚିତା ସେଠି ଆଗରୁ ଲୁଚି ରହିଥିଲା। ବାଘର ଗୋଟାଏ ଧକ୍କାରେ ସେ ଅଚେତ ହୋଇପଡ଼ିଲା। ଦୁରା ଟାଙ୍ଗିଆ ଧରି ଧାଇଁ ଆସୁ ଆସୁ ବାଘ ଚମ୍ପଟ। ଗାଈମାନେ ଭୟରେ ହେମ୍ବାଳୁଥା'ନ୍ତି। କେତୁଟା ବ୍ୟାଘ୍ରାହତ ଗୋରୁ ମୃତ୍ୟୁ ସହିତ ଶେଷ ସଂଘର୍ଷ କରୁଥା'ନ୍ତି। ଦୁରା ବୋବାଳି ଛାଡ଼ିଲା। ଚିମାର ପ୍ରାଣବାୟୁ ଉଡ଼ି ଯାଇଥିଲା ସଙ୍ଗେ ସଙ୍ଗେ। ସବୁ ଶେଷ। ଦୁରା ମୁଣ୍ଡ ପିଟି କାନ୍ଦିଲା। ଦୁରାଚାର ଚିତା ତା'ର ସର୍ବନାଶ କରିଛି। ଅକାଳରେ ସଂସାର ଉଜୁଡ଼ି ଯାଇଛି ତା'ର।

ଚିମା ଭୋତ୍ରାର କରୁଣ ମୃତ୍ୟୁ କାହାଣୀ ମୋତେ ମ୍ରିୟମାଣ କଲା। ଇଚ୍ଛା ହେଉଥିଲା ସେଇ ନରହନ୍ତା ଦୁର୍ଦ୍ଦାନ୍ତ ପଶୁଟାକୁ ଏକ୍ଷଣି ଗୁଳିବିଦ୍ଧ କରି ମୃତ୍ୟୁଦଣ୍ଡ ଦିଅନ୍ତି ଏବଂ ତା'ର ଟୁକୁଡ଼ା ଟୁକୁଡ଼ା ମାଂସ ଗ୍ରାମବାସୀଙ୍କୁ ଉପହାର ଦେଇ ହତ୍ୟାକାରୀର ଯଥୋଚିତ ପ୍ରତିଶୋଧ ନିଅନ୍ତି। କିନ୍ତୁ ଯାହା କ୍ରୋଧ ବଶତଃ ହଠାତ୍ ଚିନ୍ତା କରାଯାଏ, କାର୍ଯ୍ୟରେ ପରିଣତ କରିବା ସହସା ସମ୍ଭବ ହୁଏ ନାହିଁ। ସଫଳତା ପରିସ୍ଥିତିର ଅନୁକୂଳତା ଉପରେ ନିର୍ଭର କରିଥାଏ। ବାହାସ୍ଫୋଟ ମାରି କହିଦେବା ଖୁବ୍ ସହଜ, ଜିହ୍ୱାର ପ୍ରୟୋଗ ମାତ୍ର; କିନ୍ତୁ କାର୍ଯ୍ୟରେ ପରିଣତ କରିବାରେ ଥାଏ ଆକାଶ ପାତାଳ ପ୍ରଭେଦ- ମୁଁ ଏକଥା ଅଙ୍ଗେ ନିଭେଇଛି ବହୁବାର। ଏଣୁ ପାଷଣ୍ଡ ଜାନୁଆରଟା ପ୍ରତି ମନରେ ଯେତେ କ୍ରୋଧ ଆଉ କ୍ଷୋଭ ଆସୁଥାଏ; ସୁଯୋଗର କରୁଣା ପ୍ରତି ମୁଁ ଥାଏ ସେତିକି ଅପେକ୍ଷମାଣ। ସର୍ବ ସଫଳତା ନିମନ୍ତେ ସୁଯୋଗର ଅବଦାନ ଅନସ୍ୱୀକାର୍ଯ୍ୟ।

ଏଠାରେ କ୍ରମଶଃ ବାଘ ମଣିଷ ମାରିବା ଘଟଣା ମହାମାରୀ ଭଳି ବ୍ୟାପିଗଲା। ବାଘ ନରଖାଦକ ବନିଗଲା। ପ୍ରବଳ ଆକ୍ରୋଶରେ ସେ ଅତ୍ୟାଚାର କରି ବସିଲା ଯଥେଚ୍ଛାଚାରୀ ଭାବେ। ତା'ର ଲକ୍ଷ୍ୟ ମଣିଷମାନଙ୍କ ଉପରେ। ଶିଶୁ, ଯୁବକ, ଯୁବତୀ, ବୁଢ଼ା, ବୁଢ଼ୀ ଗାଏ ମୋଟ ଡଜନେରୁ ଅଧିକ ଜୀବନ ନେଇସାରିଲାଣି। ବାଘ ଆତଙ୍କ ଜାରି ରହିଛି ସର୍ବତ୍ର। ଏପରି ଦୁଃସ୍ଥିତିରେ ଆମେ ବନ୍ଧୁଦ୍ୱୟ ଆବିର୍ଭୂତ ହେଉଁ ଏହି ଦୁର୍ଗମ ଦୁର୍ଗତ ଅଞ୍ଚଳରେ।

ଶର୍ମାଙ୍କୁ ପାଖରେ ବସାଇ ଆଶ୍ୱସନା ଦେଲି। ଉପସ୍ଥିତ ଭୀତ ଜନତାଙ୍କୁ ପ୍ରବୋଧନା ଦେଇ ସାବଧାନତାର ମନ୍ତ୍ର ଶୁଣାଇଲି। ଯେକୌଣସି ମତେ ଦୁଷ୍ଟକୁ ଦମନ କରାଯିବ ବୋଲି ଦୃଢ଼ ପ୍ରତିଶ୍ରୁତି ଦେଲି।

ବାଘର ଉପଦ୍ରୁତ ଅଞ୍ଚଳ ପ୍ରାୟ କୋଡ଼ିଏ ପଚିଶ ବର୍ଗ ମାଇଲ ପରିବ୍ୟାପ୍ତ। ଏମାନେ ଗୋଟିଏ ଗୋଟିଏ ବନ ଅଞ୍ଚଳ ଆଦରି ନେଇ ବାସ କରନ୍ତି। ଅନ୍ୟ ବାଘ ଏହି ଅଞ୍ଚଳକୁ ପ୍ରବେଶ କରେନାହିଁ- ଏପରି ହେଲେ ଅନୁପ୍ରବେଶକାରୀ ସହିତ ଯୁଦ୍ଧ ହୋଇଥାଏ, ବିଶେଷ କରି ଅଣ୍ଡିରା ବାଘମାନେ ଲଢ଼ାଲଢ଼ି ହୁଅନ୍ତି। କିନ୍ତୁ ଏପରି ଘଟଣା ବିରଳ। ଋତୁ ସମୟରେ ବାଘ ବାଘୁଣୀ ଯୋଡ଼ି ହୋଇ ରହନ୍ତି ଦମ୍ପତି ଭଳି। ଅନ୍ୟ ପୁରୁଷ ବାଘ ଅଞ୍ଚଳରେ ଅନଧିକାର ପ୍ରବେଶ କଲେ ଉଭୟଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ ଅବଶ୍ୟମ୍ଭାବୀ। ଯେଉଁ ପୁରୁଷ ବାଘ ଲଢ଼େଇରେ ଜୟଯୁକ୍ତ ହୁଏ, ସେ ବାଘୁଣୀର ସାଥୀ ହୁଏ- ପରାଜିତ ବାଘ ଅଞ୍ଚଳ ଛାଡ଼ି ପଳାଏ। ସହବାସ ସମୟରେ ବିଶେଷ କରି ବାଘୁଣୀ ବେଶୀ ଉନ୍ମତ୍ତା ହୁଏ। କୌଣସି ପ୍ରକାର କୋଳାହଳ, ବିଘ୍ନ ବା ବାଧା ସେ ବରଦାସ୍ତ କରେ ନାହିଁ। ବରଂ ଉତ୍‌କ୍ଷିପ୍ତ ଏବଂ ଆକ୍ରମଣାତ୍ମକ ହୋଇ ଉଠେ। ଶରତ ଋତୁ ଶୀତର ଆରମ୍ଭ କାଳ ଏମାନଙ୍କ ସହବାସ ଋତୁ। ବାଘବହୁଳ ବନାଞ୍ଚଳମାନଙ୍କରେ ବନବାସୀ ମଣିଷମାନେ ଏହି ଋତୁରେ ବାଘ ପ୍ରତି ସାବଧାନତା ଅବଲମ୍ବନ କରିବା ଉଚିତ।

କିନ୍ତୁ ବାଘ ବନ ରାଇଜର ଜଣେ ବଳାବାନ ବାସିନ୍ଦା। ପାରିପାର୍ଶ୍ୱିକ ପରିସ୍ଥିତି ସହିତ ସେ ଆଜନ୍ମ ପରିଚିତ, ପରିବେଶ ସହିତ ସଂଶ୍ଳିଷ୍ଟ। ମଣିଷ ତା'ର ସାଧାରଣ ଭୋଜ୍ୟବସ୍ତୁ ନୁହେଁ। ବାଘର କୌଣସି କାରଣରୁ ମତିଭ୍ରମ ନ ହେଲେ ତା' କାର୍ଯ୍ୟକଳାପରେ ବ୍ୟତିକ୍ରମ ହୁଏ ନାହିଁ। ଅର୍ଥାତ୍ ବାଘ ପାଗଳ ହେଲେ ଯାଇ ମଣିଙ୍କୁ ଆକ୍ରମଣ କରେ ଠିକ୍ ପାଗଳ କୁକୁର ମଣିଷକୁ କାମୁଡ଼ିଲା ପରି। ଥରେ ମଣିଷ ମାଂସର ଗନ୍ଧ ଓ ସ୍ୱାଦ ପାଇଗଲେ ସେ ଆଉ ତାକୁ ଛାଡ଼େ ନାହିଁ। ତା'ର ଏଇ ସହଜଲବ୍ଧ ଶିକାର ପ୍ରତି ସେ ସଦା ଆକୃଷ୍ଟ ହୁଏ। ତେଣୁ ଯେଉଁ ଅଞ୍ଚଳରେ ବାଘମାନେ ବାସ କରନ୍ତି, ସେଠି ମଣିଷ ଶବକୁ ମୁକ୍ତ ଆକାଶ ତଳେ ଫିଙ୍ଗିଦେଇ ଆସିବା ସର୍ବାଦୌ ବର୍ଜନୀୟ। ଲାସ୍‌କୁ ପୋଡ଼ିବା ବା ପୋତିବା ଏକାନ୍ତ ଜରୁରୀ ହୋଇଥାଏ। ଏଇଭଳି କୌଣସି ଏକ କାରଣରୁ ଏଠି ବାଘ ମଣିଷଖିଆ ବନି ଯାଇଛି। ତେବେ ଯାହା ହେଉ, ତାକୁ ମାରିବା ପୂର୍ବରୁ ହିଂସ୍ର ପାଗଳ ଜାନୁଆର ପ୍ରତି ଯଥେଷ୍ଟ ସାବଧାନତା ଦରକାର। ଏସବୁ କଥା ଚିନ୍ତା କରି ମୁଁ ଭାବିଲି ପ୍ରଥମେ ଏ ଅଞ୍ଚଳରେ ଆଖପାଖ ଗାଁ ବସ୍ତିମାନଙ୍କର ଦୈନନ୍ଦିନ ଦୃଶ୍ୟ ଓ କାର୍ଯ୍ୟରେ ପରିବର୍ତ୍ତନ ଦିଶିବା ଦରକାର ଯାହା ବାଘକୁ ନୂଆ ଲାଗିବ କାରଣ ବାଘର ଫାଘକୁ ଭୟ। ନୂଆ ଜିନିଷ ପ୍ରତି ସେ ସତର୍କ ରହିବ, ଆକ୍ରମଣ କରିବାକୁ ଦ୍ୱିଧା କରିବ ଏବଂ ଲୋକମାନେ ମୁକ୍ତ ରହିବେ ତା' ଶ୍ୟେନ ଦୃଷ୍ଟିରୁ, ଅନ୍ତତଃ ତା'ର ମୃତ୍ୟୁ ହେବା ପର୍ଯ୍ୟନ୍ତ। କ'ଣ ନୂଆ ହୋଇପାରେ? ଚିନ୍ତା କରି ଫର୍ମୁଲା କାଢ଼ିଲି। କହିଲି- ପ୍ରତି ଗାଁ ମୁଣ୍ଡରେ ଓ ଶେଷ ଭାଗରେ ବଡ଼ ଆକାରରେ ରାବଣପୋଡ଼ି ମୂର୍ତ୍ତି ଭଳି ରଙ୍ଗ ଲୁଗାରେ ହୁରୁଡ଼ା ବନ୍ଧାଯିବ। ଏଠାରେ ମଧ କାଠର ଅଭାବ ନାହିଁ। ଶୁଖିଲା ଗର କାଠ ପ୍ରତି ଗାଁ ମୁଣ୍ଡରେ, ମଝି ଭାଗରେ ଓ ଶେଷରେ ଏବଂ ଉଚିତ ସ୍ଥାନାମାନଙ୍କରେ ସନ୍ଧ୍ୟାରୁ ସକାଳ ପର୍ଯ୍ୟନ୍ତ ଜଳି ରହିବ ଅଖଣ୍ଡ ଦୀପ ଭଳି। ପର୍ଯ୍ୟାପ୍ତ ଭାବେ ସେଠି ଢୋଲ, ଧୁମ୍‌ସ, ମାଦଳ ବାଜିବ ରାତିସାରା। ଲୋକେ ପାଳିକରି ଉଜାଗର ରହି ବାଜା ବଜାଇବେ ଅଖଣ୍ଡ କୀର୍ତ୍ତନ ଭଳି। ସମସ୍ତେ ରହିବେ ସଜାଗ। ପାଖେ ପାଖେ ଥିବ ଧାରୁଆ ଅସ୍ତ୍ର। ଏହା ଦ୍ୱାରା ବାଘ କ'ଣ ଗୋଟେ ନୂଆ କଥା ଘଟୁଛି ଭାବି ଭୟ କରିବ, ହୁଏତ ଜାଗା ଛାଡ଼ି ଚାଲିଯିବ ଦୂରକୁ।

ପ୍ରେମ୍ ପ୍ରସ୍ତାବକୁ ଅନୁମୋଦନ କରି କହିଲେ- "ସାବାସ୍।"

ଶର୍ମା କାର୍ପଣ୍ୟ ଦୂର କରି ତାଙ୍କର ସବୁତକ ରଙ୍ଗ ଲୁଗା ଦାନ କଲେ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବା ପାଇଁ। ନିର୍ଦ୍ଦେଶ ମୁତାବକ ଆଖପାଖ ଗାଁମାନଙ୍କରେ ନୂତନ କାର୍ଯ୍ୟକ୍ରମ ଚାଲୁ ରହିଲା। ଏଣେ ବାଘକୁ ଠାବ କରିବା ଉଦ୍ୟମ ଆମର ଚାଲୁ ରହିଲା।



ପ୍ରେମ୍ ଓ ମୁଁ ଚିର୍ମିରାରେ ସାତ ଦିନ ରହିଲୁଣି। ଏକାଦିକ୍ରମେ ଏତେ ଦିନ ବନସ୍ତରେ ରହିବା ଏଇ ମୋର ପ୍ରଥମ। ରହିଥାଏଁ ତିନିଦିନ ବା ଚାରିଦିନ। ବନ ପରିକ୍ରମାରେ କିଛି ଦିନ ବିତାଇ ପୁଣି ଫେରି ଆସିଥାଏ ମୋର ସେଇ କର୍ମଜଞ୍ଜାଳ ଜୀବନ ଭିତରକୁ। ଏଇ ସାତ ଦିନ ଭିତରେ ମୋର ଅନୁଭୂତି ଅବଶ୍ୟ ବହୁ ବ୍ୟାପକ ହୋଇଛି। ଇତି ମଧ୍ୟରେ ଗୋଟିଏ ନୂଆ ଅନୁଭୂତି ହାସଲ କରିଛି। ମୋକଥା ଅନୁସାରେ ରାତିରେ ଅଖଣ୍ଡ ଢୋଲ, ଧୁମ୍‌ସ, ମାଦଳ ବାଜି ରହିଥାଏ। ଲୋକମାନେ ମାତି ରହିଥାନ୍ତି- ଗୋଟାଏ ପର୍ବର ଯେମିତି ଆହ୍ୱାନ ଓ ଆୟୋଜନ। ପାଞ୍ଚ ଦିନ ହୋଇ ସାରିଛି, ଗୌନ୍ତିଆ ଶର୍ମାଙ୍କ ଦାଣ୍ଡ ଆଗରେ ଚାରିପାଞ୍ଚ ଜଣ ଆଦିବାସୀ ଲୋକ ହାଜର ହେଲେ। ଆମେ ଶିକାରୀ ବନ୍ଧୁ ଦ୍ୱୟ ଶର୍ମାଙ୍କ ଘରେ ଆସି ରହୁଥିବାର ଖବର ପାଇଥିଲେ। ଚିର୍ମିରା ପାଖ ଗାଁ ଚେମେଣିବସାରେ ସେମାନଙ୍କ ଘର। ସେମାନେ ପ୍ରକୃତରେ ଆସିଥିଲେ ଆମକୁ ସାକ୍ଷାତ କରିବାକୁ। ଗୌନ୍ତିଆଙ୍କୁ ସାକ୍ଷାତ କରି ସାରି ଆମକୁ ଅପେକ୍ଷା କରି ରହିଲେ ଶର୍ମାଙ୍କ ଦାଣ୍ଡରେ।

ଆମ ପାଖେ କି କାମ? ଆବଶ୍ୟକସ୍ଥଳେ ଏମାନେ କରଜ ସୂତ୍ରରେ ଶର୍ମାଙ୍କଠୁଁ ଅର୍ଥ ପଦାର୍ଥ ନିଅନ୍ତି? କିନ୍ତୁ ଆମ ପାଖେ କ'ଣ ବା ଅର୍ଥ ପଦାର୍ଥ ଅଛି? ଦୁଷ୍ଟ ବାଘକୁ ମାରିବାକୁ ଆମେ ଏଠାକୁ ଆସିଛୁ। ତାକୁ ମାରିବା ସମ୍ଭବ ହୋଇ ନାହିଁ। ଏହା ଛଡ଼ା ସେମାନଙ୍କର ଆଉ କ'ଣ ଆପତ୍ତି ଅଭିଯୋଗ ଗୁହାରି ହୋଇପାରେ? ଉତ୍ସୁକତାର ସହିତ ସେମାନଙ୍କ ପାଖକୁ ଗଲି। ସେମାନେ ମୋତେ ସାଷ୍ଟାଙ୍ଗ ପ୍ରଣିପାତ କଲେ, ଯେମିତି ପ୍ରଭୁଙ୍କୁ ପ୍ରଣାମ କରନ୍ତି- ସମସ୍ତେ ଏକାଭଳି ଆଣ୍ଠେଇ ମଥାକୁ ଭୂଇଁରେ ଛୁଆଁଇ ମୋ ପ୍ରତି ଶ୍ରଦ୍ଧାର୍ପଣକଲେ। ସେମାନଙ୍କ କପଟଶୂନ୍ୟ ପ୍ରଣାମ ଭଙ୍ଗୀରେ ମୁଁ ଆନ୍ତରିକତା ଅନୁଭବ କଲି। ସେମାନଙ୍କ ଭିତରେ ଜଣେ ଲୋକ ଅନ୍ୟମାନଙ୍କଠୁଁ ବାରି ହୋଇ ଯାଉଥିଲା। ତେଲମଖା ଝୁମ୍ପୁରା ବାଳ, ମୁଣ୍ଡରେ ଫିକା ସିନ୍ଦୂରର ବିନ୍ଦୁଟିଏ, ଆଖିରେ କଜ୍ଜଳ ଏବଂ ଅପେକ୍ଷାକୃତ ସଫା କରିହାଟିଏ ଦେହରେ ଗୁଡ଼ାଇ ହୋଇଥାଏ। ସେ

ଏଠାକାର 'ଗୁନିଆ' ବୋଲି ଶର୍ମା ପରିଚୟ କରାଇ ଦେଲେ। ଗୁନିଆ ଏ ଅଞ୍ଚଳର ବୈଦ୍ୟପୁରୋହିତ, ଆଦିବାସୀମାନଙ୍କର ପରାମର୍ଶଦାତା ସବୁ କ୍ଷେତ୍ରରେ। ଜନ୍ମ-ମୃତ୍ୟୁ-ବିବାହ ଆଦି ପର୍ବ ପର୍ବାଣିରେ ଗୁନିଆର ଭୂମିକା ଅନେକ। ଗୁନିଆକୁ ସେମାନେ ସାଙ୍ଗରେ ନେଇ ଆସିଛନ୍ତି ଏକ ବିବାହ ପ୍ରସଙ୍ଗରେ ବୋଲି ଜାଣିଲି। କଥାଟା ବୁଝିଲି।

କିସାନ୍ ଜାତିର ବାହାଘର ସମ୍ବନ୍ଧୀୟ। ଚେମେଣିବସାର ବାସିନ୍ଦା ଫେନା କିସାନ୍‌ର ପୁଅ 'ସୁକା' ଡେରବାର ମଙ୍ଗଲୁ କିସାନ୍‌ର ନନୀ (ଝିଅ) 'ଲକ୍ଷି'ର ବିବାହ ଧାର୍ଯ୍ୟ ହୋଇ ସାରିଥିଲା। କିଛି ମାସ ପୂର୍ବେ ବିବାହର ପ୍ରାରମ୍ଭିକ କାର୍ଯ୍ୟ ହୋଇ ସାରିଥାଏ। ପ୍ରଥମେ ଫେନା କିସାନ୍ ପ୍ରସ୍ତାବ ଧରି ମଙ୍ଗୁଲ କିସାନ୍ ଘରକୁ ଗଲା। ସାଥେ ଯାଇଥିଲେ ଗାଁର କେଇଜଣ ଭାଇଆଳି ସାମାଜିକ ଜଲଣି ହିସାବରେ। 'ସୁକାର' ସମ୍ବନ୍ଧ ପକାଇଲେ ଲକ୍ଷି ସହିତ। ଏଠି ପୁଅର ବାପ ପ୍ରଥମେ ପ୍ରସ୍ତାବ ନେଇ ଯିବାର ବିଧି। ପ୍ରସ୍ତାବ ପକ୍‌କା ହେଲା ବିଧି ମୁତାବକ। କିନ୍ତୁ ଏଥରେ ଗୁନିଆର ସମ୍ମତି ଆବଶ୍ୟକ। ପୁତ୍ର ଓ କନ୍ୟାପିତା ଗୁନିଆର ଦ୍ୱାରସ୍ଥ ହୁଅନ୍ତି। ନେଇଥା'ନ୍ତି ଚାଉଳ, ଡାଲି, ପରିବା, ମାଖନ, (କଖାରୁ) ଲାଉ, ମୁଗ, ବିରି ଆଦି ମାଟିରୁ ଜାତ ପଦାର୍ଥମାନ। ଗୁନିଆ 'ମଙ୍ଗଲା' ବସାଏ। ହଳଦୀମିଶା ଚାଉଳ ପୁଞ୍ଜି (ମୁଠା) ହାତରେ ତିଆରି କରି ପତରରେ ଥୁଏ। ପୁଅଘର ନେଇଥାନ୍ତି ପେଠା ଗଞ୍ଜା (ତାଗେଡ଼ା ଗଞ୍ଜା)। ମଙ୍ଗଲାଙ୍କ ପାଖେ ପୂଜା କରି ଗୁନିଆ ଗଞ୍ଜାକୁ ଚାଉଳ ପୁଞ୍ଜି ଖାଇବାକୁ ଦିଏ। ଗଞ୍ଜା ଚାଉଳ ଖାଇଲେ ଶୁଭ ହୁଏ, ପ୍ରସ୍ତାବ ଅନୁମୋଦିତ ହୁଏ। ତା'ପରେ ଗଞ୍ଜା ମୁଣ୍ଡକୁ କଟାଯାଏ ମଙ୍ଗଲାଙ୍କ ଆଗରେ। ପୂଜାସ୍ଥାନରେ ରକ୍ତ ଢଳାଯାଏ, ସେଇ ରକ୍ତ ପୁଅ ଓ କନ୍ୟାଘର ନିଅନ୍ତି ବିବାହ କାର୍ଯ୍ୟରେ ବ୍ୟବହୃତ ହେବା ପାଇଁ ଆଉ ବିବାହ ପର୍ବଦିନ ସିନ୍ଦୂର ସହିତ ସେଇ ପୂଜାରକ୍ତ ବର କନିଆଁର କପାଳରେ ଦିଏ। ଯଦି ଗଞ୍ଜା ଚାଉଳ ମୁଠିରେ ମୁହଁ ନ ମାରେ, ଜାଣ ବିବାହ ସମ୍ଭବ ନୁହେଁ, ପ୍ରସ୍ତାବ କାଟ ଖାଇଯାଏ। ଏହାକୁ ନ ମାନି ବିବାହ କଲେ ବହୁ ଅନିଷ୍ଟ ହୁଏ ଉଭୟ ପକ୍ଷର, ଦମ୍ପତି କଳି ଲାଗନ୍ତି, ଶେଷକୁ କନିଆଁ 'ଛାଡ଼ରୀ' (ଛାଡ଼ପତ୍ର) ହୁଏ ଅଥବା କାହାର ମୃତ୍ୟୁ ହୁଏ। ଏଣୁ ମଙ୍ଗଲାଙ୍କ ପାଖେ ପୂଜିତ ଗଞ୍ଜା ହେଉଛି ଆଦିବାସୀ କିସାନ୍‌ମାନଙ୍କର ଭବିଷ୍ୟତ ବାର୍ତ୍ତାବହ। ମଙ୍ଗଲାପୂଜା ପରେ ପିନ୍ଧାଣି (ନିର୍ବନ୍ଧ) ହୁଏ ପୁଅ ବା ଝିଅ ଘରେ। ଉଭୟ ତରଫରୁ ଖିଆପିଆ ହୁଏ। ଗୁନିଆ ବିବାହର ଦିନ ବାର ଧାର୍ଯ୍ୟ କରେ। ସୁଖାର ଲକ୍ଷି ସହିତ ବିବାହ ନିଧାର୍ଯ୍ୟ ହୋଇଥାଏ ଗୁନିଆର ପରାମର୍ଶରେ। ଆସନ୍ତା କାଲି ବାହାଘର। ବରପିତା ତଥା ଚେମେଣିବସା ଗାଁର ଲୋକେ ବର ପିଲା ଏବଂ ଜାତି ଭାଇ ସ୍ତ୍ରୀ-ଲୋକମାନେ ଡେରବା ଯିବେ ଚାଲି ଚାଲି। ବାଟରେ ଘୋର ଅରଣ୍ୟ। ବାଘ ମାତିଛି। ବାଘ କିଛି ମାନୁ ନାହିଁ, ଲୋକଙ୍କ ଉପରେ ଅତର୍କିତ ଭାବେ ଆକ୍ରମଣ କରୁଛି, କାହା

ମୁଣ୍ଡ ଖାଉଛି। ଲୋକମାନେ ନିର୍ଭୟରେ ଜଙ୍ଗଲ ବୁଲିବା ସମ୍ଭବ ଆଉ ହେଉନାହିଁ। ଗୁନିଆ ମଙ୍ଗଳାଙ୍କୁ ପଚାରି ବାହାଘର ଦିନ ସମୟ ଧାର୍ଯ୍ୟ କରିଛି। ଠିକ୍ ଦିନରେ ବିବାହ ନ କଲେ ବା ବ୍ୟତିକ୍ରମ ହେଲେ ମା' ମଙ୍ଗଳା ରୁଷ୍ଟ ହେବେ, ବିଘ୍ନ ଘଟିବ, ଅମଙ୍ଗଳ ହେବ ସମସ୍ତଙ୍କର, ରାଜ୍ୟର। ଏଣୁ ସେମାନେ ଆମର ସାହଯ୍ୟ ଲୋଡ଼ିଥିଲେ।

ଆଦିବାସୀମାନଙ୍କର ବିବାହ ଉତ୍ସବରେ ଯୋଗଦେବାର ସୁଯୋଗ ଉଡ଼ିଆସି ଉପସ୍ଥିତ ହେଲା ଭଳି ଲାଗିଲା ମୋତେ। ମନା କରିବାର ପ୍ରଶ୍ନ ନ ଥିଲା। ଆମର ଉପସ୍ଥିତି ଯଦି ବିବାହ ଭଳି ଏକ ସାମାଜିକ ମାଙ୍ଗଳିକ କାର୍ଯ୍ୟରେ ସାହାଯ୍ୟ କରେ, ସେଥିରେ ବିଶେଷ ଖୁସି ହେବା କଥା। ଏଭଳି ଏକ ସୁଯୋଗ ଖୋଜୁଥିଲି। ଖୁବ୍ ଆଗ୍ରହରେ ରାଜି ହୋଇଗଲି। ପ୍ରେମ୍ ତ ସହଜେ କେବେ ମନା ନ କରିବା ବ୍ୟକ୍ତି।

ଠିକ୍ ପର ଦିନ ସେମାନଙ୍କ ଅନୁରୋଧକ୍ରମେ ପ୍ରେମ୍ ଓ ମୁଁ ବନ୍ଧୁକ ଧରି ବାହାରିପଡ଼ିଲୁ ଚେମେଣିବସା ଅଭିପ୍ରାୟରେ। ଏଥର କିନ୍ତୁ ଆମ ସାଙ୍ଗରେ ନ ଥିଲା ଚିମା ଭୋତ୍ରା। ତା'ର ଅନୁପସ୍ଥିତି ଅନୁଭବ କରୁଥିଲି ପ୍ରତି ମୁହୂର୍ତ୍ତରେ, ଏପରିକି ଜଙ୍ଗଲ ବାଟ ଚାଲିଲା ବେଳେ ଅନ୍ୟମନସ୍କ ରହୁଥିଲି। ଚିମାର ଆତ୍ମା ଗଛ, ପତ୍ର, ବାଟ, ପର୍ବତ ପଥରରେ କେଉଁଠି ଲୁଚିଥିଲା ଭଳି ବୋଧ କରୁଥିଲି। ଆଖି ଆର୍ଦ୍ର ହୋଇ ଆସୁଥିଲା- ପ୍ରେମ୍ ଠିକ୍ ବୁଝି ପାରିଥିଲେ ମୋ ମନବ୍ୟଥା, କହିଲେ- " କସ୍ମିନ୍‌କାଳେ ଭାଙ୍ଗି ନ ପଡ଼ିବା ସଚ୍ଚା ଶିକାରୀର ଗୁଣ ଓ ଧର୍ମ। କାଉଁରିଆ କାଠି ତା'ର ନୀତି, ଭାଙ୍ଗିବ ପଛେ ନଇଁବ ନାହିଁ; ଶିକାରୀ ମରିବ ପଛେ ଶିକାର ଛାଡ଼ିବ ନାହିଁ।" ପ୍ରେମ୍ ପ୍ରବୋଧନା ଦେଇଥିଲେ ବାଟ ସାରା।

ଏମିତି ବାଟ ଚାଲ ଚାଲୁ ଚେମେଣିବସା ପହଞ୍ଚିଗଲୁ। ସେମାନେ ଆମକୁ ଉଚ୍ଛ୍ୱସିତ ସ୍ୱାଗତ କଲେ, ସମ୍ବର୍ଦ୍ଧନା ଦେଲେ। ମାଦଳ ବଜାଇ ନାଚି ନାଚି ଗାଁ ମୁଣ୍ଡରୁ ଫେନା କିସାନ୍‌ର ଘର ପର୍ଯ୍ୟନ୍ତ ନେଇଗଲେ। ଫେନାର ମାଟିଝାଟି ଚାଳଘର। ଛୋଟପିଣ୍ଡା, ସେଥିରେ ଆମ ପାଇଁ ଖଜୁରି ପଟି ପରା ହୋଇଥିଲା, ବସିଲୁ। ଘର ଭିତରେ ଆଦିବାସୀ ସ୍ତ୍ରୀ ଲୋକମାନେ ବିବାହ ସଙ୍ଗୀତ ଗାନ କରୁଥିଲେ ସମବେତ ହୋଇ। କିଛି ବୁଝି ପାରୁ ନଥିଲି, କିନ୍ତୁ ମନକୁ ପୂତ କରୁଥିଲା, ତନୁକୁ ପୁଲକିତ କରୁଥିଲା, କାନକୁ ମୁଲାୟମ ଲାଗୁଥିଲା; ଶୁଣିବାକୁ ଇଚ୍ଛା ହେଉଥିଲା ଆହୁରି ଆହୁରି । କେତୋଟି ପଦ ଯଥା ସମ୍ଭବ ଟିପି ଆଣିଥିଲି। ପରେ ଶର୍ମାଙ୍କଠୁଁ ବୁଝି ଅର୍ଥ କଲି-

କନ ବନ୍ଧୁ ଯେ ବାସିଖିଆ, ସଁପୁର ଧାନର ଚୁରା (ହଇରେ ବନ୍ଧୁ)
କନ ବନ୍ଧୁ ଯେ ଢପଲାଖିଆ, କେସେ ବାନ୍ଧ୍‌ଲା ଜୁରା (ହଇରେ ବନ୍ଧୁ)
ଧରମ୍ ଦେବତା ନାୟାଜୀବଜନ୍ତୁ ପରି ସଂସାର ନେଇଛେ
ଜୀବନକୁ ନେଉଛେ ଭାୟା।

କାଲା ଲାଲା ଗୟେ, କାଲା ଲାଲା ଗୟେ....
ଝରନ୍ ତରାର୍ କୁରେଇ ଡାଲ୍
କୁରେଇଫୁଲର ଟାଙ୍ଗ୍ରୀ
କେତେ କଁଢ଼ର୍ ଫୁଲର୍ ଲାଗି
ମିତିନୀ ମହନୀ ରାଜରୀ ?

ମିତ୍ନୀ କାଯେ କୁରେଇ ନେଇ
ଚଅଁରୀ ମୁଢେ ଭର୍ସି
ଦଶଆଙ୍ଗ୍ଠି ସାଅଁଟି ଯାଏ
ମିତନୀ ତନର କଲ୍ସୀ ।
ଚଣେ ହେଜ୍ଲୁ ଯେତେ ଚୁମା
ମନେ ହେଜ୍ଲୁ ଉଲ୍ ସା
ମିତ୍ନୀ ଗାଲେ ଯେତେ ସମା
କୁରେଇ ସେତ୍କି ପଇସା ।

ବଡ ଚମତ୍କାର ଓ ଚତ୍ତାକର୍ଷକ ଉପରୋକ୍ତ ପଦ୍ୟଟିର ଭାବାର୍ଥ । ଅତ୍ୟନ୍ତ ରସାଳ ଓ ପ୍ରେମାଳ । ପ୍ରିୟା ଓ ପ୍ରେୟସୀ ମଧ୍ୟରେ ଏକ ଅନ୍ତରଙ୍ଗ ପ୍ରେମାଳାପ । ତା'ର ମର୍ମାନୁବାଦ ଏହିପରି-

ପ୍ରେମିକା-ପ୍ରେୟସୀ ହାତରେ ଝରଣା କୂଳର ଡାଳଯୁକ୍ତ କୁରେଇ ଫୁଲର ଗୁଚ୍ଛଟିଏ (ଟାଙ୍ଗ୍ରୀ) । ଫୁଲଗୁଡ଼ିକର ମୂଲ କେତେଲୋ ସୁନ୍ଦରୀ ପ୍ରେମିକ ନାଗରର ସ୍ନେହଭରା ପ୍ରଶ୍ନ ।

ଫୁଲ କେରାକ ପ୍ରେୟସୀ ହାତରୁ ଟୋଳି ନେଇ ପେୟସୀର ଗଭାରେ ଅତି ଶରଧାରେ ଖଞ୍ଜିଦିଏ ଯୁବକ ନାଗର, ତା' ହାତର ଦଶ ଅଙ୍ଗୁଳି ପ୍ରିୟାର ଉନ୍ନତ ବକ୍ଷୋଜରେ ସଂଚାଳିତ ହୁଏ । ତା'ର ସ୍ନେହସିକ୍ତ ଓଠ ପ୍ରେମିକାର ଗଣ୍ଡରେ ଅସଂଖ୍ୟ ଚୁମ୍ବନ ଆଙ୍କି ଉଲ୍ଲସିତ ହୁଏ ଆଉ ଧାଙ୍ଗ୍ଡୀ ପ୍ରେୟସୀ ମୁହଁରେ ଯେତିକି ଲାଜ ଉତ୍ପନ୍ନ ହୁଏ, କୁରେଇ ଫୁଲର ମୂଲ୍ୟ ସେତିକି ପଇସା ।

ବାଃ, ବଡ଼ ଚମତ୍କାର ଏମାନଙ୍କର କବିତ୍ୱ । କବିର ନାମ ନାହିଁ; କେଉଁ ଅଜଣା କାଳରୁ ବନ୍ୟ ଝରଣା ଭଳି କବିତା ପ୍ରବାହିତ ହୋଇ ଚାଲିଛି ଲୋକ ତୁଣ୍ଡରେ । ଅଜ୍ଞାତ ଜୀବନ ଏମାନଙ୍କ ବିଶେଷତ୍ୱ ।

ଆମ ପାଇଁ ସେମାନେ ବୁକା (ଖାସି) ମାରି ମାଂସ ରାନ୍ଧିଥିଲେ । ସେଥିରେ ମସଲା ବୋଲି ତେଲ, ଲୁଣ ଓ ହଳଦୀ । ଭାତ, ମାଂସ ଏବଂ ତେନ୍ତୁଳି ପାଣି, ଲଙ୍କା ମରିଚ- କେତେ ସ୍ୱାଦିଷ୍ଟ ଖାଦ୍ୟ । କ୍ଷୀରି, ସର, ପୁରି ଆଧୁନିକ ହୋଟେଲ ଫ୍ରାଏଡ୍ ଖାଦ୍ୟ ତୁଚ୍ଛ

ଲାଗେ ମୋ ପାଟିକୁ ଏମାନଙ୍କ ସେଇ ସରଳ ଖାଦ୍ୟ ତୁଳନାରେ। ବୋଧହୁଏ ଖାଦ୍ୟ ସ୍ୱାଦ ଖାଦ୍ୟରେ ନ ଥାଏ, ରହିଥାଏ ଦାତାର ଆନ୍ତରିକତାରେ- ମୁଁ ଅନୁଭବ କରିଛି।

ସନ୍ଧ୍ୟା ପୂର୍ବରୁ ଆମକୁ ପହଞ୍ଚିବାକୁ ହେବ କନ୍ୟାଘର ଡେର୍‌ବାରେ। ପାଞ୍ଚ ମାଇଲ ଦୂର। ଜଙ୍ଗଲ ରାସ୍ତା। ବାଘର ଦୌରାତ୍ମ୍ୟ ଜାରି ରହିଛି। ଠିକ୍ ମଧ୍ୟାହ୍ନଭୋଜନ ପରେ ଆମେ ବରଯାତ୍ରୀ ବାହାରି ପଡ଼ିଲୁ। ଛୁଆ ପିଲା, ବୁଢ଼ାବୁଢ଼ୀ ବୟସ୍କ ଆଦିଙ୍କୁ ମିଶାଇ ଆମ ସଂଖ୍ୟା ହୋଇଥିଲା ଅଣତିରିଶ। ସାଙ୍ଗରେ ଦୁଇଟି ବୁକା (ଛେଳି), ଚାଉଳ, ଡାଲି, ପରିବା ଓ ବାଦ୍ୟ ଯନ୍ତ୍ର। ବର ଗଲାବେଳେ ଗୀତ ବାଜଣା ନାହିଁ, କେବଳ ପଦଯାତ୍ରା। ଆମେ ଅସ୍ତ୍ରଧାରୀ ଦୁଇ ବନ୍ଧୁ ସେମାନଙ୍କ ମେଳରେ ଥାଇ ବାଟ ଚାଲିଥାଉଁ। ବନ ବାଟ, ଗିରିପଥ ଅତିକ୍ରମ କରି ଡେର୍‌ବାରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ପ୍ରାୟ। ବାଟରେ କିଛି ଅଘଟଣ ଘଟି ନ ଥିଲା। କନ୍ୟା ଘର ଲୋକେ ଆମକୁ ପାଛୋଟି ନେଲେ ଆନ୍ତରିକତାର ସହିତ। ଅଗଣାରେ ବିବାହ ବେଦୀ ତିଆରି ହୋଇଥାଏ। ବେଦୀ ବୋଇଲେ ରଂଗମାଟି ଲିପା ପିଣ୍ଡିଟିଏ ଓ ତହିଁରେ ଛୋଟ ଛାମୁଣ୍ଡିଆଟିଏ। ସେଠି କର୍‌ମା ଗଛର ଡାଳ ପୋତା ହୋଇଥାଏ। କର୍‌ମା ବୃକ୍ଷ ଏମାନଙ୍କ ପାଇଁ ଶୁଭ।

ଗୁନିଆ ତା'ର ଚିରାଚରିତ କୌଳିକ କର୍ମ କରି ବସିଲା। କନିଆକୁ ଅଣାଗଲା ବେଦୀ ଉପରକୁ। ତା' ମୁହଁରେ ଏକ ତାଳ ପତ୍ରର ବିଞ୍ଚଣା ଆଭରଣ ଭଳି ଲଗା ଯାଇଥିଲା। ଗୁନିଆ କର୍ମ କରି ସାରିଲା ପରେ ଯାଇଁ ବର କନିଆ ମୁହଁ ଚାହାଁଚୁହିଁ ହେବେ। କର୍ମ ଶେଷ ହେଲା ଏବଂ ମୁଁ ଉତ୍କଣ୍ଠାର ସହିତ ଅପେକ୍ଷା କରି ରହିଥିଲି ସେମାନଙ୍କ ଚକ୍ଷୁର ପ୍ରଥମ ମିଳନକୁ। ଡିହୁଡ଼ି ଜଳୁଥିଲା। ସେଇ କ୍ଷୀଣ ଆଲୋକରେ ମୁଁ ବେଶ୍ ଦେଖି ପାରିଥିଲି। କନିଆ ସୁନ୍ଦର ଦିଶୁଥିଲା, ମୁହଁରେ ଦୀପ୍ତି ଝଟକୁଥିଲା। କୃଷ୍ଣାଙ୍ଗୀ ମସୃଣ ଦେହ ତା'ର, ଯୌବନାବତୀ। ବକ୍ଷୋଜରେ ବସ୍ତ୍ରାଭରଣ ନ ଥିଲା, କେବଳ ନୀରନ୍ଧ୍ର କାଇଁଚମାଳ ଗୁଡ଼ିଏ ବକ୍ଷ ଦେଶକୁ ମଣ୍ଡନ କରିଥିଲା। ନାଭି ତଳ କଟି ପାଖରୁ ଆଣ୍ଠୁ ପର୍ଯ୍ୟନ୍ତ ଘାଗରା ଭଳି ଏକ ଛିଟ ବସ୍ତ୍ରର ବେଢ଼ଣ। ଆଦିବାସୀନାରୀ ସୌନ୍ଦର୍ଯ୍ୟର ଚିତ୍ତାକର୍ଷଣ ମୁଁ ପୂର୍ବରୁ ଅନୁଭବ କରି ନ ଥିଲି। କନିଆର ବର ମଧ ବେଶ୍ ଯୁଆନ ପିଲା, ବଳିଷ୍ଠ ମାଂସପେଶୀଯୁକ୍ତ କୃଷ୍ଣାଙ୍ଗ ଶରୀର। ଭଲ ଯୋଡ଼ିଟିଏ। ଖୁସି ହେଲି।

ଭୋଜିଭାତ ଖିଆ ପିଆ ଚାଲିଲା। ଭାତ, ମାଂସ ଓ ସବୁ ପରିବାକୁ ଡାଲି ସହିତ ମିଶାଇ ଏକ ଭିନ୍ନ ରକମର ଘାଣ୍ଟ ତିଅଣ, ବେଶ୍ ସୁଆଦିଆ। 'କୁସ୍‌ନା' ଏମାନଙ୍କର ମଦ୍ୟ- ଚାଉଳରୁ ପ୍ରସ୍ତୁତ। କିନ୍ତୁ ଏଥିରେ ମିଶିଥାଏ 'ରାନୁ' ଲତାର ଚେର ଓ ଦୁଦୁରା ମଞ୍ଜିର ଗୁଣ୍ଡ- ନିଶା ମାତ୍ରାକୁ ଅଧିକ କରିବା ପାଇଁ। କୁସ୍‌ନା ଏମାନଙ୍କ ଆଭିଜାତ୍ୟ ପାନୀୟ। ବିବାହ, ପୁଆଣି, ପର୍ବ ପର୍ବାଣିରେ ଏମାନେ କୁସ୍‌ନାକୁ ଅତିମାତ୍ରାରେ ବ୍ୟବହାର କରନ୍ତି। ଅନେକ ସ୍ଥଳରେ ଖାଦ୍ୟ ଅଭାବରେ ଏହାକୁ ପାନ କରି ରହି

ପାରନ୍ତି ଦିନ ଦିନ। ଏମାନଙ୍କ ସଂସ୍କୃତିରେ କୁସ୍‌ନା ଓତଃପ୍ରୋତ ଭାବେ ଜଡ଼ିତ। ଲକ୍ଷ୍ୟ କଲି, ଆବାଳବୃଦ୍ଧବନିତା କୁସ୍‌ନା ପାନକଲେ ଶାଳପତ୍ର ଦନାରେ- ଯିଏ ଯେତେ ପିଇ ପାରିଲା। ବିବାହ ପର୍ବ, ଦାତାର କାର୍ପଣ୍ୟ ନାହିଁ। ସମସ୍ତେ ଆନନ୍ଦିତ ହେଲେ ନବ ଦମ୍ପତି ସୁଖରେ ରହିବେ- ସମସ୍ତଙ୍କ ବିଶ୍ୱାସ। କିନ୍ତୁ ଆଶ୍ଚର୍ଯ୍ୟର କଥା, ସମସ୍ତେ ମଦ୍ୟପାନ କଲେ, ଏପରିକି ବର ଓ କନ୍ୟାପିତା ମଧ୍ୟ, କେହି ଉନ୍ମତ୍ତ ହେବାର ଦେଖିଲି ନାହିଁ। ଗୋଟାଏ ସାମାଜିକ ଶୃଙ୍ଖଳା ଜାରି ରହିଥିଲା ପରି ମନେ ହେଲା। ସେମାନେ ଆମକୁ ଆଣି କୁସ୍‌ନା ଯାଚିଲେ- ସେମାନଙ୍କ କର୍ତ୍ତବ୍ୟ। କିନ୍ତୁ ମନା କରିଥିଲୁ ସରଳ ଭାବେ, କାରଣ ଦର୍ଶାଇଥିଲୁ ଯେ ଆମେ ଶିକାରୀ ସମସ୍ତଙ୍କ ଦେହରକ୍ଷୀ, ଦାୟିତ୍ୱ ଅନେକ। ସେମାନେ ଆମକୁ ଆଉ ବଳାଇ ନ ଥିଲେ। ମୁଁ ଉତ୍ସୁକତା ସହକାରେ ପଚାରିଲି- ବର କନିଆଁ କୁସ୍‌ନା ପିଅନ୍ତି। ସେମାନେ କହିଲେ- "ନି, ମଙ୍ଗଳା ମନା କରିଛନ୍, ଇ ମଙ୍ଗଳାକେ ପିଲା ଆଏ....।' ବଡ଼ ଅଦ୍ଭୁତ ଏମାନଙ୍କ କାରବାର, ତଥାପି ଏମାନେ ସାମାଜିକ ନିୟନ୍ତ୍ରଣ ମାନନ୍ତି !

ଖାଇ ପିଇ ସାରି ସେମାନେ ଗାଁ ଦାଣ୍ଡରେ ଗୁଣ୍ଡ ହେଲେ। ଉଭୟ ଗାଁର ଧାଙ୍ଗ୍‌ଡା ଧାଙ୍ଗ୍‌ଡୀ ନାଚ କରିବେ ଯାହା ପ୍ରତି ଥିଲା ମୋର ଶ୍ରେଷ୍ଠ ଆକର୍ଷଣ। ଆଦିବାସୀ ଯୁବକ ଯୁବତୀମାନେ ଧରାଧରି ହୋଇ ଏକ ଅର୍ଦ୍ଧବୃତ୍ତାକାରରେ ଗାଁ ଦାଣ୍ଡରେ ନାଚିଲେ। ବେଶ୍ ଉପଭୋଗ୍ୟ ଥିଲା ସେ ଲୋକନୃତ୍ୟ। ଧାଙ୍ଗଡୀ ନାଚ ସହିତ ମାଦଳ ବାଦ୍ୟର ତାଳ ଏବଂ ମୁଖନିଃସୃତ ସ୍ୱର ଆମୋଦଦାୟକ ହୋଇ ଉଠିଥିଲା। ଅନ୍ଧାର ପକ୍ଷ ଯୋଗୁଁ ଯଦିଚ ଆକାଶରେ ଜହ୍ନ ନ ଥିଲା, ଗରକାଠ ଗାଁ ଦାଣ୍ଡରେ ପ୍ରଜ୍ୱଳିତ ହେଉଥିଲା ଆଲୋକ ବର୍ତ୍ତିକା ଭଳି। ସେଇ ଆଲୋକର ଥାଏ ବିଶେଷତ୍ୱ।

ରାତି ଅନେକ ହୋଇ ଯାଇଥିଲା। ଆଖିକୁ ମୋର ନିଦ ଆସି ଯାଇଥିଲା। ସକାଳ ହେବାରୁ ପ୍ରେମ୍ ଉଠାଇ କହିଲେ- "ଉଠ ମୋହନ୍, ଯିବା ଏଥର। ସେମାନେ ବାହାରି ପଡ଼ିଲେଣି।"

ଆଖି ମଳି ମଳି ଉଠିଲି ଗୋଟାଏ ସୁସ୍ୱପ୍ନ ଛାଡ଼ି ଉଠିଲା ଭଳି ଏବଂ ସେମାନଙ୍କ ସହିତ ସାମିଲ ହୋଇ ବର ବାହୁଡ଼ା ଶୋଭାଯାତ୍ରାରେ ଯୋଗ ଦେଲି। ଆଦିବାସୀ ସ୍ତ୍ରୀଲୋକ ଏବଂ ଧାଙ୍ଗ୍‌ଡୀମାନେ ସୁର ଲଗାଇ ଗୀତ ଗାଇ ଗାଇ ବାଟ ଚାଲିଥାନ୍ତି-

ଆମର ବଉଲ କେସେ ରୋଦନ କରେ
    କେସେ ରୋଦନ କରେ,
ଚାଲାରେ, ଚାଲାରେ, ଚାଲାରେ।
    ନମାର୍ ଖାବଡ୍ ନମାର ଲାବଡ୍
ଚାଲାରେ, ଚାଲାରେ, ଚାଲାରେ

କେସେ ରୋଦନ କରେ।
ସେମି, ସେମି ଲହର ମୂଲ, କାହାଁ ପାହାବେ,
ଚାଲାରେ, ଚାଲାରେ, ଚାଲାରେ
    କେସେ ରୋଦନ କରେ।
ମାୟାଙ୍କର କ୍ଷୀର, ବାପାଙ୍କର ମୂଳ,
ଚାଲାରେ, ଚାଲାରେ, ଚାଲାରେ,
    କେସେ ରୋଦନ କରେ।
ରାମ୍ ରାମ୍ ପଦରେ, ରାମ୍ ରାମ୍ ପଦ
ଚାରି ଦିଗେ ସତ, ନଳିଆ ଭିତରେ ରାମ
    ବାହିଥିଲେ ରଥ,
ଦରିଆ ଭିତରେ ରାମ ବାହିଥିଲେ ରଥ,
କହିଁ ଯାଇଥିଲେ, ବଡ଼ମଣ୍ଡା ହାଟେରେ
    କିଛି ଦରବ ନାହିଁ।
ସୁରୁ ସୁରୁ କନିଆଁ ଯୋଡ଼େ, ବିହା ହୋଇଥିଲେ,
    କିଛି ଦରବ ନାହିଁରେ,
    କିଛି ଦରବ ନାହିଁ।

ଆଗରେ ପଛରେ ଆମେ ଦୁଇ ଜଗୁଆଳ ବନ୍ଧୁକଧାରୀ ଶିକାରୀ ବନ୍ଧୁ- ସେମାନଙ୍କ ରକ୍ଷକ। ଗୀତ ସ୍ୱରକୁ ଅଧିକ ଉଚ୍ଚ କରିବାକୁ ମୁଁ କହୁଥାଏ ସେମାନଙ୍କୁ, କାରଣ ପଥଚାରୀମାନେ ଜାଗ୍ରତ ଓ ସଚେତନ ଅଛନ୍ତି ବୋଲି ବାଘ ଜାଣିବା ଉଚିତ। ମଣିଷଖିଆ ବାଘ ମଣିଷକୁ ଭ୍ରୂକ୍ଷେପ କଲେ ମଧ୍ୟ ସଜାଗ ମଣିଷକୁ ଭୟ କରେ। ଅତଏବ ଯଦିବା ସେପାଖରେ କେଉଁଠି ଥାଏ, ଲୋକମାନଙ୍କର ଉଚ୍ଚସ୍ୱର ତାକୁ ଦୂରେଇ ଦେବ ଏବଂ ବିନା ବିଘ୍ନରେ ବର କନ୍ୟା ଶ୍ୱଶୁରାଳୟ ଚେମେଣିବସା ପହଞ୍ଚି ପାରିବେ।

ସେମାନଙ୍କ ଭିତରେ ମୁଁ ମଜ୍ଜି ଯାଇଥିଲି, ନିଜକୁ ହଜାଇ ଦେଇଥିଲି ଗୀତର ସ୍ୱର, ଲୟ ଓ ତାଳ ସହିତ ପଦପାତ କରୁଥିଲି। କେତେବେଳେ ଚେମେଣିବସା ଆସିଯାଇଥିଲା ମୁଁ ଜାଣି ପାରି ନ ଥିଲି। ନିର୍ଭୟରେ ବିବାହ କାର୍ଯ୍ୟଟି ସମାହିତ ହୋଇଥିଲା; ବାଘର ଦର୍ଶନ ନ ଥିଲା।



ପ୍ରେମ୍ ଓ ମୁଁ ଅତିଥି ହୋଇ କିସନ୍‌ମାନଙ୍କର ବାହାଘର ପର୍ବରେ ଯୋଗ ଦେଇଥିଲୁ। ଆମ ଚଳଣି ଓ ବିଧି ଅନୁଯାୟୀ ଅତିଥି ଖାଲି ହାତରେ ବିବାହ ଭଳି ସାମାଜିକ ମାଙ୍ଗଳିକ କାର୍ଯ୍ୟରେ ଯୋଗଦେବା କଥାନୁହେଁ। କିଛି ନା କିଛି ଉପହାର ଦେବାକୁ ପଡ଼ିଥାଏ। ବିବାହ ସମ୍ପନ୍ନ ହୋଇ ସାରିଥିଲା ସୁରୁଖୁରୁରେ। କନିଆ ବର ଘରେ ଛାଡ଼ି ଫେରିଛୁ ଆଜି। ବାଘଭୟ ଦୂର ହୋଇଛି। ଆଜି ଏମାନଙ୍କ ବାସର ରାତି- ପୁଅ ଘରେ ଖାଦ୍ୟପେୟର ମହୋତ୍ସବ କିସାନ୍ ପରିବାରର ଶକ୍ତି ଅନୁଯାୟୀ। କୌଣସି ଉପହାର କଥା ଚିନ୍ତା କରୁଥିଲି ଗଭୀର ଭାବେ। ଦୂର ଦୁର୍ଗମ ପର୍ବତ ଘେରା ଅରଣ୍ୟ ରାଜ୍ୟରେ ଆମ ଭଳି ଶିକାରପ୍ରେମୀଙ୍କର ଶିକାର ବ୍ୟତୀତ ଆଉ କ'ଣ ଶ୍ରେଷ୍ଠ ଉପହାର ହୋଇପାରେ ? ଉଦ୍ଦେଶ୍ୟଟି ପ୍ରେମ୍‌ଙ୍କୁ କହିଦେଲି। ସେ କୌଣସି ପ୍ରସ୍ତାବରେ ଅରାଜି ହୁଅନ୍ତି ନାହିଁ। ଏଣୁକରି ସଞ୍ଜବେଳୁ ଅରଣ୍ୟ ଅଭିମୁଖେ ପ୍ରେମ୍ ଓ ମୁଁ ପ୍ରସ୍ତୁତ ହୋଇ ବାହାରି ପଡ଼ିଲୁ। ଆମର ଗୋଟିଏ ଅସୁବିଧା ହେଲା- ଚିମା ଭୋତ୍ରାର ଅନୁପସ୍ଥିତି। ତା' ଭଳି 'ଗାଇଡ୍' ମିଳିବା ସମ୍ଭବ ନୁହେଁ। ତେବେ ବିଗତ କଥା ଭାବି ଶୋଚନା କରିବାର ସମୟ ନ ଥିଲା। କାମଚଳା ନୀତିରେ ଚର୍ମିରା ଗାଁର ଦୁଇଜଣ ଅପେକ୍ଷାକୃତ ସାହସୀ ବ୍ୟକ୍ତିଙ୍କୁ ବାଛିଲୁ। ଏଠା ଅରଣ୍ୟର ଅନ୍ଦି କନ୍ଦି ଯଦିଚ ଆମକୁ ଜଣାଥାଏ, ତଥାପି ସମୟେ ସମୟେ ଏମାନଙ୍କର ସାହାଯ୍ୟ ସହାୟତା ଆବଶ୍ୟକ ପଡ଼େ। ଆମ ମାଲ୍‌ମସଲା ଧରିବା ଏବଂ ଶିକାରକୁ କାନ୍ଧେଇବା ଏମାନଙ୍କର ମୁଖ୍ୟ କାମ।

ଆଜି ରାତ୍ର ବିହାରର ଦୁଇଟି ଉଦ୍ଦେଶ୍ୟ। କିସାନ୍ ପରିବାର ପାଇଁ ଶିକାରଲବ୍ଧ ଉପହାରଟିଏ ସେମାନଙ୍କ ମନୋରଞ୍ଜନ ଓ ଭୋଜିଭାତ ନିମିତ୍ତ। ଅନ୍ୟ ଉଦ୍ଦେଶ୍ୟଟି ହେଉଛି ଦୁର୍ବୃତ୍ତ ବାଘର ସନ୍ଧାନ କରିବା।

ଅଭିଯାନ ଆରମ୍ଭ ହୋଇଗଲା ସଞ୍ଜ ପରେ। ଖୁରା ବିଶିଷ୍ଟ ବନ୍ୟଜନ୍ତୁମାନେ ଗାଁ ପାଖରେ ଏତେ ଚଞ୍ଚଳ ଦିଶନ୍ତି ନାହିଁ। ଲୋକମାନଙ୍କ **କୋଳାହଳ** କ[redacted]**ପରେ,**

ନିଶୀଥର ନୀରବତା ଉପସ୍ଥିତ ହେଲା ଅନେ ମୃଗଜାତୀୟ ପଶୁ ନଟାରୁ ବାହାରନ୍ତି। କିନ୍ତୁ ଶିକାରୀ ପଶୁମାନେ ଯଥା ବାଘ, ଚିତାବାଘ, ହେଟାବାଘ, ବଳିଆ କୁକୁର ଆଦି ବେଳ ବୁଡ଼ିଲା ମାତ୍ରେଇ ପାଣିଚିଆ ଅନ୍ଧାରରେ ଗାଁ ପାଖକୁ ମାଡ଼ି ଆସନ୍ତି ଖାଦ୍ୟ ଆଶାରେ। ଆମେ ସଅଳ ବାହାରି ପଡ଼ିବା ଅର୍ଥ ହେଉଛି ଯଦି ଦୁରାଚାର ଚିତା ସନ୍ଧ୍ୟା ସମୟରେ ଗାଁ ନିକଟରେ ଧରା ପଡ଼ିଯାଏ ଆମ ମୁଖ୍ୟ ଉଦ୍ଦେଶ୍ୟ ସଫଳ ହୋଇଯିବ। କିନ୍ତୁ ସେପରି କିଛି ଘଟଣା ନଜରକୁ ଆସିଲା ନହିଁ। କେବଳ ଦେଖିଥିଲି ନିଃସଙ୍ଗ ବଳିଆ କୁକୁରଟିଏ, ଦଳରୁ ଫିଟି କୌଣସି କାରଣୁ ଗାଁ ପାଖକୁ ଆସି ଯାଇଥିଲା। ଚିର୍ମରାର ଉତ୍ତର ପଟକୁ ଏକ ମାଇଲ ଅତିକ୍ରମ କଲା ପରେ ଗୋଟିଏ ଅଣ୍ଡିରା କୁଟୁରାର ଆଖି ଜାଣି ପାରି ଗୁଳି ମାରିଥିଲି। ସେ ସେଇଠି ଟଳି ପଡ଼ିଥିଲା ଏବଂ ପ୍ରଥମ ପ୍ରହରରେ ଅଭିଯାନର ପ୍ରାରମ୍ଭିକ ସଫଳତା ସ୍ୱରୂପ ହାସଲ କଲି। ପୁଣି ପ୍ରବେଶ କଲୁ ଘଞ୍ଚ ଅରଣ୍ୟର ଭିତରକୁ। ଗୋଟାଏ ସମ୍ବର ଆମର ଦୃଷ୍ଟିଗୋଚର ହେଲା; କିନ୍ତୁ ଦୂରତା ଯୋଗୁ ବନ୍ଧୁକ ଚଳାଇବା ସମ୍ଭବ ନ ଥିଲା। ଏପରି ସ୍ଥଳେ ରାଇଫଲ୍ ଆବଶ୍ୟକ ଏବଂ ପ୍ରେମ୍‌ଙ୍କ ପାଳି ଆସିଲା। ମୁଁ ହେଡ୍ ଲାଇଟ୍ ଲିଭାଇ ଚୁପ୍ ରହିଲି ଏବଂ ପ୍ରେମ୍ ଜନ୍ତୁକୁ ଅନୁଧାବନ କଲେ ଦୁଇଜଣ ଗାଁ ବାଲା ଗାଇଡ୍‌ଙ୍କ ସହିତ। ଜନ୍ତୁଙ୍କୁ ପିଛା କିରବାରେ ପ୍ରେମ୍ ଓସ୍ତାଦ, ଶିକାର କୌଶଳରେ ସେ ପୋକ। ଫଳଟିକୁ ନ ଧରି ସେ ଫେରନ୍ତି ନାହିଁ। ଏସବୁ ବ୍ୟାପାରରେ ବଡ ଜିଦ୍‌ଖୋର ଓ ନଛୋଡବନ୍ଧା। ମୁଁ ଚୁପ୍‌ଚାପ୍ ବସି ରହିଲି ସେହି ସ୍ଥାନଟିରେ। ନିଝୁମ୍ ରାତିର ନିସ୍ତବ୍ଧ ବନ। କେବଳ ଝିଙ୍କାରିର ଝିଁ ଝିଁ ସ୍ୱର ନିର୍ଜନତାର ସଙ୍ଗୀତ ଗାନ କରୁଥିଲା। ନିର୍ମେଘ ଆକାଶରେ ଭସା ବାଦଲର ସ୍ତରୀଭୂତ ଆସ୍ତରଣ। ବଉଦର ଓଢ଼ଣା ତଳେ ମିଟି ମିଟି ତାରାମାନେ ମୁହଁ ଲୁଚାଉଥିଲେ ପଣତ ଭିତରେ ସୁନ୍ଦରୀ ନାରୀର ଶ୍ରୀମୁଖ ସଦୃଶ। ଅନ୍ଧାକାରାଚ୍ଛନ୍ନ ରଜନୀ। ଅନ୍ଧାରର ମଧ ସୌନ୍ଦର୍ଯ୍ୟ ଥାଏ, ଥାଏ ତା'ର ମାଧୁର୍ଯ୍ୟ ଯାହା ବେଶ୍ ଉପଭୋଗ୍ୟ। ନିବିଡ଼ ନିଶାକାଳରେ ବିଜନ ବନ ରାଇଜର ପାଦଚାରୀ କଥାକାର ଉପଲବ୍ଧି କରିଥାଏ ତା'ର ସୁନ୍ଦରତା। ସୌନ୍ଦର୍ଯ୍ୟ ଚିଜରେ ନ ଥାଏ, ଥାଏ ଚିତ୍ତରେ। ମୁଁ ଘଡ଼ିଏ ମୋହଗ୍ରସ୍ତ ଥିଲି; ବଣ, ନଟା, ପର୍ବତ ଏବଂ ତହିଁର ସଜୀବମାନଙ୍କର କଥା ଭାବୁଥିଲି। ତମସାର ତରଙ୍ଗରେ ମନ ଭାସମାନ ଥିଲା।

ନିର୍ଜନତା ଚିରି ଗୋଟାଏ ଗୁଳିଫୁଟା ଶବ୍ଦ କାନକୁ ସ୍ପର୍ଶ କଲା। ଶବ୍ଦ ତରଙ୍ଗ ପବନ ଚହଲାଇ ଆସ୍ତେ ଆସ୍ତେ ମିଳେଇଗଲା ଗଛ ଓ ଗଗନ ଭିତରେ। ଏ ତ ବୀର ପ୍ରେମ୍‌ଙ୍କ ଶିକାର ସାଫଲ୍ୟର ପ୍ରମାଣ। ମୁଁ ସେମାନଙ୍କୁ ଅପେକ୍ଷା କରି ରହିଲି। କିଛି ସମୟ ଅନେ ସତକୁ ସତ ବଡ଼ ଶିଙ୍ଗଯୁକ୍ତ ସମ୍ବରଟେ ଦୁଇ ଭାରୁଆ କାନ୍ଧେଇ କାନ୍ଧେଇ ମୋ ପାଖରେ ଉପସ୍ଥିତ ହେଲେ। ମୁଁ ପ୍ରେମ୍‌ଙ୍କୁ ବଧାଇ ଦେଲି। ଆଶାନୁଯାୟୀ ଶିକାର

ମିଳିଛି ଉପାହାର ପାଇଁ। ଗୋଟିଏ ଶର୍ମାଙ୍କର ଓ ଅନ୍ୟଟି କିସାନ୍‌ମାନଙ୍କ ପାଇଁ ଉଦ୍ଦିଷ୍ଟ। ଆଉ ଜନ୍ତୁମାନଙ୍କ ପଛରେ ଧାଇଁ ଲାଭ ନାହିଁ। ଆମେ ସନ୍ତୁଷ୍ଟ।

ଶିକାର ଖୋଜି ଦୂର ବାଟ ଆସି ଯାଇଛୁ। ଆମକୁ ଫେରିବାକୁ ହେବ ଚେମେଣିବସା। ସେଠି ସମ୍ବରଟି ଉପହାର ଦେଇ ଫେରିବୁ ଚିର୍ମିରା- ଆମର ବିଶ୍ରାମ କକ୍ଷକୁ। ବୋହିବାକୁ ଆମ ସଙ୍ଗରେ ଅଛନ୍ତି ଚିର୍ମିରାଗାଁର ଭାରବାହୀ ଦୁଇ ଜଣ ଭୂମିଜ ଜାତିର ଆଦିବାସୀ। ସାମାନ୍ୟ ବିରତି ପରେ ପ୍ରେମ୍ ଉଠି ପଡ଼ିଲେ ଗନ୍ତବ୍ୟସ୍ଥଳ ଉଦ୍ଦେଶ୍ୟରେ। କିନ୍ତୁ ହେଡ୍ ଲାଇଟ୍ ଜଳାଇଲା ମାତ୍ରେ ବଲ୍‌ବଟି ହଠାତ୍ ଫିଉଜ ହୋଇଗଲା। ପୋଡ଼ା ବଲ୍‌ବଟିକୁ ଉତାରି ନୂଆ ବଲ୍‌ବଟି ହେଡ୍‌ଲାଇଟ୍‌ରେ ସଂଯୋଗ କରୁଛନ୍ତି ପ୍ରେମ୍, ଏହି ସମୟରେ ଚିତାବାଘର ଖେଙ୍କରା ଶବ୍ଦ ଶୁଣି ଆମର ଅକଲଗୁଡୁମ୍ ହୋଇଗଲା। ମୁଁ ସମ୍ପୂର୍ଣ୍ଣ ଅପ୍ରସ୍ତୁତ ଥିଲି। କାରଣ କାର୍ଟ୍ରିଜ୍ ବେଲ୍‌ଟଟି ଅଣ୍ଟାରେ ବାନ୍ଧୁଥିଲି ସେତେବେଳେ। ଅବଶ୍ୟ ବନ୍ଧୁକର ଦୁଇ ନଳିରେ ଗୁଳି ଭରି ରହିଥିଲା। ଯେତେ ଚଞ୍ଚଳ ସମ୍ଭବ ପ୍ରେମ୍ ଲାଇଟ୍‌କୁ ସଜାଡ଼ି ଜଳାଇଲେ। ଏହାର ଅର୍ଥ ବାଘ ଯଦି ଖୁବ୍ ନିକଟରେ ଥାଏ ସେ ଡରିଯିବ ଏବଂ ଆମକୁ ତତ୍‌କ୍ଷଣାତ୍ ଆକ୍ରମଣ କରିବାକୁ ସାହସ କରିବ ନାହିଁ, କାରଣ ଉଜ୍ଜ୍ୱଳ ଆଲୋକକୁ ଚିତାବାଘ ଭୟକରେ। ଆଲୁଅକୁ ଲୁଚି ରହିବାତା'ର ଭୟାଳୁ ପ୍ରକୃତି। ଏପରିକି ମଶାଲଟିଏ ଦେଖିଲେ ସେ ଡରେ। ଏଣୁ ଗାଁମାନଙ୍କରେ ହୁତ୍ ହୁତ୍ କାଠ ଜାଳି ରଖିବାର ବ୍ୟବସ୍ଥା କରିଥିଲି।

ବର୍ତ୍ତମାନ ଆମେ ପ୍ରସ୍ତୁତ। ମୋ ହାତରେ ଗୋଟାଏ ଶକ୍ତିଶାଳୀ ଦ୍ୱିନଳିଆ ବନ୍ଧୁକ। ପ୍ରେମ୍‌ଙ୍କର ଆଉ ଗୋଟେ ଓଜନଦାର ୩୭୫ ରାଇଫଲ, ସେଥିରେ ଥାଏ ନଅଟି ଗୁଳି ଏକାଦିକ୍ରମେ ବ୍ୟବହାର ପାଇଁ। ଆମେ ଜାଗ୍ରତ ରହିଲୁ। କେଉଁଆଡୁ ଶବ୍ଦଟା ଆସୁଛି ସତର୍କତାର ସହିତ କାନ ଡେରିଲୁ। କାନକୁ ଖୁବ୍ କ୍ଷୀଣ ଶବ୍ଦ ଶୁଭିଲା। ଚିତା ବାଘର ଖେଙ୍କରା ଶବ୍ଦ- ଏଥିରେ ଦ୍ୱିମତ ନ ଥିଲା, କିନ୍ତୁ ଶବ୍ଦ ନିକଟରେ ନ ଥିଲା। ଏଠି ରାତିରେ କୌଣସି ଶବ୍ଦ ଶୁଣି ଦୂରତା ଠଉରାଇବା ସମ୍ଭବ ନୁହେଁ; ବହୁ ସମୟରେ ଭ୍ରମ ସୃଷ୍ଟି ହୁଏ। ମୁଁ ଜାଣି ପାରିଲି ଯେ ଏହା ନିଶ୍ଚୟ ଚିତା ଦମ୍ପତିଙ୍କ ଅଭିସାରର ସଙ୍କେତ। ମନେ ପଡ଼ିଲା। ଏଟା ତ ନଭେମ୍ବର ମାସ। ଶୀତ ଦିନ। ବାଘମାନଙ୍କର ସହବାସ ସମୟ। ନିଶ୍ଚୟ ସେମାନେ କେଉଁଠି ପ୍ରଣୟରେ ମଜ୍ଜିଛନ୍ତି। ବନ୍ୟଜନ୍ତୁ ଅନୁଧ୍ୟାନକାରୀଙ୍କ ପକ୍ଷେ ଏହା ଏକ ବିରଳ ସୁଯୋଗ। କିନ୍ତୁ ସେମାନଙ୍କ ଆମୋଦରଞ୍ଜନ ଦେଖିବାକୁ ମୋ ପକ୍ଷେ ଯେତେ ଉତ୍କଣ୍ଠା ଥାଉନା କାହିଁକି, ଶିକାରର ଅଲିଖିତ ନିୟମକୁ ବିରୋଧ କରି ମୋତେ ଗୁଳି ଚଳାଇବାକୁ ହେବ, କାରଣ ଲୋକମାନଙ୍କ ସୁରକ୍ଷା ପାଇଁ ମୁଁ ବଚନବଦ୍ଧ।

ଆମେ ଶବ୍ଦ ଆସୁଥିବା ଦିଗକୁ ଖୁବ୍ ସନ୍ତର୍ପଣରେ ସ୍ତିମିତ ପାଦରେ ଆଗେଇଲୁ। କିନ୍ତୁ ଶବ୍ଦ କାହିଁ? କ୍ରମଶଃ ଶବ୍ଦ ଆଉ ଶୁଭିଲା ନାହିଁ। ଆହୁରି ଆଗକୁ ଗଲୁ ଧୀରେ

ଧାରେ। କିଛି ଦେଖିଲୁ ନାହିଁ ନୀରବ ବୃକ୍ଷ ବ୍ୟତୀତ, ନିଶ୍ଚଳ ପଥର ଶଯ୍ୟା ବ୍ୟତୀତ। କିଛି ମଧ୍ୟ ଆଉ ଶୁଣିଲୁ ନାହିଁ। ଉଜ୍ଜ୍ୱଳ ଆଲୋକକୁ ଚତୁର୍ଦ୍ଦିଗ ଘୁରାଇ ତନ୍ନ ତନ୍ନ କରି ଖୋଜିଲୁ। କିନ୍ତୁ କେବଳ ଦୃଶ୍ୟ ହେଲା ସେଇ ଗଛ ତରୁ, ଲତା ଓ ଗୋଡ଼ି, ଗେଟି, ପଥର ସମୂହ। ଆମେ କେବଳ ଭୁଆଁ ବୁଲିଲୁ।

ଦୂରରେ ବନାଗ୍ନିର ତାଣ୍ଡବ ଦୃଶ୍ୟ। କେଉଁ ଏକ ଅଜ୍ଞାତ ଅଜ୍ଞାନୀ ବନବାସୀ ନିଆଁ ଗୁଲଟିଏ ବେପରବାୟ ଭାବେ ଶୁଖିଲା ପତ୍ର କିମ୍ବା କାଠରେ ସଂଯୋଗ କରିଦେଇ ଅଥବା ପାଖରେ ଛାଡ଼ିଦେଇ ପଳାଇ ଯାଇଛି। ପରିଣତିର ଭୟାବହତା ପାଇଁ ଟିକିଏ ହେଲେ ଚିନ୍ତା କରି ନାହିଁ ବା ଏଭଳି ଚିନ୍ତା ମନକୁ ସ୍ପର୍ଶ କରି ନାହିଁ। ଅଗ୍ନି କ୍ରମଶଃ ବନ-ପବନରେ ଉତ୍ତେଜିତ ହୋଇ ବାଉଁଶ ବଣ ଓ ବୃକ୍ଷ ସମୂହକୁ ଚାଟି ଚାଲିଥିଲା ଭୋକିଲା ଧ୍ୱଂସାସୁର ଭଳି। ବାଉଁଶ ଗଣ୍ଠିର ଆର୍ତ୍ତ ଚିତ୍କାର, ଠୋଠା ଶବ୍ଦ ବାଣ ଫୁଟିଲା ପରି କାନକୁ ଶୁଭୁଥିଲା। ଅନଳର ବିଭୀଷିକା ବ୍ୟାପି ଚାଲିଥିଲା ବ୍ୟାପକ ଭାବେ। ଏମିତି ନିର୍ଜନ ରାତିରେ ବଣ ରୋଶଣିର ବିରଳ ଦୃଶ୍ୟ ଯାହା ହେଉନା କାହିଁକି, କେଇଟା ମୁହୂର୍ତ୍ତ ମଧ୍ୟରେ ସୁଦୃଶ୍ୟ ସୁଶ୍ୟାମଳ ବନରାଜି ଧ୍ୱଂସସ୍ତୂପରେ ପରିଣତ ହୋଇଯିବ। ମନରେ କ୍ଷୋଭ ଜାତ ହେଉଥାଏ ଅବିବେକୀ ମୂର୍ଖ ଲୋକଙ୍କ ଜ୍ଞାନଶୂନ୍ୟତା ପାଇଁ। ଧ୍ୱଂସ କରିବା ଯେତେ ସରଳ ଓ ସହଜ, ସୃଷ୍ଟି କିରବା କେତେ କଷ୍ଟସାଧ୍ୟ ଆଉ ସମୟ ସାପେକ୍ଷ, ସାଧାରଣ ମଣିଷ ସମଝିବ କାହୁଁ? କିନ୍ତୁ ଏହାର ପ୍ରତିଷେଧ କ'ଣ? ଉଭୟ ଚିନ୍ତା କରୁଥିଲି ମନେ ମନେ। ଏପରିସ୍ଥଳେ କେବଳ ଜନ ଚେତନା ହିଁ ଉପାୟ ଓ ଆୟୁଧ। ଏପରି ଜଙ୍ଗଲପୋଡ଼ି ଦୃଶ୍ୟ ବହୁବାର ଦେଖିଛି। ବୃକ୍ଷଦାହ ସହିତ ଅନ୍ତର୍ଦାହ ଅନୁଭବ କରିଛି।

ଅରଣ୍ୟର ଅନ୍ଧାର କ୍ରମଶଃ ପାଣିଚିଆ ହୋଇ ଆସିଲା। ଆକାଶ ଛାତିରେ ମଳା ଜହ୍ନକୁ କୁଣ୍ଢାଇ ଥିଲେ ସୁଦୂର ଦ୍ରୁମରାଜି। ମ୍ଳାନ ମୌନ ଜହ୍ନ ପାଖକୁ ମଝି ଆକାଶରୁ ଖସରି ଆସିଥିଲା ଭସା ବଉଦର ହାତ ଏକ ଅପୂର୍ବ କଳାତ୍ମକ ଭଙ୍ଗୀରେ। ସିନ୍ଦୁରା ଫାଟିଲା, ପୂର୍ବାକାଶ ଲାଲ୍ ରଙ୍ଗରେ ବିଭାସିତ ହେଲା। ବନ ମୟୂରର ୟାଁଓ ସ୍ୱର ସହିତ ତାଳ ଦେଲା ଅରଣ୍ୟ କୁକ୍‌କୁଟର କେଁ.... କେଁ.... କେଁ ରାବ ଏଂ ସମଗ୍ର ବନରାଜ୍ୟର ପକ୍ଷିକୁଳ ମିଳିମିଶି ପ୍ରଭାତରେ ସଙ୍ଗୀତ ଗାନ କଲେ। କେତେ ମଧୁର ଓ ମନୋମୁଗ୍‌ଧକର ଏଠି ପ୍ରଭାତର ପରିବେଶ। ପ୍ରକୃତିର ପ୍ରଭାତ ପର୍ବ ଓ ତା'ର ବେଶ ବିନ୍ୟାସରେ ମୁଁ ମୁଗ୍‌ଧ ହୋଇଗଲି।

ଏଥର ଡେମେଣିବସା ଫେରିବା କଥା। ମନ ମୁତାବକ ଶିକାର ଉପହାର ଆମ ପାଖେ ମହଜୁଦ। ସେଗୁଡ଼ିକୁ ଧରିଥା'ନ୍ତି ଭାରବାହୀ ଦି'ଜଣ ଭୂମିଜ ଜାତିର ଲୋକ। ଖାଲ, ଢିପ, ପଥୁରିଆ, ଅଙ୍କାବଙ୍କା ବାଟଚାଲୁଛୁ, ଦେଖିଲୁ ବାଟରେ ବୃହତ୍

ମହୁଫେଣାଟିଏ ଛିନ୍ନଛତର ହୋଇ ତଳେ ପଡ଼ିଛି କାରୁକାର୍ଯ୍ୟମଣ୍ଡିତ ବହୁ ପୁରାତନ ଜୀର୍ଣ୍ଣ ମନ୍ଦିରର ଭଗ୍ନାବଶେଷ ଭଳି। ଦୁର୍ଦ୍ଦଶାଗ୍ରସ୍ତ ମହୁଫେଣାଟିକୁ ପରୀକ୍ଷା ନ କରି ରହିପାରିଲୁ ନାହିଁ। ଫେଣାଟିର ପୂର୍ବ ଠିକଣା ନିଶ୍ଚୟ ପାଖର କେଉଁ ବୃକ୍ଷରେ ହୋଇଥିବ। ଉପରକୁ ଅନାଇ ଲକ୍ଷ୍ୟ କଲି, ମଧ୍ୟମ ମୋଟେଇର ଶାଳ ବୃକ୍ଷଟିଏ ଅନ୍ୟ ଗଛମାନଙ୍କଠୁଁ ଭିନ୍ନ। ଶାଳଗଛଗୁଡ଼ିକ ସିଧାସଳଖ ଉପରକୁ ବଢ଼ିଥାନ୍ତି; କିନ୍ତୁ ଏଇ ଗଛର ଗଣ୍ଡି ଭୂଇଁ ସହିତ ଅନ୍ତତଃ ୭୦ ଡିଗ୍ରୀ କୋଣ ଉତ୍ପନ୍ନ କରି ପ୍ରାୟ ୧୦ ଫୁଟ ପରେ ଦୁଇ ଭାଗରେ ବିଭକ୍ତ ହୋଇ ଶାଖା- ପ୍ରଶାଖା ମେଲିଛି ଛତାଟିଏ ପରି। ପୁଣି ଦେଖିଲି, ମୂଳଠୁଁ ଦୋକାନି ବାହୁ ପର୍ଯ୍ୟନ୍ତ ସଦ୍ୟ ଓ ପୁରାତନ ଜନ୍ତୁରାମୁଡ଼ା ଦାଗ ଭର୍ତ୍ତି ରହିଛି। ଆଉ ଟିକିଏ ସୂକ୍ଷ୍ମ ନଜରରେ ଡାଳ ଭିତରକୁ ନିରୀକ୍ଷଣ କଲି। ଏକ ଅତ୍ୟୁଚ୍ଚ ମଝିଲା ଡାଳରେ ମହୁମାଛି ବସାର ଅବସ୍ଥିତି ସମ୍ବନ୍ଧରେ ଧାରଣା ଦୃଢ଼ ହେଲା। ଅନ୍ୟୁନ ଚାରି ଫୁଟ ଲମ୍ବ ଓ ଦେଢ଼ଫୁଟ ଓସାର ବିଶିଷ୍ଟ ସ୍ଥାନରେ ମହୁବସାର ବ୍ୟାପ୍ତିଥିବାର ଚିହ୍ନ ଜାଣିପାରିଲି। କିନ୍ତୁ ବସାଟି ଧ୍ୱଂସ ପାଇ ଯାଇଛି ବୋଧହୁଏ ଗତ ରାତିରେ କିମ୍ବା ତା' ପୂର୍ବ ରାତିରେ। କେତୋଟି ଏକୁଟିଆ ବାଘୁଆ ମହୁମାଛି ପାଖରେ ଏଣେତେଣେ ଉଡୁଥିବାର ଲକ୍ଷ୍ୟ କଲି ଏବଂ କେତୋଟି ବିପନ୍ନ ମହୁମାଛି ଉଜୁଡ଼ା ମହୁଫେଣା ପାଖରେ ବସିଥିବାର ଦେଖିଲି। ମୋର ଅନୁମାନ ଠିକ୍। ଏ ତ ଦୁଷ୍ଟ ଭାଲୁର କାଣ୍ଡ। ବୋଧହୁଏ ଖାଦ୍ୟ ଅଭାବରୁ କ୍ଷୁଧାର୍ତ୍ତ ଭଲ୍ଲୁକ ଗଛ ଚଢ଼ି ମହୁଫେଣାରୁ ମହୁ ଖାଇବାକୁ ଚେଷ୍ଟା କରିଛି, ଫଳତଃ ସଂଗ୍ରାମୀ ମହୁମାଛିମାନଙ୍କ ସମବେତ ଆକ୍ରମଣର ସମ୍ମୁଖୀନ ହୋଇଛି। ପ୍ରତିରୋଧ ସତ୍ତ୍ୱେ ସେ ମହୁର ମିଠା ଛାଡ଼ିପାରିନାହିଁ। ଏଣୁ ବିରକ୍ତି, କ୍ରୋଧ ଓ ରାଗରେ ଉତ୍ତେଜିତ ହୋଇ ବୃହତ୍ ମହୁଫେଣାଟିକୁ ନଖରେ ଭାଙ୍ଗିବିଦାରି ନାରଖାର କରିଦେଇଛି ଏବଂ ପରିଶେଷରେ ଫେଣାଟି ଭୂପତିତ ହୋଇଛି। ପତିତ ଫେଣା ପାଖରେ କେତୋଟି 'ଶୁକ' ଓ 'ପ୍ୟୁପା' ଇତସ୍ତତଃ ପଡ଼ିଥିବାର ଦେଖିଲି। ମୋର ଉତ୍କଣ୍ଠା ବଢ଼ିଲା। ସଙ୍ଘର୍ଷର ଯୁଦ୍ଧୋତ୍ତର ପରିସ୍ଥିତି ଜାଣିବା ପାଇଁ- ବାଦୀ ଓ ପ୍ରତିବାଦୀର ଅବସ୍ଥା ବୁଝିବାପାଇଁ। ପ୍ରତିବାଦୀ ମହୁମାଛିମାନେ ତ ବାସଶୂନ୍ୟ ହୋଇ ବୁଲୁଛନ୍ତି ଏଣେତେଣେ; କିନ୍ତୁ ବାଦୀର ଅବସ୍ଥା କ'ଣ ! ବୋଧହୁଏ ଆଘାତ ପାଇ କେଉଁ କୋରଡ଼ରେ ଆତ୍ମଗୋପନ କରିଥିବ- ଖୋଜି ପାଇବା ମୁସ୍କିଲ, ଜଙ୍ଗଲ- ସମୁଦ୍ର ଭିତରୁ ଶାମୁକାଟିଏ ଖୋଜି ପାଇବା ସଦୃଶ- ଏକ ବୃଥା ପ୍ରୟାସ। ତା'ର ଦୂରବସ୍ଥା ବର୍ତ୍ତମାନ ଜାଣିବା ସମ୍ଭବ ନ ଥିଲା।

ଆମେ ପୁଣି ଚେମେଣିବସା ଗାଁ ଆଡ଼କୁ ଅଗ୍ରସର ହେଲୁ। ମହୁମାଛି ସମ୍ବନ୍ଧରେ ଚର୍ଚ୍ଚା ଆଲୋଚନା ଆମ ବାଟଚଲା କଥୋପକଥନର ମୁଖ୍ୟାଂଶ ହୋଇ ରହିଲା ରାସ୍ତା ଶେଷ ହେବା ପର୍ଯ୍ୟନ୍ତ। ସୃଷ୍ଟିକ୍ରିୟାରେ ମଧୁମକ୍ଷିକାର ଜୀବନ ବୃତ୍ତାନ୍ତ ଏକ ବିଶେଷ ଅଧ୍ୟାୟ ବହନ କରେ। ମହୁମାଛି ଏକ ସାମାଜିକ ଜୀବ। ସାଧାରଣତଃ ତିନି

ପ୍ରକାର ମହୁମାଛି ଆମ ନଜରକୁ ଆସିଥାଏ । ସୁକୁଟି ବା ଗୁଣ୍ଡି ମହୁମାଛି, ସାତଫେଣିଆ ଏବଂ ବାଘୁଆ । ସୁକୁଟି ବା ଗୁଣ୍ଡି ମହୁମାଛି ଖୁବ୍ କ୍ଷୁଦ୍ର; ମାଟିଘର କାନ୍ଥ, ଶୁଖିଲା ବାଉଁଶ ବାକାଠରେ ଏମାନେ ବସା ବାନ୍ଧନ୍ତି । ବସାର ଆକାର ପ୍ରାୟ ଅଣ୍ଡା ଆକୃତିର । ଏମାନଙ୍କର ମହୁ ସଂଗ୍ରହ ଖୁବ୍ କ୍ଷୀଣ ଏବଂ ଛୋଟ ଫୁଲରୁ ଯାହା ମହୁ ସଂଗ୍ରହ କରନ୍ତି, ଖାଇଯାଆନ୍ତି । ମହୁ ସାଇତା ରହିଥାଏ କ୍ଷୁଦ୍ର ଫେଣାର କ୍ଷୁଦ୍ରତମ କୋଷ ମଧ୍ୟରେ, ଆମ ନଜରକୁ ବିଶେଷ ଦୃଶ୍ୟ ହୁଏ ନାହିଁ ।

ଗୁଣ୍ଡି ମହୁମାଛିଠୁଁ ବଡ଼ (ମାଛି ପ୍ରାୟ) ସାତ ଫେଣିଆ ମହୁମାଛି । ଏମାନେ ଗଛରେ ବସାବାନ୍ଧି ସଂଘବଦ୍ଧ ଭାବେ ରହନ୍ତି । ଗୋଟିଏ ସ୍ଥାନରେ ସାତଟି ଫେଣା ଲଗାଲଗି କରି ପ୍ରସ୍ତୁତ କରିଥା'ନ୍ତି । ଏମାନଙ୍କ ହାବଭାବ ପ୍ରାୟତଃ ବାଘୁଆ ମହୁମାଛିଙ୍କ ପରି ।

ମହୁମାଛିମାନଙ୍କ ମଧ୍ୟରେ ବାଘୁଆ ମହୁମାଛି ବୃହତ୍ । ସେମାନେ କର୍ମରତ, ସଂଗ୍ରାମୀ ଏବଂ ଆକାର ଓ ଆକୃତିରେ ପ୍ରାୟ ଛୋଟ ଭଅଁର ବା ଗଣଗଣିଆ ମାଛି ସଦୃଶ । ଏମାନଙ୍କ ମଧ୍ୟରେ ଶ୍ରେଣୀ ବିଭାଗ ରହିଛି । ପ୍ରତ୍ୟେକ ମହୁମାଛି ଦଳରେ ତିନି ଶ୍ରେଣୀର ମାଛି ରହିଥା'ନ୍ତି, ଯଥା- ରାଣୀ, ପୁରୁଷ ଓ ଶ୍ରମିକ ମାଛି । ରାଣୀ ମହୁମାଛି ଦଳର ମୁଖିଆ ଏବଂ ସାମ୍ରାଜ୍ଞୀର ଆଖ୍ୟା ବହନ କରେ । ସେ ସମସ୍ତ ମହୁମାଛି ଅପେକ୍ଷା ଆକାରରେ ବଡ଼ । ରାଣୀ ମାଛିର ଉପସ୍ଥିତିରେ ଉଭୟ ପୁରୁଷ ଏବଂଶ୍ରମିକ ମାଛି ସଂଗଠିତ ଓ ଶୃଙ୍ଖଳିତ ଭାବରେ ନିଜ ନିଜର କାର୍ଯ୍ୟ ସୁଚାରୁ ରୂପେ କରିଥାଆନ୍ତି । ଆମ ଭାରତୀୟ ମହୁମାଛି ଦଳରେ ୧୫ ହଜାରରୁ ୩୦ ହଜାର ପର୍ଯ୍ୟନ୍ତ ମହୁମାଛି ରହିଥାଆନ୍ତି । କିନ୍ତୁ ଯେତେବେଳେ ଖାଦ୍ୟ ସ୍ରୋତ କମିଯାଏ ସେତେବେଳେ ଏମାନଙ୍କ ସଂଖ୍ୟା କମ୍ ହୋଇପାରେ କିମ୍ବା ଯେତେବେଳେ ବଂଶବୃଦ୍ଧିର ସମୟ ଆସେ ସେତେବେଳେ ପୁରୁଷ ମହୁମାଛିମାନଙ୍କର ସଂଖ୍ୟା ୧୦୦ରୁ ୧୦୦୦ ପର୍ଯ୍ୟନ୍ତ ହୋଇଥାଏ । କିନ୍ତୁ ଯେତେବେଳେ ସେମାନଙ୍କର ଆବଶ୍ୟକ ହୁଏ ନାହିଁ, ସେତେବେଳେ ସେମାନଙ୍କୁ ରଖି ପାଳିବା ଦରକାର ପଡ଼େ ନାହିଁ, ଯଦି ସେମାନେ ବଂଶରେ ରହି ଯାଆନ୍ତି, ତା' ହେଲେ ସେମାନଙ୍କୁ ମାରି ଦିଆଯାଏ । ରାଣୀ ମହୁମାଛି ଦେଇଥିବା ଅଣ୍ଡାରୁ ଶ୍ରମିକ ମହୁମାଛି ଏବଂ ରାଣୀ ମହୁମାଛି ଜନ୍ମ ଲାଭ କରେ ଏବଂ ଏହି ସଜୀବ ଅଣ୍ଡାରୁ ପୁରୁଷ ମହୁମାଛି ମଧ୍ୟ ବିକାଶ ଲାଭ କରେ ।

ରାଣୀ ମହୁମାଛି ପୂର୍ଣ୍ଣାଙ୍ଗ ହେବାର ଏକ ସପ୍ତାହ ଭିତରେ ପୁରୁଷ ମାଛିର ସଂସ୍ପର୍ଶରେ ଆସି ଅଣ୍ଡା ଦେବା ଆରମ୍ଭ କରିଥାଏ । ସଙ୍ଗମ ପାଇଁ ରାଣୀ ମହୁମାଛି ମହୁଫେଣା ଛାଡ଼ି ବାହାରକୁ ଯାଏ । ତା' ସହିତ ପୁରୁଷ ମାଛି ମଧ୍ୟ ଯାଆନ୍ତି । ସାଧାରଣତଃ ୪-୫ ଥର ଏହି ଉଦ୍ଦେଶ୍ୟରେ ରାଣୀ ମାଛି ବସା ଛାଡ଼ି ବାହାରକୁ ଯାଏ । ସ୍ୱଇଚ୍ଛାରେ ଦଳର ଆବଶ୍ୟକତା ଅନୁଯାୟୀ ରାଣୀ ମାଛି ଅବନ୍ଧ୍ୟ କିମ୍ବା ବନ୍ଧ୍ୟ ଅଣ୍ଡା ଫେଣାର ପ୍ରତି ମଧୁଘେରାରେ ଗୋଟି

ଗୋଟି କରି ଦେଇଥାଏ। ଏକା ଦିନକେ ରାଣୀ ମାଛି ୩୦୦ ପର୍ଯ୍ୟନ୍ତ ଅଣ୍ଡା ଦେଇଥାଏ। ଅଣ୍ଡାଗୁଡ଼ିକ ୪ରୁ ୭ ଦିନ ଭିତରେ ଫୁଟି ତା' ମଧ୍ୟରୁ ଧଳା ଶୂକ (ଲାର୍ଭା) ବାହାରେ। ଏହି ଶୂକଗୁଡ଼ିକୁ ଶ୍ରମିକ ମାଛିମାନେ ଖାଦ୍ୟପେୟ ଦେଇ ଲାଳନ ପାଳନ କରନ୍ତି। ଶୂକ ଅବସ୍ଥା ସାଧାରଣତଃ ୫ରୁ ୭ଦିନ ରହେ ଏବଂ ତା' ପରେ ଘେରା ଭିତରେ ଖୋସା ବାନ୍ଧେ। ଦୁଇ ସପ୍ତାହ ମଧ୍ୟରେ ଏଥିରୁ ପୂର୍ଣ୍ଣାଙ୍ଗ କୀଟ ବାହାରେ। ଅବନ୍ଧ୍ୟ ଅଣ୍ଡାରୁ ଶ୍ରମିକ ମହୁମାଛି ଏବଂ ବନ୍ଧ୍ୟ ଅଣ୍ଡାରୁ ପୁରୁଷ ମହୁମାଛି ଉତ୍ପନ୍ନ ହୁଅନ୍ତି। ଏହା ପରେ ରାଣୀ ମାଛି ନୂଆ ରାଣୀ ମାଛି ପାଇଁ ଅଣ୍ଡା ଦେଇ ସେଥିରୁ ନୂଆ ରାଣୀ ମାଛି ବାହାରିବାପୂର୍ବରୁ ଦଳେ ମାଛିକୁ ସଙ୍ଗରେ ନେଇ ବସା ଛାଡ଼ି ଅନ୍ୟତ୍ର ଚାଲିଯାଇ ନୂଆବସା ଗଢ଼େ। କୌଣସି ମହୁମାଛି ଦଳରେ ଏକାଧିକ ରାଣୀ ରହେ ନାହିଁ। ରାଣୀ ମହୁମାଛି ଦୁଇ ତିନି ବର୍ଷ ସକ୍ରିୟ ରହି ବଂଶବୃଦ୍ଧିରେ ସାହାଯ୍ୟ କରିଥାଏ।

ପୁରୁଷ ମାଛି ଦେଖିବାକୁ କଳା। ତା'ର ନାହୁଡ଼ ନ ଥାଏ, ଏଣୁ କାହାରିକୁ ଆଘାତ କରିପାରିବ ନାହିଁ। ତା'ର ସୁଖଣ୍ଡି ଗ୍ରନ୍ଥି ନାହିଁ, ଏଣୁ ଫୁଲରୁ ମଧୁ ସଂଗ୍ରହ କରିବା ଶକ୍ତି ନାହିଁ। ପୁରୁଷ ମାଛି କେବଳ ଦଳର ପରାଙ୍ଗପୁଷ୍ଟ ତଥା ରାଣୀ ମାଛି ସହଗୋଟିଏ ଥର ମାତ୍ର ସଙ୍ଗମ କରିଥାଏ ଏବଂ ପରେ ତା'ର ଉପସ୍ଥିତି ଦଳରେ ଅନାବଶ୍ୟକ ହୋଇପଡ଼େ।

ମହୁମାଛି ଦଳରେ ପ୍ରାୟ ଶତକଡ଼ା ୯୫ ଭାଗ ଶ୍ରମିକ ଶ୍ରେଣୀର। ଏମାନଙ୍କର ଆୟୁଷ ମାତ୍ର ଛଅ ସପ୍ତାହ। ଜନ୍ମର ପ୍ରଥମ ୩ ସପ୍ତାହ ମହୁଘେରା ଭିତରେ ରହି ବିଭିନ୍ନ ପ୍ରକାର ଘରୋଇ କାମ ଯଥା- ନୂତନ ମହୁଘେରା ତିଆରି କରିବା, ଶୂକ ଅବସ୍ଥାରେ ଥିବା ମହୁମାଛି ପାଳନ କରିବା, ଫୁଲରୁ ମହୁ ସଂରକ୍ଷଣ କରିବା, ରାଣୀ ମାଛିର ସେବା ଶୁଶ୍ରୂଷା କରିବା ଇତ୍ୟାଦି କାମ କରିଥାଆନ୍ତି। ବାକି ତିନି ସପ୍ତାହ ବାହାରୁ ମକରନ୍ଦ ଓ ପରାଗରେଣୁ ସଂଗ୍ରହ କରନ୍ତି। ଖାଦ୍ୟ ସଂଗ୍ରହ ପାଇଁ ଶ୍ରମିକ ମାଛି ଦୁଇ ଦଳରେ ବିଭକ୍ତ ହୋଇଥାଆନ୍ତି। ଗୋଟିଏ ଦଳ ଅନ୍ୱେଷଣକାରୀ ଓ ଅନ୍ୟଟି ମଧୁ ସଂଗ୍ରହକାରୀ। ଅନ୍ୱେଷଣକାରୀ ଦଳ ପ୍ରଥମେ ବିଭିନ୍ନ ଜାଗାକୁ ଯାଇ ଖାଦ୍ୟର କିସମ, ପରିମାଣ ଓ ଦୂରତା ସମ୍ବନ୍ଧରେ ଖବର ନେଇ ଆସି ମହୁଘରା ଆଗରେ ଏକପ୍ରକାର ନାଚ କରନ୍ତି। ସଂଗ୍ରହକାରୀ ଦଳ ସେମାନଙ୍କଠୁଁ ଆଭାସ ପାଇବା ମାତ୍ରେ ସଙ୍ଗେ ସଙ୍ଗେ ଖାଦ୍ୟ ସଂଗ୍ରହ କରିବାରେ ଲାଗିପଡ଼ନ୍ତି। ଏହା ବ୍ୟତୀତ ମହୁଘେରାକୁ ସଫାସୁତରା ରଖିବା, ଶତ୍ରୁ ଆକ୍ରମଣରୁ ନିଜ ଦଳକୁ ରକ୍ଷା କରିବା ଇତ୍ୟାଦି ସୈନିକ କାମକରନ୍ତି। ରାଣୀର ଅନୁପସ୍ଥିତିରେ ଶ୍ରମିକ ମାଛି ମହୁଫେଣାରେ ଅଣ୍ଡା ଦେଇ ଥାଆନ୍ତି କିନ୍ତୁ ଏଥିରୁ କେବଳ ପୁରୁଷ ମାଛି ବାହାରନ୍ତି ଏବଂ କ୍ରମେ ଦଳଟି ଦୁର୍ବଳ ହୋଇପଡ଼େ।

ଏମିତି ମହୁମାଛି ସମ୍ବନ୍ଧରେ ଚର୍ଚ୍ଚା କରି ବାଟ ଚାଲିଛୁ, ଏକ ଶୁଷ୍କ ଝରଣାର ପଥର ପାର୍ଶ୍ୱରେ ମଧ୍ୟମ ଧରଣର ଭାଲୁଟିଏ ମରି ପଡ଼ିଥିବାର ଦୃଶ୍ୟ ଆମକୁ ତାଜୁବ

କରିଦେଲା। ଯାହାକୁ କଳ୍ପନା କରିଥିଲି, ତାହା ଏମିତି ଅପ୍ରତ୍ୟାଶିତ ଭାବେ ଉପସ୍ଥିତ ହେବାର ସୁଯୋଗ ମୋ ଅନୁଭୂତିରେ ବିରଳ। ପ୍ରେମ୍ ଓ ମୁଁ ସହସା ମୃତ ଭାଲୁଟିକୁ ପରୀକ୍ଷା ନିରୀକ୍ଷା କରି ବସିଲୁ। ଗତ ରାତିରେ ଏହାର ମୃତ୍ୟୁ ଘଟିଛି ବୋଲି ଅନୁମାନ କଲୁ। ଦେହରେ କୌଣସି କ୍ଷତସ୍ଥାନ ନାହିଁ, କେବଳ ମୁହଁ ଏବଂ ଆଖି ନଷ୍ଟ ହୋଇଯାଇଛି ଭୀଷଣ ଭାବେ, ଆଖି ଦୁଇଟି ଯେମିତି କିଏ ଓପାଡ଼ି ନେଇଛି। ଏ ତ ସୈନିକ ମହୁମାଛିଙ୍କ କାମ ନିଶ୍ଚୟ, ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ଡେରି ଲାଗିଲା ନାହିଁ। ଏଇ ଭାଲୁଟି ଯେତେବେଳେ ମହୁଫେଣାକୁ ଆକ୍ରମଣ କରିଛି ଏବଂ ଫେଣାକୁ ବୃକ୍ଷଚ୍ୟୁତ କରିଛି ସୈନିକ ମହୁମାଛିମାନେ ସଂଘବଦ୍ଧ ଆକ୍ରମଣ କରିଛନ୍ତି। ଭାଲୁ ଦେହରେ ବହୁତ ବାଳ ଥିବାରୁ ବିପୁଳ ସଂଖ୍ୟାରେ ସୈନିକ ମାଛିମାନେ ତା' ମୁହଁକୁ ଆଘାତ କରିଛନ୍ତି ଏବଂ ତା'ର ଆଖିକୁ ସମ୍ପୂର୍ଣ୍ଣ ଭାବେ ନଷ୍ଟ କରିଛନ୍ତି। ଫଳରେ ଭାଲୁ ଅନ୍ଧ ହୋଇ ଯାଇଛି ଏବଂ ସେ ବିକଳରେ ଦୌଡ଼ିବା ଅବସ୍ଥାରେ କୌଣସିଠାରେ ଆଘାତ ପାଇ ଶେଷରେ ମୃତ୍ୟୁବରଣ କରିଛି। ମୁଁ ଏପର୍ଯ୍ୟନ୍ତ ଜାଣିଥିଲି ଯେ ମଧୁମକ୍ଷିକା କେବଳ ପୁଷ୍ପରୁ ମଧୁ ସଂଗ୍ରହ କରେ, ଅମୃତ ସଂଚୟ କରେ। କିନ୍ତୁ ତା' ଶୁଣ୍ଢ (ନାହୁଡ଼)ରେ ଆବଶ୍ୟକସ୍ଥଳେ ଆତ୍ମରକ୍ଷା ଓ ଶତ୍ରୁସଂହାର ପାଇଁ ବିଷ ଥାଇପାରେ; ଯାହା ଆମେ ମୃତ ଭାଲୁଟି ଦେଖି ଲକ୍ଷ୍ୟ କରିଥିଲୁ। 'ବାଘୁଆ ମହୁମାଛି ଆବଶ୍ୟକ ସ୍ଥଳେ ବାଘକୁ ଆକ୍ରମଣ କରି ମାରି ଦେଇଥିବାର ନଜିର ରହିଛି। ସେଥିପାଇଁ ତାର ନାମକରଣ 'ବାଘୁଆ' ହୋଇଛି ବୋଲି ଅନୁମାନ କରାଯାଏ।

ଶିକାର ଉପହାରକୁ ଧରି ଆମେ ଚେମେଣିବସା ପହଞ୍ଚିଲୁ। ଚେମେଣିବସା ବାସିନ୍ଦାମାନେ ଉପହାର ଦେଖି ଆଶ୍ଚର୍ଯ୍ୟ ତଥା ଭକ୍ତି ଗଦ୍ ଗଦ୍ ଢଙ୍ଗରେ ଆମକୁ ସ୍ୱାଗତ କଲେ। ଉପହାରଟା ସେମାନଙ୍କ ପାଇଁ ଆସାମନ୍ୟ ଏବଂ କଳ୍ପନା ବାହାରେ ଥିଲା। ଫେନା କିସାନ୍ କହିଲା- "ତୁ ବୋ ଭଗବାନ ଏନ୍‌କର....।" ମୁଁ କହିଲି- "ଏଟା କିଛି ନୁହେଁ, ସାମାନ୍ୟ। ତମେମାନେ ଆମକୁ ଯେଉଁ ଶ୍ରଦ୍ଧା ଓ ସ୍ନେହ ଦେଇଛ, ଆଦର କରିଛ, ତା' ତୁଳନାରେ ଆମେ କିଛି ଦେଇନାହୁଁ ତମମାନଙ୍କୁ।"

ଆମେ ଚିର୍ମରା ଫେରିଲୁ। ଶ୍ରୀଚରଣ ଶର୍ମାଙ୍କ ବାଡ଼ି ବାଗାନ୍‌ର ଏକେଣା ଏକୁଟିଆ ଘରଟି ଆମର ବିଶ୍ରାମାଗାର। ନିତ୍ୟକର୍ମ ସାରିସେଠାରେ ବିଶ୍ରାମ ନେଲୁ। କାଲି ରାତିରେ ବାଘଙ୍କର ସହବାସ ପର୍ବ ମୋତେ ଆବିଷ୍ଟ କରିଥାଏ। ଦୁର୍ଲଭ ଦୃଶ୍ୟଟି ଅଳ୍ପକେ ହରାଇଥିଲି। ଦୃଶ୍ୟଟିର ସରଜମିନ ତଦନ୍ତ କରିବାକୁ ଇଚ୍ଛା ପ୍ରକାଶ କଲି। ସଖା ପ୍ରେମ ଜଣେ ବନାତୁର ବ୍ୟକ୍ତି, ବନାକର୍ଷଣ ତାଙ୍କୁ ବାୟା କରେ। ସବୁବେଳେ ବନ ଭିତରେ ବାସ କରିବାକୁ ସତତ ବ୍ୟାକୁଳ। ମୋ ପ୍ରସ୍ତାବରେ କେବେ ଅମତ ହୁଅନ୍ତି ନାହିଁ। ଜଙ୍ଗଲ ପାଇଁ ସର୍ବଦା ହଁ କରିବା ବ୍ୟକ୍ତି। ସଖା ଆଳସ୍ୟ ଦୂର କରି ସହସା ବାହାରି

ପଡ଼ିଲେ ଘଟଣାର ସରଜମିନ ତଦନ୍ତ ପାଇଁ। ସ୍ଥାନଟିକୁ ଠିକ୍ ଭାବେ ଠଉରାଇ ପାରିଲୁ। ନିରୋଳା ଜାଗାଟିଏ। ମୁତୁରି ଲତା ବହୁଳ ଭାବେ ବଢ଼ିଥାଏ, ନିକଟର ଗଛଗୁଡ଼ିକ ଉପରେ ଆଶ୍ରା ଜମାଇ ଲଟେଇଥାନ୍ତି। ଅସଂଖ୍ୟା ଶାରୀ ବିଶାଳ ଅଶ୍ୱତ୍ଥ ବୃକ୍ଷଟିରେ ସ୍ୱର ରଚନା କରି ଖାଦ୍ୟ ସଂଗ୍ରହରେ ଲାଗି ପଡ଼ିଥାନ୍ତି, ଅଭୟାରଣ୍ୟର ବାର୍ତ୍ତାପ୍ରଚାର କରୁଥାନ୍ତି। ବନ ବିହଙ୍ଗର ଅପୂର୍ବ ହର୍ଷରୋଳରେ ଜଙ୍ଗଲ ଜଗତ ଶତଧା ମୁଖରିତ। ବନଫୁଲର ମହକ ଓ ମହୁଆ ଫୁଲର ଚହଟରେ ଚତୁର୍ଦ୍ଦିଗ ସୁରଭିତ। ବନ ପବନ ଏକ ଭିନ୍ନ ବାସ୍ନାରେ ବତୁରି ରହିଥିଲା। ସଜ ସକାଳର ସୁରମ୍ୟ ପରିବେଶ କଅଁଳ ସୁନେଲି ସୂର୍ଯ୍ୟ କିରଣରେ ବୃକ୍ଷଲତାଙ୍କ ଲାବଣ୍ୟ ବେଶ ପ୍ରକୃତିପିପାସୁ, କବି ଲେଖକଙ୍କୁ ଯୋଗାଉଥିଲା ଏକ ଅପୂର୍ବ ଖୋରାକ, କଳ୍ପନା ରାଜ୍ୟରେ ଭାସିଯିବା ପାଇଁ ଏକ ବିରଳ ସୁଯୋଗ, ଏକ ଅହେତୁକ ଅନୁଭବ। ମୁଁ ପ୍ରଲୁବ୍ଧ ଚାହାଣିରେ ଦଣ୍ଡେ ସ୍ଥିର ହୋଇ ଦେଖୁଥିଲି ପକ୍ଷୀ ଜଗତର ମେଳା। ପରିବେଶ ମୋତେ ଆବିଷ୍ଟ କରିଥିଲା।

ସାଙ୍ଗରେ ଯବକାଚ (ଲେନ୍‌ସ) ନେଇଥିଲି। ଭୂଇଁରେ ଥାପିତ ପ୍ରାଣୀମାନଙ୍କର ପାଦଚିହ୍ନ ତନ୍ନ ତନ୍ନ କରି ପରୀକ୍ଷା କଲି। ଅନେକ ସ୍ଥାନରେ ଟାଣ ମାଟି ହେତୁ ପାଦଚିହ୍ନ ବାରି ହେଉ ନ ଥାଏ। ଏ ଅଞ୍ଚଳରେ ବହୁତ ବାରହା ଥିବାର ସୂଚନା ମିଳୁଥାଏ ପାଦଚିହ୍ନମାନଙ୍କରୁ। ଖୁରା ବିଶିଷ୍ଟ ପ୍ରାଣୀମାନଙ୍କ ଚିହ୍ନ ସହଜେ ଜଣାପଡ଼ିଯାଏ। କାରଣ ଖୁରାର ମୁନିଆ ଅଂଶ ମାଟି ଭିତରକୁ କିଛି ପଶିଯାଇଥାଏ। କିନ୍ତୁ ବାଘ ଜାତୀୟ ପଶୁ (ବିଲେଇ, ବଣଭୁଆ, କଟାସ; ଗଥିଆ, ଚିତାବାଘ)ଙ୍କର ପାଦ ନରମ ଓ ମାଂସଳ। ମାଟି ନରମ ଥିଲେ ଏମାନଙ୍କ ପାଦ ଚିହ୍ନ ବାରିହୁଏ।

ଏଠି ପାଦଚିହ୍ନରୁ ପ୍ରାଣୀର ପରିଚିତି ସମ୍ବନ୍ଧରେ ପଦେ ନ କହି ରହିପାରୁ ନାହିଁ। ପ୍ରକୃତି ପାଠାଗାରରୁ ଅନେକ କିଛି ଜ୍ଞାନ ଶିକ୍ଷାଲାଭ କରିବାର ଅଛି। ଅତି ସାଧାରଣ ଓ ନଗଣ୍ୟ ପଦାର୍ଥରୁ ମଧ୍ୟ ଅନେକ ଗୂଢ଼ ତଥ୍ୟ ପରିଲକ୍ଷିତ ହୋଇଥାଏ। ନିବିଡ଼ ଅରଣ୍ୟ ନିବାସୀ ତଥା ଜଙ୍ଗଲର ସଂକୀର୍ଣ୍ଣ ପଥର ପଦଚାରୀମାନଙ୍କ ପକ୍ଷେ ଜୀବଜନ୍ତୁମାନଙ୍କ ପାଦଚିହ୍ନ ଓ ଖୁରାଦାଗ ସମ୍ବନ୍ଧରେ ପ୍ରାରମ୍ଭିକ ଜ୍ଞାନ ଥିଲେ ଅନେକ ଆସନ୍ନ ବିପଦରୁ ରକ୍ଷାମିଳେ। ଆଦ୍ୟ ଆଷାଢ଼ର ପହିଲି ବର୍ଷା ପରେ ପରେ ମାଟି ନରମ ଥିବାବେଳେ ପଶୁର ପାଦଚିହ୍ନ ପରଖି ପଶୁଗଣନା କରଯାଇଥାଏ।

ପାଦଚିହ୍ନ ପଦ୍ଧତିରେ ପଶୁମାନଙ୍କୁ ଚିହ୍ନଟ କରିବା ପାଇଁ ସେମାନଙ୍କୁ ସାଧାରଣତଃ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଏ- (୧) ଖୁରା ଜାତୀୟ ପ୍ରାଣୀ ଓ (୨)ମାଂସଳ ପାଦ ଜାତୀୟ ପ୍ରାଣୀ।

ଖୁରାଜାତୀୟ ପ୍ରାଣୀମାନେ ସାଧାରଣତଃ ସଂଘବଦ୍ଧ ହୋଇ ବାସ କରନ୍ତି। ଏମାନେ ହେଲେ ବାରହା, ସମ୍ବର, ମିରିଗ, ଖୁରୁଙ୍ଗ, ନୀଳଗାଇ, ଖୁରାଣ୍ଡି ଇତ୍ୟାଦି। ଏମାନେ

ପ୍ରାୟତଃ ତୃଣଭୋଜୀ, ଶାକାହାରୀ ଜୀବ। କେବଳ ବାରହା ସମୟେ ସମୟେ ଶବ ଭକ୍ଷଣ କରିବାର ଦୃଷ୍ଟାନ୍ତ ରହିଛି।

ଖୁରା ଜାତୀୟ ଜୀବମାନଙ୍କର ବାଘ ଓ ଚିତାବାଘ ପ୍ରଧାନ ଶତ୍ରୁ। ଶତ୍ରୁ ଦାଉରୁ ରକ୍ଷା ପାଇବା ପାଇଁ ଏମାନେ ଖୁବ୍ ଦ୍ରୁତ ଗତିରେ ଦୌଡ଼ି ପାରନ୍ତି। ହରିଣ, ମୃଗଜାତୀୟ ପ୍ରାଣୀଙ୍କର ଖୁରା ଥିବାରୁ ଏମାନେ ଲମ୍ଫମାରି ଗଛବୁଦା ଡେଇଁ ଦୌଡ଼ି ଯାଇ ପାରନ୍ତି ଓ ଖୁରା ଦୁଇ ଫାଳ ହୋଇଥିବାରୁ ପଙ୍କ କାଦୁଅ ଉପର ଦେଇ ଶୀଘ୍ର ଯାଇ ପାରନ୍ତି। ପ୍ରାଣୀମାନଙ୍କ ଆତ୍ମରକ୍ଷା ପାଇଁ ପ୍ରକୃତି ଖଞ୍ଜି ଦେଇଛି ଦେହର ଉଦ୍ଦିଷ୍ଟ ଅଙ୍ଗ- ସୃଷ୍ଟିର ରହସ୍ୟ।

ଖୁରା ଦାଗ ପରୀକ୍ଷା କଲେ ଜଣାଯାଏ ଯେ, ମଧ୍ୟମ ଧରଣର ସମ୍ବର ଓ ନୀଳଗାଈଙ୍କର ଖୁରା ଦାଗ ସହିତ ବଣ ଘୁଷୁରିର ଖୁରାଦାଗ ଅନେକ ସମାନ। କିନ୍ତୁ ସୂକ୍ଷ୍ମ ଭାବେ ଲକ୍ଷ୍ୟ କଲେ ଜଣାଯିବ ଯେ ଘୁଷୁରିର ଖୁରା ସମ୍ବର ଅପେକ୍ଷା ଅଳ୍ପ ମୁନିଆ ଓ ଘୁଷୁରି ଖୁରାଦାଗ ନରମ ମାଟି ଉପରେ ତୀକ୍ଷ୍ଣ ଭାବେ ଭିତରକୁ ପଶିଯାଇଥାଏ।

ହରିଣ ଓ ବାରହା ଖୁରା ପଛକୁ ଓ ସାମାନ୍ୟ ଉପରକୁ ଦୁଇଟି ଛୋଟ ଛୋଟ ଖୁରା ଅଛି। ହରିଣ ତୁଳନାରେ ବାରହାର ଏଇ ଖୁରାଦୁଇଟି ଅପେକ୍ଷାକୃତ ବଡ଼। ବାରହା ଚାଲିଲା ବେଳେ ଭୂଇଁରେ ଛୋଟ ଖୁରାର ଦାଗ ପଡ଼ିଯାଏ। କିନ୍ତୁ ହରିଣର ଗୋଡ଼ ନରମ ମାଟିରେ ଗଳି ନଯିବା ପର୍ଯ୍ୟନ୍ତ ଏହି କ୍ଷୁଦ୍ର ଖୁରାଦ୍ୱୟ ଭୂଇଁକୁ ଛୁଏଁ ନାହିଁ। ଅତଏବ ଖୁରା ଚିହ୍ନରୁ ବାରହା କି ହରିଣ ଜାଣିବା ସହଜ ହୁଏ।

ବନ୍ୟଜନ୍ତୁମାନଙ୍କ ଗୋଟିଏ ଦଳର ସଂଖ୍ୟା ନିରୂପଣ କରିବାକୁ ହେଲେ ଏକ ସାଧାରଣ ସୂତ୍ର ପ୍ରୟୋଗ କରାଯାଏ। ଧରନ୍ତୁ  ଗୋଟିଏ ହରିଣ ଦଳ। ପ୍ରାପ୍ତ ବୟସ୍କ ହରିଣଟିଏ ଠିଆ ହୋଇଥିବା ଅବସ୍ଥାରେ ତା'ର ଆଗ ଓ ପଛ ଖୁରା ଭିତରେ ପ୍ରାୟ ତିରିଶ ଇଞ୍ଚର ବ୍ୟବଧାନ। ଖଣ୍ଡିଏ ସରଳ ବାଡ଼ିରେ ହରିଣଙ୍କ ଗତିପଥରେ ତିରିଶ ଇଞ୍ଚ ବ୍ୟବଧାନରେ ଦୁଇଟି ଗାର ସମାନ୍ତରାଳ ଭାବରେ ଟାଣି ଦିଆଯାଏ। ଦୁଇ ଗାର ମଝିରେ ଖୋଜ ଦାଗକୁ ଗଣି ଦୁଇରେ ଭାଗ କଲେ, ଭାଗଫଳ ଜନ୍ତୁ ସଂଖ୍ୟା ସହିତ ସମାନ ହେବ। ଦୁଇ ଗାର ମଧ୍ୟରେ କୋଡ଼ିଏଟି ଖୋଜ ଦାଗ ଗଣତି ହେଲେ, ଦଳରେ ପ୍ରାୟ ଦଶଟି ହରିଣ ହରିଣୀ ଅଛନ୍ତି ବୋଲି ଧରାଯିବ। ହିସାବ କରିବା ପୂର୍ବରୁ ଜନ୍ତୁଙ୍କର ଆଗ ଓ ପଛ ଖୁରା ମଧ୍ୟରେ ବ୍ୟବଧାନ ସଠିକ୍ ଭାବେ ଜାଣିବା ଆବଶ୍ୟକ। ବଳିଆ କୁକୁର, ବଣ ଘୁଷୁରୀ, ଛେଳି, ମେଣ୍ଢା, କୁଟୁରା ଆଦି ଜନ୍ତୁଙ୍କର ଆଗ ଖୁରା ଓ ପଛ ଖୁରା ମଧ୍ୟରେ ବ୍ୟବଧାନ କମ୍ ଏବଂ ସମ୍ବର, ନୀଳଗାଈଙ୍କଠାରେ ତାହା ଅପେକ୍ଷାକୃତ ଅଧିକ। ସେମାନଙ୍କ ସଂଖ୍ୟା ହିସାବ କଲାବେଳେ ଗତିପଥର ଦୁଇ ସମାନ୍ତରାଳ ସୀମାରେଖାର ବ୍ୟବଧାନ କମ୍ କିମ୍ବା ବେଶୀ କରିବାକୁ ପଡ଼ିଥାଏ।

ଯେଉଁ ପ୍ରାଣୀମାନଙ୍କ ପାଦ ମାଂସଳ (ବାଘ, ଭାଲୁ, ଗଧିଆ ବାଘ, ବଳିଆ କୁକୁର, ହାତୀ ଇତ୍ୟାଦି) ସେମାନଙ୍କ ପାଦଚିହ୍ନ ନରମ ମାଟିରେ ଛାପି ହୋଇଯାଇଥାଏ। ମାଟି ଶୁଷ୍କ କି ଟାଣ ଥିଲେ ପାଦ ଚିହ୍ନ ଅସ୍ପଷ୍ଟ ହୁଏ। ଚିତା ଓ ଅଳ୍ପ ବୟସ୍କ ମହାବଳ ବାଘର ପଞ୍ଝାଦାଗ ଆକାରରେ ପ୍ରାୟ ସମାନ ହୋଇଥିଲେ ମଧ ମହାବଳର ଅଙ୍ଗୁଳିର ପଞ୍ଝା ଅନୁପାତରେ ଅପେକ୍ଷାକୃତ ଲମ୍ବ ହୋଇଥିବାରୁ ତାହା ସହଜରେ ଚିହ୍ନିହୁଏ। କୁକୁର ଓ ବରାଢ଼ିଙ୍କ ପଞ୍ଝା ଦାଗ ପରୀକ୍ଷା କଲେ ଦେଖାଯିବ ଯେ ତଳିପା ଅନୁପାତରେ କୁକୁର ଓ ଚିତା ବାଘର ପଞ୍ଝା ଛାପ ବହୁ ପରିମାଣରେ ମେଳ ଖାଉଥିଲେ ମଧ, ଆଙ୍ଗୁଳି ଛାପ ଅଗର ନଖ ଦାଗରୁ ସହଜରେ ଜନ୍ତୁର ପରିଚୟ ମିଳିଥାଏ। ବାଘ କି ଚିତାବାଘ ଇତ୍ୟାଦି ହିଂସ୍ରଜନ୍ତୁ ଉତ୍ତେଜିତ ନ ଥିଲେ ପାଦର ନଖଦାଗ ଭୂଇଁରେ ଗଳିଯାଏ ନାହିଁ।

ପାହୁଲ ମାପରୁ ଜନ୍ତୁର ଲମ୍ବ ଓ ଆକାର ସମ୍ବନ୍ଧରେ ସଠିକ୍ ଧାରଣା କରିବା ଅନୁଭୂତି ଓ ଅଭ୍ୟାସ ଉପରେ ନିର୍ଭର କରେ। ବାଘ କି ଚିତା ବାଘର ପାହୁଲ ଦାଗ ଗୋଲ ଗୋଲ ହୋଇଥିଲେ ଜନ୍ତୁଟି ପୁରୁଷ ବୋଲି ଧରି ନିଆଯାଏ। ପାହୁଲ ଦାଗରେ ବେଶୀ ଫଟା ବା ଭାଙ୍ଗ ନ ଥିଲେ ତା'ର ବୟସ ବେଶୀ ନୁହେଁ ବୋଲି ଅନୁମାନ। ସେହିପରି ହାତୀର ଉଚ୍ଚତା ଜାଣିବାକୁ ହେଲେ ଏକ ସାଧାରଣ ପ୍ରଣାଳୀ ପ୍ରୟୋଗ କରାଯାଏ। ହାତୀର ଆଗ ପାଦର ଗୋଲେଇ ଯେଉଁ ମାପର, ତା'ର ଦ୍ୱିଗୁଣ କରିଲେ ତା'ର ଉଚ୍ଚତାର ପ୍ରାୟ ସଠିକ୍ ଖବର ମିଳେ। ଉଦାହରଣ ସ୍ୱରୂପ, ହାତୀର ଆଗ ପାଦ ଗୋଲେଇ ଯଦି ପଚାଶ ଇଞ୍ଚ ହୁଏ, ତା'ର ଉଚ୍ଚତା ଶହେ ଇଞ୍ଚ, ଅର୍ଥାତ୍ ଆଠ ଫୁଟ ଚାରି ଇଞ୍ଚ ବୋଲି ଧରାଯିବ।

ସରୀସୃପମାନଙ୍କ ମଧରେ ସାପମାନଙ୍କର ସଂଖ୍ୟା ଓ ଶ୍ରେଣୀ ସର୍ବାଧିକ। ଆମ ଦେଶରେ ପ୍ରାୟ ୩୦୦ ପ୍ରକାରର ସାପ ଦେଖାଯା'ନ୍ତି। ସାପ ଗତି ରେଖା ପରୀକ୍ଷା କଲେ ସାପର ଗୋଲେଇ, ସେ ବିଷାକ୍ତ କି ନୁହେଁ ଇତ୍ୟାଦି ବିଷୟରେ ଧାରଣା କରିହୁଏ। ବାଲି ବା ନରମ ମାଟି ଉପରେ ସାପ ଚାଲିଗଲେ ବାଲିରେ ଥିବା କ୍ଷୁଦ୍ର ସ୍ତୂପଗୁଡ଼ିକ ସାପ ଯାଉଥିବା ଦିଗ ଆଡ଼କୁ ଭୁଶୁଡ଼ି ପଡ଼ିଥାଏ। ବିଷଧର ସାପର ଗତିପଥ ବକ୍ର ଓ କୁଟିଳ ହୋଇଥାଏ, କାରଣ ଏମାନେ ଧୀରେ ଧୀରେ ଲୁଚିକରି ଶିକାର ପାଖକୁ ଅଗ୍ରସର ହୁଅନ୍ତି (ଅହିରାଜ ସାପ ବ୍ୟତୀତ)। ଅପେକ୍ଷାକୃତ ସରଳ ଗତିରେଖା ଗୁଡ଼ିକୁ ଅବିଷାକ୍ତ ସାପର ବୋଲି ଗ୍ରହଣ କରାଯାଇପାରେ (ଅଜଗର ବ୍ୟତୀତ)। ଗତି ରେଖାର ପ୍ରସ୍ଥକୁ ଚାରି ଭାଗରେ ଗୁଣିଲେ ସାପର ଗୋଲେଇ ସହିତ ପ୍ରୟ ସମାନ ହୁଏ। କିନ୍ତୁ ସାପର ଲମ୍ବ ସମ୍ବନ୍ଧରେ ଗତିରେଖା ପରୀକ୍ଷାରୁ କୌଣସି ଦୃଢ଼ ଧାରଣା କରିବା ସମ୍ଭବପର ହୋଇ ନ ଥାଏ। ଏପରି ସ୍ଥଳେ ସାପର ଜାତି ଅନୁଯାୟୀ ତା' ଗତିରେଖାର ମୋଟେଇ ମାପିବାକୁ ହୁଏ ଏବଂ ତାକୁ ତିରିଶରେ ଗୁଣିଲେ ଗୁଣଫଳ ସାପର ଲମ୍ବ ସହିତ ପ୍ରାୟ ସମାନ ହୁଏ।

◆

ଏମିତି ନିବିଡ ଘଞ୍ଚ ଅରଣ୍ୟରେ ବାଘକୁ ଠାବ କରିବା ଅବସରରେ ପଶୁ ପାଦଚିହ୍ନ ଖୋଜୁ ଖୋଜୁ ଗୋଟିଏ ବଡ଼ ପଥର ପାଖରେ ଯେଉଁଠି ବର୍ଷା ପାଣି ବୋହି ବାଲି ଛାଡ଼ି ଯାଇଥାଏ, ସେଇ ମାଟି ମିଶା ବାଲିସ୍ତର ଉପରେ ଚିତାପାଦ ଦେଖି ଉଲ୍ଲସିତ ହୋଇ ଉଠିଲି। ଯବକାଚ ସାହାଯ୍ୟରେ ଚିହ୍ନକୁ ଭଲ ଭାବେ ପରୀକ୍ଷା କରି ଦେଖିଲୁ। ପ୍ରେମ୍ ମୋତେ ସାହାଯ୍ୟ କଲେ। ତିନି ମିଟର ବ୍ୟାସାର୍ଦ୍ଧ ଭିତରେ ପାଖା ପାଖି ହୋଇ ଚିତାବାଘର ଗୁଡ଼ିଏ ପାଦଚିହ୍ନ ସ୍ପଷ୍ଟ ବାରିହୋଇ ପଡ଼ିଲା। ଏଥିରୁ ସୁସ୍ପଷ୍ଟ ହେଲା ଯେ ସ୍ଥାନଟି ଗତ ରାତିରେ ଚିତା ଦମ୍ପତିଙ୍କର ସହବାସସ୍ଥଳୀ ଥିଲା। ସଂଲଗ୍ନ ଦୁର୍ବାଦଳକୁ ମଧ ତୀକ୍ଷ୍ଣ ଦୃଷ୍ଟିରେ ନିରୀକ୍ଷଣ କଲି। କେତେକ ସ୍ଥାନରେ ଦଳାଚକଟାର ଛାପ ଧରି ହେଉଥିଲା କାକରଭିଜା ଦୁବ ଚକଡ଼ାରୁ। ସୁବର୍ଣ୍ଣ ଶାମୁକାଟିଏ ପାଇଲା ଭଳି ଚିତାବାଘର ଲୋମ କେତୋଟି ପଡ଼ିଥିବାର ଦେଖି ଧାରଣା ଦୃଢ଼ ହେଲା। ଅଳ୍ପ ଦୂରରେ ଚିତାବାଘର ସଦ୍ୟ ମଳ ଦେଖି ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ। ଗତ ରାତିରେ ଆମେ ଏହି ପ୍ରସ୍ତରଠୁଁ ମାତ୍ର ଶହେ ଗଜ ଦୂରରେ ଥିଲୁ ଏବଂ ଶବ୍ଦକୁ ଅନୁଧାନ କରି ଏଇ ବାଟ ଦେଇ ଆଗକୁ ଯାଇଥିଲୁ। କିନ୍ତୁ ବ୍ୟାଘ୍ର ଦମ୍ପତିଙ୍କର ଦର୍ଶନ ମିଳି ନ ଥିଲା। ଅନୁଭବ କଲି, ଯେମିତି ଜଣେ ଧ୍ୟାନରତ ବୈଜ୍ଞାନିକ ନୂଆ ତଥ୍ୟଟିଏ ଉଦ୍ଭାବନ କରିବାରୁ ଅଳ୍ପକେ ବଞ୍ଚିତ ହୋଇଛି ! ଦୃଶ୍ୟଟିକୁ ହାତଛଡ଼ା କଲି ସିନା ! !

ଏଠାରେ ରହିବା ନଅ ଦିନ ପୂରିଗଲାଣି। ବାଘ ଇତିମଧ୍ୟରେ କାହାକୁ ମାରିବାର ସମ୍ବାଦ ପାଇ ନାହୁଁ। ଗତ ରାତିର ଘଟଣା ଛଡ଼ା ବାଘର ଚିହ୍ନବର୍ଣ୍ଣ ନ ଥିଲା। ଏକଥା ମୁଁ ଠିକ୍ ଭାବେ ଜାଣି ପାରିଥିଲି ଯେ ଗତ ରାତିର ବ୍ୟାଘ୍ର ଦମ୍ପତି ଏଠାକାର ପଶୁ ଭକ୍ଷକ, ନରଖାଦକ, ଜଙ୍ଗଲର ଜହ୍ଲାଦ ବନିଛନ୍ତି। କିନ୍ତୁ ବଡ଼ ବିସ୍ମୟର କଥା ଏହି ଯେ ସେମାନେ ପୂର୍ବପରି ଆଉ ରକ୍ତମୁଖା ହୋଇ ନାହାନ୍ତି, ପଶୁବଧ କରି ନାହାନ୍ତି, ନରହତ୍ୟା କରି ନାହାନ୍ତି। କାରଣ ଖୋଜି ପାଇଲି ନାହିଁ। କ'ଣ ବ୍ୟତିକ୍ରମ ? ଆମର ଉପସ୍ଥିତି ? ?

ମୋର ଫର୍ମୁଲା ? ? ? ବାଘ କ'ଣ ରାତାରାତି ସାଧୁ ପାଲଟି ଗଲା ! ଏହା କ'ଣ କେବେ ସମ୍ଭବ ! !

ବାଘର ବହୁ ସନ୍ଧାନ ନେଇଛୁଁ । ଅନେକ ତଲାସୀ କରିଛୁ । ଭିନ୍ନ ଗାଈଗୋଠ ଭିତରେ ଆମେ ସଜାଗ ରହି ସତର୍କତାର ସହିତ ଚତୁର୍ଦ୍ଦିଗକୁ ଲକ୍ଷ୍ୟ କରିଛୁଁ, ତିମିରିତ ରଜନୀର ନିଘଞ୍ଚ ନଟା ଭିତରେ ଗଛରେ ମଞ୍ଚା ବାନ୍ଧି ନିଷ୍ପଳକ ନେତ୍ରରେ ଜଗି ରହିଛୁଁ ବୃକ୍ଷମୂଳ ଥୋପବନ୍ଧା ଛାଗଯୁଗଳଙ୍କୁ । କିନ୍ତୁ ବାଘର ଦର୍ଶନ ନାହିଁ, ନାହିଁ ମଧ୍ୟ ଅତ୍ୟାଚାର । ଅତଏବ ଅଞ୍ଚଳରେ ସ୍ଥିତାବସ୍ଥା ଫେରି ଆସିଛି, ସ୍ୱାଭାବିକ ଜୀବନ ପୁନଃ ପ୍ରତିଷ୍ଠିତ ହୋଇଛି, ଲୋକମାନେ ଚଳାଚଳ ଆରମ୍ଭ କଲେଣି, ଗାଈ ପଲ ଜଙ୍ଗଲକୁ ଚରିବାକୁ ଗଲେଣି, କ୍ଷେତବାଡି କାମ ଚାଲୁ ହେଲାଣି, ଶର୍ମା ବଣିଜରେ ମନ ଦେଲେଣି । କିନ୍ତୁ ମୋ ମନରୁ ଆଶଙ୍କା ଦୂର ହୋଇ ନାହିଁ । ପଶୁ ପ୍ରକୃତିକୁ ବିଶ୍ୱାସ କ'ଣ ? ଥରେ ପଶୁ ନରହନ୍ତା ହେଲେ ସେ କ'ଣ ଆଉ ସାଧୁ ହୋଇ ପାରିବ ? ମଣିଷ ଥରେ ଚୌର୍ଯ୍ୟବୃତ୍ତି ଗ୍ରହଣ କରିନେଲେ, ସାଧୁତା ତା'ର ବିଷ ହୋଇଯାଏ, ଚୋରି ଛଡ଼ା ସବୁ କାମ ତାକୁ ପିତା ।

ଯଦିଚ ମୁଁ ସରକାରଙ୍କ ସ୍ୱୀକୃତିପ୍ରାପ୍ତ ଶିକାରୀ, ଶିକାର କରିବା ମୋର ଜୀବିକା ନୁହେଁ, ସଉକ ମାତ୍ର । ବନ ଓ ବନ୍ୟପଶୁ ମୋତେ ଭଲ ଲାଗେ- ଆଜନ୍ମ ଏକ ସହଜାତ ଆକର୍ଷଣ । କେବଳ ଆକର୍ଷଣରେ ମଜ୍ଜି ରହିଲେ ଜୀବନ ଚଳେନି; ଜୀବିକା ପ୍ରତି ଧ୍ୟାନ ଆବଶ୍ୟକ । ଛୁଟି ଶେଷ ହୋଇଗଲାଣି, କର୍ମସ୍ଥଳ ସମ୍ବଲପୁରକୁ ଏଥର ଫେରିବା କଥା । ପ୍ରେମ୍ ସିନା ଅବସର ଜୀବନ ବିତାଉଛନ୍ତି ! କିନ୍ତୁ ବାଘକୁ ନ ମାରି ଏପରି ଅଧାପନ୍ତରିଆ ଅବସ୍ଥାରେ ଫେରିବାକୁ ମନ ହେଉ ନ ଥାଏ । ବେପରୁଆ ବାଘ ପ୍ରତି ମନରେ କ୍ଷୋଭ ଜାତ ହେଉଥାଏ । କିନ୍ତୁ ଅନ୍ୟ ଉପାୟ ମଧ୍ୟ ନ ଥାଏ । ତେବେ ବାଘ ଏବେ ଜବତ ରହିଛି । ଶର୍ମା ପରିବାରଏବଂ ଗ୍ରାମବାସୀଙ୍କୁ ଦମ୍ଭ ଦେଇ ଆମେ ଫେରିଲୁ । ଯଦି ବାଘ ପୁଣି ଅତ୍ୟାଚାର କରେ ତୁରନ୍ତ ଖବର ଦେବେ ବା ହେମଗିରି ଆସି ତାର କରିବେ ବୋଲି ବାରମ୍ବାର କହି ଆସିଥିଲି । ତଥାପି ଚିନ୍ତାକୁଳ ରହିଲି ।



ତିନିମାସ ଅତିକ୍ରାନ୍ତ। କୌଣସି ଅପ୍ରୀତିକର ସମ୍ବାଦ ନାହିଁ। ଅବଶ୍ୟ ମନଟା ମଝିରେ ମଝିରେ ଗୁଡୁପୁଡୁ ହେଉଥାଏ। ତାଘୋରା ପାର୍ବତ୍ୟାଞ୍ଚଳର ଅବସ୍ଥା କେମିତି ? ସତରେ କ'ଣ ମଣିଷଖିଆ ବାଘ ସନ୍ନ୍ୟାସୀ ପାଲଟି ଗଲା ? ଅଞ୍ଚଳରେ ଦୁଇଟା ଚିତାବାଘ ହଠାତ୍ କାହିଁକି ମାତି ଉଠି ଗୃହପାଳିତ ପଶୁମାନଙ୍କୁ ଖାଇ ବସିଲେ, ମଣିଷକୁ ଆକ୍ରମଣ କଲେ ଏବଂ ପୁଣି ସେମାନଙ୍କ କାର୍ଯ୍ୟକଳାପରେ ପରିବର୍ତ୍ତନ ଆସିଲା, ଏସବୁ ରହସ୍ୟ ବୁଝି ହେଉ ନ ଥିଲା। ପ୍ରେମ୍ ବେଳେବେଳେ ବୁର୍ଲାରୁ ଆସି ମୋ ସହିତ ଆଲୋଚନା କରିଯା'ନ୍ତି। ଇଚ୍ଛା ହେଉଥିଲା ଚିର୍ମିରା ଯାଇ ଲୋକମାନଙ୍କ ଭଲମନ୍ଦ ଥରେ ଦେଖି ଆସିବା ପାଇଁ। ଏମିତି ଚିନ୍ତା କରୁଛି, ଗୌନ୍ତିଆ ଶର୍ମାଙ୍କ ଟହଲିଆ ନୌକର କହ୍ନେଇ ଆମ ଘରେ ହାଜର ହେଲା। ତାକୁ ଦେଖି ମୁଁ ଚମକି ପଡ଼ିଲି, ମୋ ଛାତି ଚାଉଁ କଲା। ନିଶ୍ଚୟ କିଛି ଜରୁରୀ ଓ ଗୁରୁତର ସମ୍ବାଦ ଧରି ଆସିଛି। ଠିକଣା ଧରି ପଚାରି ପଚାରି ଏତେ ବାଟ ଚାଲି ଆସିଛି !

କହ୍ନେଇ ମୋତେ ଜୁହାର କରି ବିଷର୍ଣ୍ଣ ବଦନରେ ମୂକ ଭାବରେ ଛିଡ଼ା ହୋଇ ରହିଲା।

"କ'ଣ କିରେ କହ୍ନେଇ ?"- ମୁଁ ଶଙ୍କିତ ହୋଇ ପଚାରିଲି।

ବାଷ୍ପାକୁଳ କଣ୍ଠରେ କହିଲା କହ୍ନେଇ- " କ'ଣ କହିବି ସାହେବ ! ! ଗୌନ୍ତିଆଙ୍କ ସବୁ ସରିଗଲା, ସବୁ ଉଜୁଡ଼ିଗଲା। ଗୌନ୍ତିଆଣୀ ମା' ହାଁ କରି ମୂର୍ଚ୍ଛିତା। ଆଉ ଗୌନ୍ତିଆଙ୍କ କଥା କ'ଣ କହିବି ସାହେବ !"

: "କଥାଟା ସିଧା କହୁନାହୁଁ କାହିଁକି ଯେ !"

: "ମୁର୍ଦ୍ଧନା ଫାଟି ଯାଉଛି ସାହେବ ! ଦି'ଦିନ ତଳର ଘଟଣା। ଗୌନ୍ତିଆଙ୍କ ଝିଅ ଜ୍ଞାନି..."

" କ'ଣ ହେଲା ତା'ର!" ମୁଁ ବ୍ୟଥାଭରା ସ୍ୱରରେ କହିଲି। ଜନ୍ମ ବେଳରୁ ଶର୍ମାଙ୍କର ଏଇ କୁନି ଝିଅଟିକୁ ଦେଖୁଛି। ଠୁକୁରୁ ଠୁକୁରୁ ଚାଲେ। ଗୁଲୁରୁଗାଲୁରୁ କଥା କହେ। ଗୌନ୍ତିଆଣୀ ତା' କଅଁଳ କେଶରେ ରଙ୍ଗୀନର ରିବନ୍ ଫିତାର ଫୁଲଟିଏ ବାନ୍ଧି ଦେଇଥାନ୍ତି ଯତ୍ନରେ। ଆଖିରେ ମୋଟା କଜଳର ଧାର। ଗୋରା ଦେହ। ସୁନ୍ଦର ଦିଶେ। ଅଞ୍ଚଳର ଆଦିବାସୀ ପିଲାଙ୍କଠୁଁ ବାରି ହୋଇଯାଏ, ଅଭିଜାତ ଛାପଟି ଭିନ୍ନ କରିଦିଏ ଗିରିଜନ ସମାଜ ଭିତରୁ। ଏଠି ଅଭୟ ଅରଣ୍ୟର ଆଦିବାସୀ ଅଞ୍ଚଳରେ ଶ୍ୱେତାଙ୍ଗ ଶର୍ମା ପରିବାରଟି ଲାଗେ ଆଫ୍ରିକା ମହାଦେଶର କୃଷ୍ଣାଙ୍ଗମାନଙ୍କ ବସତି ଭିତରେ ଗୌରାଙ୍ଗର ଉପନିବେଶଟିଏ।

ଚାରି ବର୍ଷର କନ୍ୟା ଜିନି। ତାକୁ ମୁଁ ଖୁବ୍ ଭଲପାଏ। ସ୍ନେହ କରେ। ମୋ ପାଇଁ ଚିର୍ମରାର ଅନ୍ୟ ଆକର୍ଷଣ ହୋଇଥାଏ ଜିନି। ମୋର ରହଣି କାଳରେ ସେ ପାଖ ଛାଡ଼େ ନାହିଁ। ତା' ପାଇଁ ସଙ୍ଗେ ମୁଁ ନେଇଥାଏ ସହରୀ ଦରମ- ବିସ୍କୁଟ, ଖେଳନା ଓ ଜାମା ଜୋତା ଆଦି। ବିଶ୍ରାମ ବା ବରତି ବେଳରେ ସେ ମୋର ଶିଶୁ ସାଥୀ ହୋଇଥାଏ। ମୋ ପାଖେ ଗୋଟିଏ ବାଦ୍ୟଯନ୍ତ୍ର ଥାଏ। ସବୁବେଳେ ମୋର ପ୍ରିୟ ବଂଶୀ ଖଣ୍ଡିକ। ଖୁବ୍ ପିଲାଦିନୁ ବଂଶୀ ସହିତ ମୁଁ ପରିଚିତ। ଏକ ହାତ ଲମ୍ବ ବାଉଁଶର ସଦା ସରଳ ବାଦ୍ୟ ଯନ୍ତ୍ରଟିଏ- ମାତ୍ର ଛ'ଟି କଣାରେ ଟିପ ରଖି ପାଟି ଦ୍ୱାରା ପବନ ଫୁଙ୍କି ଓ ଟିପ ନିୟନ୍ତ୍ରଣ କରି ସପ୍ତସ୍ୱର ସଂଯୋଗ କରାଯାଏ। ମୋତେ ଟିକିଏ ଫୁରୁସତ୍ ମିଳିଲେ ମୁଁ ବଂଶୀ ସହିତ ବସିଯାଏ ଘଡ଼ିଏ, ଆଳାପ ରଚନା କରେ। ସେଥିରେ ସ୍ୱର ଉତ୍ତୋଳନ କରି ଉଲ୍ଲସିତ ହୁଏ, ନିଜେ ହୋଇଯାଏ ସମ୍ପୂର୍ଣ୍ଣ ନିମଜ୍ଜିତ। ସୃଷ୍ଟିର ସବୁ ବାଦ୍ୟ ଯନ୍ତ୍ର ଅପେକ୍ଷା ବାଉଁଶର ବଂଶୀଟି ଶସ୍ତା, ସ୍ୱର ମଧୁର। ସେଥିରେ ନିହିତ ଥାଏ ମୋହନ ଶକ୍ତି। ବନଗସ୍ତ ବେଳେ ମୁଁ ସର୍ବଦା ସାଥିରେ ନେଇଥାଏ ମୋ ବଂଶୀ ଓ ବନ୍ଧୁକକୁ। ଶର୍ମାଙ୍କ ନିରେଳା ବାସାଘରେ ମୁଁ ଅବସ୍ଥାନ କରୁଥିଲାବେଳେ ବଂଶୀ ବଜାଇବାକୁ ଜିନି ସବୁବେଳେ ମୋ ସାଙ୍ଗେ ଲଗାଏ। ମୁଁ କହେ- "କିନ୍ତୁ, ଦିନ ବେଳେ ବଂଶୀ ବଜାଇବାର ବେଳ ନୁହେଁ, ଖୁବ୍ ସକାଳ କିମ୍ବା ସନ୍ଧ୍ୟାରେ।" ଜଞ୍ଜାଳମୟ ଜୀବନ ଭିତରେ ସଞ୍ଜବେଳେ ଟିକିଏ ବେଳ ମିଳେ ମୋତେ। ସେଇ ଟିକକ ସମୟ ବଂଶୀ ସହିତ ବିତାଏ। କ୍ରମଶଃ ଜଞ୍ଜାଳ ଦାୟିତ୍ୱ ବଢ଼ିଯିବାରୁ ବଂଶୀଠୁଁ ମଧ ଦୂରେଇ ଯାଏ। ଆମର ଏଇ ବନଜୀବନ ବିତାଇବାବେଳେ ଅପେକ୍ଷାକୃତ ଅଧିକ ଅବସର ମିଳିଥାଏ। ଏଣୁ ସେଇ ଅବସର ସମୟତକ ବଂଶୀ ସହିତ ମିତ ବସେ, ସ୍ୱର ତୋଳେ, ସେଥିରେ ଆଳାପ ବିଳାପ ରଚନା କରେ। ପ୍ରେମ୍ ଡୁବି ତବଲା ବଜାଇବାରେ ପୂରା ଓସ୍ତାଦ। ଓଡ଼ିଶୀ, ହିନ୍ଦୁସ୍ତାନୀ, କଥକ ଆଦି ରାଗ ସ୍ୱର ସଙ୍ଗୀତ ସହିତ ଡୁବି ତାବଲାର ତାଳ ସଂଯୋଗ କରନ୍ତି। ଯେ କୌଣସି ପେସାଦାର ତବଲାବାଲାଙ୍କ ସମକକ୍ଷ ହୋଇପାରନ୍ତି-

କଳାରୁ ଅର୍ଥ ଭିଆଇବା ତାଙ୍କର ରୁଚି ନୁହେଁ ! ସୌଖୀନ କଳାକାରର ସ୍ୱାଭିମାନକୁ ଆଦର୍ଶ କରି ନିଜ ଭିତରେ ସୀମିତ ରଖିଥାନ୍ତି । ମୁଁ ଏଠି ବଂଶୀ ସହିତ ସ୍ୱର ତୋଳିଲାଭଳି ଜୁବିତବଲା ମିଳିବ କାହୁଁ । କାମଚଳା ଭଳି ମାଠିଆକୁ ସେ ବ୍ୟବହାର କରନ୍ତି ତବଲାର ବିକଳ୍ପ ପରି । ତେବେ ସନ୍ଧ୍ୟା ସମୟ ବିତିଯାଏ ସଙ୍ଗୀତ ଆସର ଭିତରେ । ଶିକାର ଅଭିଯାନ ଆରମ୍ଭ ହୁଏ ତିନି ଘଡ଼ି ଅନ୍ଧାର ପରେ । ଆମ ଆସରରେ ଜିନି ହୋଇଥାଏ ଶ୍ରୋତା ତଥା ମୁଖ୍ୟ ଅତିଥି । ସେ ମୁଗ୍ଧ ମୋହିତ ହୋଇ ଶୁଣେ, ମୁଣ୍ଡ ହଲାଏ, ତାଳ ସହିତ ତାଳିମାରେ,ପାଦ ପକାଏ । ମୁଁ କହେ ଶର୍ମାଙ୍କୁ- "ଆମ ଜିନିରାଣୀ ସଙ୍ଗୀତପ୍ରିୟ ହେବ, ସହରରେ ଛାଡ଼ିଦିଅ, ଶିକ୍ଷାର ସୁଯୋଗ ପାଇବ ।" ଶର୍ମା ଦମ୍ପତି ହସନ୍ତି....

ଜିନିର ଦୁର୍ଦ୍ଦଶା ଶୁଣିବାକୁ ଧୈର୍ଯ୍ୟ ରହିଲା ନାହିଁ, ତର ଅଣ୍ଟିଲା ନାହିଁ । କନ୍ହେଇର ତଣ୍ଟିରେ କଥା ଅଟକି ରହୁଥିଲା, ବ୍ୟକ୍ତ କରିବାପାଇଁ ସେ ଭାଷା ଖୋଜୁଥିଲା ।

ମୁଁ ପୁନଃ ପୁନଃ ପଚାରିଲି : " କ'ଣ ହେଲା ଆମ ଜିନିର ?"

ମୁଁ ଜାଣେ, ଜିନି ସବୁବେଳେ ରୋଗିଣୀ ଥିଲା । ଜନ୍ମ ବେଳରୁ ବନାଞ୍ଚଳବାସୀଙ୍କର ମହାଶତ୍ରୁ ଜ୍ୱର ନୁହେଁ, ଝାଡ଼ା ବାନ୍ତି ରୋଗ, ଆମାଶୟ ବ୍ୟାଧି । ଏଥିରେ ପ୍ରତି ବର୍ଷ ଶହ ଶହ ଲୋକ ମୃତ୍ୟୁବରଣ କରନ୍ତି । ଦୂଷିତ ଜଳ ଓ ପଚା ସଢ଼ା ମାଛିବସା ଖାଦ୍ୟ ପଦାର୍ଥ ରୋଗର କାରଣ । ଏଣୁ ମୁଁ ସବୁବେଳେ ଜଳ ଓ ଖାଦ୍ୟ ପ୍ରତି ସାବଧାନ ରହିଥାଏ । ଜଳକୁ ଭଲ ଭାବେ ଫୁଟାଇ ଥଣ୍ଡା କରି ବୋତଲରେ ସାଇତି ରଖେ ଏବଂ ଯେତେଦୂର ସମ୍ଭବ ଗରମ ଖାଦ୍ୟ ଖାଇବାକୁ ଚେଷ୍ଟା କରେ । ପାଖେ ପାଖେ ରଖିଥାଏ ଔଷଧ ଡବା- ଗୋଟାଏ ଛୋଟକାଟର ଭ୍ରାମ୍ୟମାଣ ସହଜବାହୀ ଡାକ୍ତରୀ ବାକ୍ସ । ସେଥିରେ ରଖିଥାଏ ତୁଳା, ଗଜ୍, ସ୍ପିରିଟ୍, ଆୟୋଡିନ୍‌ଠାରୁ ଆରମ୍ଭ କରି ସର୍ପବିଷନାଶକାରୀ ଇଂଜେକ୍‌ସନ ଏବଂ ଝାଡ଼ା ବାନ୍ତି ଆଦି ସାଧାରଣ ରୋଗର ପ୍ରାଥମିକ ଚିକିତ୍ସା ସକାଶେ ଟେବଲେଟ୍ ସମୂହ । ଅତୀତରେ ସୁବିଧା ଦେଖି ନର୍ସିଂ ତାଲିମ ଅନୁଷ୍ଠାନରୁ ଶିକ୍ଷା ସଂଗ୍ରହ କରି ନେଇଥିଲି ଏବଂ ସ୍ୱାସ୍ଥ୍ୟରକ୍ଷା ତଥା ମୌଳିକ ଚିକିତ୍ସା ବିଦ୍ୟା ସମ୍ବନ୍ଧରେ ଆବଶ୍ୟକ ଜ୍ଞାନ ହାସଲ କରିଥିଲି । ଆମ ଭଳି ବାହାରବୁଲା ବ୍ୟକ୍ତିମାନଙ୍କ ପାଇଁ ଏଭଳି ତାଲିମ ଏବଂ ଜ୍ଞାନ ନିହାତି ଦରକାର ହୋଇଥାଏ । ପ୍ରେମ୍ ତ ସହଜେ ଅବସରପ୍ରାପ୍ତ ମିଲିଟାରୀ ବ୍ୟକ୍ତି । ନର୍ସିଂ କୋର୍ସ ତାଙ୍କର ବାଧ୍ୟତାମୂଳକ ଶିକ୍ଷା । ଏଣୁ ଆମେ ବନ୍ଧୁଦ୍ୱୟ ଜଙ୍ଗଲ ମୂଳକରେ ଛୋଟକାଟର ଡାକ୍ତରର ଭୂମିକା ଗ୍ରହଣ କରିଥାଉଁ । ଅନେକ ସ୍ଥଳରେ ସର୍ପାହତ ବ୍ୟକ୍ତିକୁ ତୁରନ୍ତ ଆଣ୍ଟିସିରମ୍ ବା ଆଣ୍ଟିଭେନମ୍ ଇଂଜେକ୍‌ସନ ପ୍ରୟୋଗ କରି ନିଶ୍ଚିତ ମୃତ୍ୟୁରୁ ରକ୍ଷା କରିଛୁ ନିରୀହ ଗରିବ ବନବାସୀଙ୍କୁ ।

ବହୁ କ୍ଷେତ୍ରରେ ଝାଡ଼ାକ୍ରାନ୍ତ ମୁମୂର୍ଷୁ ରୋଗୀର ପ୍ରାଣରକ୍ଷା କରି ପାରିଛୁଁ । କେତେକ ସ୍ଥାନରେ ଜରାଗ୍ରସ୍ତ ବ୍ୟକ୍ତିକୁ ଆମର ସୀମିତ ଚିକିତ୍ସା ଜ୍ଞାନ ଦ୍ୱାରା ଆରୋଗ୍ୟ କରି

ପାରିଛୁ। ଏଠି ଦୁର୍ଗମ ବଣଘେରା ପାର୍ବତ୍ୟ ଅଞ୍ଚଳରେ ଯେଉଁ ସ୍ଥାନକୁ ପାଦ ଛଡା ଅନ୍ୟ ଯାନବାହନ ନାହିଁ, ଲୋକଙ୍କୁ ଡାକ୍ତରୀ ସେବା ଯୋଗାଇବା ସମ୍ଭବ ହୋଇ ନ ଥାଏ ସରକାରଙ୍କ ଦ୍ୱାରା। ରୋଗୀର ଅବସ୍ଥା ଅତି ସଙ୍କଟଜନକ ହେଲେ ତାକୁ ଖଟିଆରେ ବା ଭାରରେ ବୋହି, ପାହାଡ଼ ପାର ହୋଇ ଦୂର ହେମଗିରି ହାସପାତାଳକୁ ନେବାକୁ ହୁଏ ଯାହା ଏକ ଦୂରୁହ ବ୍ୟାପାର ହୋଇପଡ଼େ ଗିରିଜନମାନଙ୍କ ପାଇଁ। ଯେଉଁମାନଙ୍କ ପେଟକୁ ମୁଠାଏ ଦାନା ନାହିଁ, ଦେହର ଆଭରଣ ପାଇଁ ଖଣ୍ଡେ କନା ନାହିଁ, ଅର୍ଦ୍ଧାହାର ଓ ଅନାହାରରେ ଜୀବନ ବିତାନ୍ତି, ବଣ ଜଙ୍ଗଲର ଦାନ ଓ ଦୟା ଉପରେ ନିର୍ଭରକରି ବର୍ଷସାରା ବଞ୍ଚନ୍ତି, ସେମାନେ ଗିରି ଅତିକ୍ରମ କରି ଦାତବ୍ୟ ଡାକ୍ତରୀ ଚିକିତ୍ସା ଲାଭ କରିବା ସମ୍ଭବ ହୋଇ ନ ଥାଏ। ଏଣୁ ଏମାନେ ସବୁବେଳେ ଏଠାକାର ବଣୁଆ ବୈଦ୍ୟ 'ଗୁନିଆ' ଉପରେ ନିର୍ଭର କରନ୍ତି, ତା'ର ପରାମର୍ଶରେ ପରିଚାଳିତ ହୁଅନ୍ତି। ଅଞ୍ଚଳର ଏଇ ବଣୁଆ ବ୍ୟକ୍ତିମାନଙ୍କ ସହିତ ମୁଁ ବହୁଭାବେ ମିଶିଛି, ସେମାନଙ୍କ ସୁଖ ଦୁଃଖ ଉପଲବ୍ଧି କରିଛି।

ଗୌନ୍ତିଆଣୀ କନକ ଦେଈଙ୍କୁ ଜିନିର ସ୍ୱାସ୍ଥ୍ୟ ସମ୍ବନ୍ଧରେ ବାରମ୍ବାର ଚେତାଇ ଦେଇଥିଲି। ସେ ଅଧିକାଂଶ ଦିନ ଝାଡ଼ା ବାନ୍ତିରେ ଆକ୍ରାନ୍ତ ହୁଏ। ଫୁଟା ପାଣି ଓ ମୁଁ ଦେଇଥିବା ଔଷଧ ଚାଲୁ ରଖିବାକୁ ପରାମର୍ଶ ଦେଇ ଆସିଥିଲି। ବୋଧହୁଏ ସେମାନେ ପରାମର୍ଶର ବ୍ୟତିକ୍ରମ କରିଛନ୍ତି, ଏଣୁ ଜିନି ଦଶା ଭୋଗିଛି...

"କ'ଣ ହୋଇଛି ଘଟଣାଟା କହୁନୁରେ କହ୍ନେଇ!" - ମୋର ଘୋର ଉତ୍କଣ୍ଠା।

କହ୍ନେଇ ଆଖିରେ ଲୁହଧାର ଦେଖି ମୁଁ ଦୁଃସମ୍ବାଦଟି ଧରି ପାରିଥିଲି। ଧୈର୍ଯ୍ୟଧରି ଶୁଣିବାକୁ ମୋର ସାହସ ଯେମିତି ସେତେବେଳେ ଭାଙ୍ଗି ପଡ଼ୁଥିଲା।

କହ୍ନେଇ ବାଷ୍ପାକୁଳ ହୋଇ ନିରୁତାପ ଗଳାରେ କହିଲା- "ହଜୁର, ଆମ ଜିନି ଆଉ ଏ ସଂସାରରେ ନାହିଁ... ଦି'ଦିନ ତଳର ଘଟଣା। ଘର ବାରିପଟ କୂଅ ପାଖେ ଛିଡା ହୋଇଥିଲା। ବେଳ ରତ ରତ। ଟିକିଏ ଦୂରରେ କାମ କରୁଥାନ୍ତି ମୁଲିଆ ମାଇପି କେଇଜଣ। ସେମାନେ ଦେଖିଛନ୍ତି, କଣ୍ଟାଗଛ ଡେଇଁ ତୀର ବେଗରେ ପଶି ଆସିଲା ଚିତା ବାଘଟା। ଏକା ଖେପାକେ ଟେକି ନେଲା ଜିନିକୁ... ସବୁ ସରିଗଲା ହଜୁର, ସବୁ ଶେଷ ହୋଇଗଲା ଗୌନ୍ତିଆଙ୍କର।"

କହ୍ନେଇର ବୁକୁଥରା ବ୍ୟଥାଭରା କଥାକୁ ସାମ୍ନା କିରବା ଅସମ୍ଭବ, ଅସମ୍ଭାଳ ହୋଇଗଲା ମୋ ପକ୍ଷେ। ଶୋକବାହୀ ସମ୍ବାଦଟି ମୋ ଆତ୍ମାକୁ ପ୍ରଚଣ୍ଡ ଭାବେ ଆଘାତ କଲା। ମୋ ଦେହରେ ଗୋଟେ ଜରୁରୀକାଳୀନ ପରିସ୍ଥିତିର ସ୍ରୋତ ପ୍ରବାହିତ ହେଲା, ରକ୍ତରେ ନିଆଁ ଖେଳିଗଲା। ଆଖିକୁ ଅନ୍ଧାର ଦିଶିଲା। କେବଳ ଦୃଶ୍ୟ ହେଲା ଜିନିର କରୁଣ ମୁହଁ, ଶୁଭିଲା ତା'ର ମିଠା ମିଠା କଥା, ତା'ର କୈଶୋରିକ ଚପଳତା।

ଶଇତାନର ଧୃଷ୍ଟତା, ଦୁର୍ଦ୍ଧର୍ଷତା ମୋତେ ଅଥୟ, ଅଧୀର ଏବଂ ପ୍ରତିଶୋଧପରାୟଣ କରି ତୋଳିଲା। ଦୁରାଚାର ବାଘ ତିନି ମାସ ତଳେ ଆମ ପ୍ରିୟ ସହଚର ଚିମା ଭୋତ୍ରାକୁ ମାରିଥିଲା। ଏବେ ପୁଣି ବାଦ କରି ମୋର ଆଦରର ଜିନିକୁ ହତ୍ୟା କରିଛି ! ଶିକାରୀ ରକ୍ତ ଏହାକୁ ବରଦାସ୍ତ କରିବା ଅସମ୍ଭବ। ବୀର୍ଯ୍ୟ ଓ ପୌରୁଷ ପ୍ରତି ଏକ ପ୍ରଚଣ୍ଡ ଆହ୍ୱାନ।

ମୁଁ ତତ୍‌କ୍ଷଣାତ୍ ପ୍ରସ୍ତୁତ ହୋଇଗଲି ଏବଂ ଟ୍ୟାକ୍‌ସି ଧରି ଦୌଡ଼ିଲି ବୁର୍ଲାକୁ ସହଯୋଗୀଙ୍କ ଆଶୁ ଅବତାରଣା ଏବଂ ପଦକ୍ଷେପ ପାଇଁ।

ଦୁର୍ଘଟଣା ଶୁଣି ପ୍ରେମ୍ ହତବାକ୍ ହୋଇଗଲେ। ବାଘକୁ ସେଥର ହତ୍ୟା ନ କରି ଅଧାରେ ପକଳାଇ ଆସିବାର ପରିଣାମରେ ନିଜକୁ ଦୋଷୀ ଦୋଷୀ ମନେ କଲେ। ବିବ୍ରତ ହେଲେ। କିଏ ଜାଣିଥିଲା ଜାନୁଆରଟା ଏମିତି ଲଙ୍କାକାଣ୍ଡ କରି ବସିବ ବୋଲି ? ପରିଶେଷରେ ଶ୍ରୀଚରଣ ଶର୍ମାଙ୍କ ଅଲିଅଳି କନ୍ୟାବାଘର ଶିକାର ହେଲା ! ଏହାକୁ ଆଦୌ ବରଦାସ୍ତ କରାଯାଇ ନ ପାରେ। ଜଗତର ଯେ କୌଣସି ସ୍ଥାନରେ ଜିନି ହତ୍ୟାକାରୀ ନରହନ୍ତା ବାଘ ଆତ୍ମଗୋପନ କରିଥାଉ ନା କାହିଁକି, ତାକୁ ଖୋଜି ନିପାତ କରିବାକୁ ହେବ- ପ୍ରେମ୍ ହନୁ ଭଳି ହୁଙ୍କାରିଲେ। ଆଉ ମୁହୂର୍ତ୍ତେ ବିଳମ୍ବ ନ କରି କହ୍ନେଇ, ପ୍ରେମ୍ ଓ ମୁଁ ଡାଘୋରା ଅଭିମୁଖେ ଟ୍ୟାକ୍‌ସି ଛୁଟାଇଲୁ। ରେଳପଥରେ ଡାଘୋରା ଯାତ୍ରା କରିବା ସମୟସାପେକ୍ଷ, ସିଧାସଳଖ ଯାଇ ହୁଏ ନାହିଁ- ସମ୍ବଲପୁରରୁ ଝାରସୁଗୁଡ଼ା ରେଳ ଜଙ୍କ୍‌ସନ୍, ସେଠୁ ହେମଗିରି ବାଟଦେଇ ଡାଘୋରା। ଏଣୁ ବିଳମ୍ବକୁ ଏଡାଇବା ପାଇଁ ଭଡା କାର୍ ଥିଲା ଏକ ମାତ୍ର ଉପାୟ। ଏପରିସ୍ଥଳେ ପ୍ରେମ୍‌ଙ୍କ ପୁରୁଣା ଅଷ୍ଟିନ୍ ନିର୍ଭରଯୋଗ୍ୟ ନ ଥିଲା।

ଟ୍ୟାକ୍‌ସି ଗଡୁଥାଏ, ବାଟ ସରୁ ନ ଥାଏ। ଆଗ ସିଟ୍‌ରେ କହ୍ନେଇ, ପଛରେ ଆମେ ବନ୍ଧୁଦ୍ୱୟ, ଆମ ଭିତରେ ନୀରବତାର ଦୂରତ୍ୱ। ଯାତ୍ରାବେଳେ ଆମେ ସର୍ବଦା ଦୁନିଆଯାକର ଗପ, ଆଳାପ ଆଲୋଚନା କରିଥାଉଁ ଢିଙ୍କିଶାଳଠାରୁ ଢେଙ୍କାନାଳ ପର୍ଯ୍ୟନ୍ତ, ଚାଟଶାଳୀଠାରୁ ରାଜନୀତି ପର୍ଯ୍ୟନ୍ତ। କିନ୍ତୁ ଏଥର ଉଭୟେ ମୌନ ଥିଲୁ। ମନ ଯେମିତି ମରି ଯାଇଥିଲା, ତାକୁ ଆଚ୍ଛନ୍ନ କରିଥିଲା ହତାଶା ଓ ଅନୁଶୋଚନାର ଛାୟା।

ବେଲପାହାଡ ପାରି ହୋଇଛୁ, ଗେଙ୍ଗୁଟିଆ କରକଚା ରାସ୍ତା ଆରମ୍ଭ ହୋଇଗଲା ଏବଂ ଶିଳରେ ମସଲା ବାଟିଲା ବେଳେ ଯେମିତି ବଟାବାଲାର ଦେହ ଆଗପଛ ହେଉଥାଏ, କାର୍ ଭିତରେ ଆମର ଅବସ୍ଥା ସେଇପରି ହେଉଥିଲା। ଖାଲ ଢିପର ଖଣ୍ଡିଆ ରାସ୍ତା, ହେପାଜତ ଅଭାବରୁ ତା'ର ଦୁରବସ୍ଥା। ପୁରୁଣା ଟ୍ୟାକ୍‌ସିର ଯାନ୍ତ୍ରିକ ତ୍ରୁଟି ଯେ କୌଣସି ମୁହୂର୍ତ୍ତରେ ହୋଇପାରେ- ମୁଁ ଆଶଙ୍କା କରୁଥିଲି। କିନ୍ତୁ ଯାନଯନ୍ତ୍ରଟି ଆମକୁ ସହଯୋଗ କରି ଧୂଳିର ଧୂଆଁ ଉଡାଇ ଆଗେଇ ଚାଲିଥାଏ। ହଠାତ୍ ଗୋଟାଏ

ଚକ ବିସ୍ଫୋରଣ ଶବ୍ଦ କରି ଗାଡ଼ି ଗତିକୁ ରୋଧକଲା। ଷ୍ଟେପ୍‌ନି ଚକକୁ ବ୍ୟବହାର କରି ପୁଣି ଖଣ୍ଡେ ବାଟ ଆଗେଇଲୁ, ଆଉ ଗୋଟିଏ ଟାୟାର ସଂକ୍ରାମକ ରୋଗରେ ଆକ୍ରାନ୍ତ ହେଲାପରି ଚିତ୍କାର କରି ଅଟକି ଗଲା, ଗୋଟାଏ ଦୁର୍ଘଟଣା ଘଟିବାକୁ ଯାଉଥିଲା ଏବଂ କାର୍‌ଟି ବାମ ପାଖ ରାସ୍ତାକଡ଼ର ଖୁବ୍ ବଡ଼ ଖାତ ଭିତରକୁ ମୋଡ଼ି ହୋଇ ଯାଇଥିଲା। ଦକ୍ଷ ଚାଳକ ମହାଶୟ ଗାଡ଼ିଟିକୁ ସମ୍ଭାଳି ପାରିଥିଲା ତା'ର ଚାଳନା ଚାତୁରୀ ଦ୍ୱାରା। ହେମଗିରି ସେଠାରୁ ଆଉରି ପାଞ୍ଚ ମାଇଲ ଦୂର ହେବ। ଆମକୁ କୌଣସି ମତେ ଗନ୍ତବ୍ୟ ସ୍ଥଳରେ ଶୀଘ୍ର ପହଞ୍ଚିବାକୁ ହେବ। କୌଣସି ଯାନ ବା ବ୍ୟକ୍ତି ଦୃଷ୍ଟିକୁ ଆସୁ ନାହିଁ। ଯାନବାହନ ବା ଜନ ଯାତାୟାତର ବହୁଳତା ନ ଥିଲା ପରି ମନେ ହେଉଥିଲା ଏ ଅଞ୍ଚଳରେ। ଏଣୁ ରାସ୍ତା ମରାମତି ପାଇଁ ଦୃଷ୍ଟି ନ ଥିଲା କାହାର। ଆଉ ଛିଡ଼ା ହୋଇ ଲାଭ ନାହିଁ, ସମୟ ସାରିବା କଥା କେବଳ। ମୋ ପାଖରେ ଯଥେଷ୍ଟ ଅର୍ଥ ଥିଲା। ଟ୍ୟାକ୍‌ସି ଚାଳକକୁ ତା'ର ପ୍ରାପ୍ୟ ଏବଂ ବକ୍‌ସିସ ଧରାଇ ପାଦରେ ତିନିଜଣଯାକ ଯାତ୍ରା କଲୁ। ଭାରି ଜିନିଷଗୁଡ଼ିକ ବୋହିଲା କହ୍ନେଇ। ଆମେ ଅଳ୍ପ ଓଜନର ଲଘୁ ଜିନିଷ ହାତରେ ଧରିଲୁ; କାନ୍ଧରେ ବନ୍ଧୁକ ଗୋଟିଏ ଗୋଟିଏ। ଅକ୍ଳେଶରେ ହେମଗିରି ପହଞ୍ଚିଗଲୁ। ଦେଖୁ, ଷ୍ଟେସନରେ ମାଲ୍‌ଗାଡ଼ିଟିଏ ଡାଘୋରା ଆଡକୁ ମୁହଁ କରିଛି। ଆମର ଉଦ୍ଦେଶ୍ୟ ରେଳଚାଳକକୁ କହିଲୁ। ସେ ଦୟା ପରବଶ ହୋଇ ସମ୍ମତି ଜଣାଇଲା ଏବଂ ଆମକୁ ଡାଘୋରାରେ ଓହ୍ଲାଇ ଦେବ ବୋଲି ରାଜି ହୋଇଗଲା, ଯଦିଚ ଡାଘୋରା ତା'ର ଅଟକିବା ସ୍ଥାନ ନୁହେଁ। ଦୟାବାନ୍ ରେଳ ଚାଳକ ତାହା ହିଁ କଲା ଏବଂ ଆମେ ଧନ୍ୟବାଦ ଦେଇ ଭୁସ୍ ଭାସ୍ ଗାଡିରୁ ଓହ୍ଲାଇଲୁ। ଚିର୍ମିରା ପହଞ୍ଚିଲା ବେଳକୁ ସଞ୍ଜ। ଆକାଶରେ ଶୁକ୍ଳପକ୍ଷ ପଞ୍ଚମୀ ତିଥିର ଧନୁଭଳି ବକ୍ରାକାର ଚାନ୍ଦ; ଧରା ଉପରେ ବିଛାଇ ଦେଇଛି ତା'ର ଅସ୍ପଷ୍ଟ, ଅନୁଜ୍ଜ୍ୱଳ ଶୀତଳ ଆଲୋକ।

ଆମକୁ ଶର୍ମା ଦେଖି ଭୋ ଭୋ କାନ୍ଦି ଉଠିଲେ। "ଆମ ସଂସାର ଉଜୁଡିଗଲା, ଆମେ ଭାସିଗଲୁ, ଆମ ଏକୋଇରବଳା କୁଳ ନନ୍ଦିନୀକୁ ବାଘ ଖାଇଗଲା, ଆମେ ଜୀବନ ଧରି ରହିବୁ କେମିତି"- ଏପରି କାନ୍ଦି କହି ଚାଲିଲେ।

ଶର୍ମା କାନ୍ଦି କାନ୍ଦି ତଳେ ଲୋଟି ଯାଉଥାନ୍ତି। ଆର୍ଦ୍ର ଆଖିରୁ ଅବିରତ ଅଶ୍ରୁପାତ କରୁଥାନ୍ତି। ଦେହରକ୍ଷୀ ଟହଲିଆ ଦୁଇଜଣ ଯାକ ତାଙ୍କୁ ସମ୍ଭାଳୁଥାନ୍ତି। ତାଙ୍କ ବୁକୁଫଟା ଶୋକରେ ମୁଁ ମଧ୍ୟ ଅସମ୍ଭାଳ ହୋଇ ପଡ଼ିଲି, ଆଖିର ଲୁହକୁ ଚାପି ପାରି ନ ଥିଲି। ମୁଁ ମୁହଁ ଲୁଚାଇଲି। ପ୍ରେମ୍ ଅବଶ୍ୟ ଲକ୍ଷ୍ୟ କରି ପାରିଥିଲେ। ମୋ ମୁହଁ ପଢ଼ି ସେ କାରବାର ଆଉ ବ୍ୟବହାର କରନ୍ତି। ମୋ ପିଠି ଥାପୁଡ଼ାଇଲେ ଓ ଶର୍ମାଙ୍କର ମଧ୍ୟ। କସ୍ମିନ୍‌କାଳେ ଲୁହ ପୌରୁଷକୁ ଶୋଭା ପାଏ ନାହିଁ, କିନ୍ତୁ ମୁଁ ନାଚାର ଥିଲି; ଶିକାରୀ ହେଲେ ହେଁ, ଦେହଧାରୀ ଜଣେ ସାଧାରଣ ମଣିଷ ତ।

ଆମେ ପହଞ୍ଚିବା ଶୁଣି ତେଣେ ଗୌନ୍ତିଆଣୀ ଖୁବ୍ ଜୋର୍‌ରେ ବାହୁନି କାନ୍ଦି ଉଠିଲେ। ଶୋକାର୍ତ୍ତରେ ଗୃହର ବାୟୁମଣ୍ଡଳ ପୂରି ରହିଥିଲା, ଦୁଃଖର ଛାୟା ଗ୍ରାସ କରିଥିଲା ସବୁଆଡ଼। କେତେଜଣ ପଡୋଶୀ ଆଦିବାସୀ ରମଣୀ ଗୌନ୍ତିଆଣୀଙ୍କୁ ଘେରି ବସିଥିଲେ, ସମବେଦନାର ଲୁହ ଢାଳୁଥିଲେ ନୀରବରେ। ଗୌନ୍ତିଆଣୀ ଗୋଟିଏ ଖଟିଆ ଉପରେ ମୁହଁ ମାଡ଼ି ରୋଦନ କରୁଥିଲେ- "କୁଆଡ଼େ ଗଲୁରେ ମୋର ନୟନ ପିତୁଳା, କୁଆଡ଼େ ଗଲୁରେ ମୋର ଧନ ଶଙ୍ଖାଳି, କୁଆଡ଼େ ଲୁଚିଲୁରେ ମୋର ନନୀ ସୁନ୍ଦରୀ, ମୋତେ କାହିଁକି ସାଙ୍ଗରେ ନେଲୁ ନାହିଁରେ ମୋର ଚନ୍ଦ୍ରବଦନୀ...." (ଗୌନ୍ତିଆଣୀ ଜିନିକୁ ଗେହ୍ଲାରେ ନନୀ ଡାକନ୍ତି, ନନୀ ସମ୍ବଲପୁରୀ ଭାଷାରେ ଝିଅକୁ ବୁଝାଏ)।

ପ୍ରେମ୍ ଓ ମୁଁ କିଂ କର୍ତ୍ତବ୍ୟବିମୂଢ଼ ହୋଇ ଛିଡ଼ା ହୋଇ ରହିଥିଲୁ। ଶର୍ମା ପରିବାର ପ୍ରତି ଅନ୍ତର୍ବେଦନା ଭରି ଉଠିଲା। ପରିବାରଟି ସହିତ ଓତଃପ୍ରୋତ ଭାବେ ଆମେ ଜଡ଼ିତ। ଆତିଥ୍ୟରେ ଶର୍ମା ପରିବାରବର୍ଗ ତିଳେମାତ୍ର ହେଲା କରି ନାହାନ୍ତି, ବରଂ ଆମ ଉପସ୍ଥିତିରେ ସେ ଆନନ୍ଦିତ ହୁଅନ୍ତି। ସଂପ୍ରତି ନିଆଦିଆ ବାଣିଜ୍ୟିକ ସଂସାର ଭିତରେ ଆମର ସମ୍ପର୍କ ଥିଲା କିନ୍ତୁ ଭିନ୍ନ। ଆତ୍ମୀୟତାରେ ବନ୍ଧାଥିଲୁ ଆମେ। ମୁଁ ନିଜକୁ ସବୁଠୁଁ ବେଶୀ ଦୋଷୀ ବୋଲି ମଣୁଥିଲି ଶର୍ମା ପରିବାରରେ ଦୁର୍ଦ୍ଦଶା ପାଇଁ। ସେଥର ବାଘଟାକୁ ନ ମାରି ଦୁର୍ଗତମାନଙ୍କୁ ହତାଶରେ ଭସାଇ ଦେଇ ପଳାଇବା ଆଦୌ ଉଚିତ ନ ଥିଲା। ବାଘଟାକୁ ଖୋଜି ଯଦି ହତ୍ୟା କରାଯାଇଥାନ୍ତା ହୁଏତ ଶର୍ମାଙ୍କର କନ୍ୟା ଆଜି ଅପମୃତ୍ୟୁ ଭୋଗି ନ ଥାନ୍ତା। (ଅବଶ୍ୟ ଅନେକ ଚେଷ୍ଟା କରିଥିଲୁ ମାରିବା ପାଇଁ, କିନ୍ତୁ ତା'ର ମରିବାର ଯୋଗ ନ ଥିଲା। କେଜାଣି କାହିଁକି ଚାଲାଖ ବାଘ ତା ଦୁଷ୍ଟ ପ୍ରକୃତି ବନ୍ଦ ରଖିଥିଲା ଆମକୁ ଠକେଇବା ପାଇଁ। ଶିକାରୀର ଉପସ୍ଥିତି ବୋଧହୁଏ ବାଘ ଜାଣିପାରେ- ଏହାର ରହସ୍ୟ ମୋର ଅଦ୍ୟାପି ଅବୁଝା ରହିଛି।)। ମୁଁ ମର୍ମାହତ ହୋଇ ଭାଙ୍ଗି ପଡ଼ିଲି। ମୋ ମୁହଁରେ ଭାଷା ନ ଥିଲା ସାନ୍ତ୍ୱନା ଦେବା ପାଇଁ । ନିଜେ ଯେତେବେଳେ ସନ୍ତାପତି, ସାନ୍ତ୍ୱନା କାହାକୁ ବା ଦେବି ? କିନ୍ତୁ ପ୍ରତିଶୋଧର ବହ୍ନି ହୁତ୍ ହୁତ୍ ହୋଇ ଜଳି ଉଠିଲା ମୋ ଭିତରେ। ବନ୍ଧୁକକୁ ସାଉଁଳି ନେଲି ଥରେ, ଚୁମା ଦେଲି ତାକୁ ଖାମିଦର ଚରିତାର୍ଥ କରିବା ପାଇଁ ଉଦ୍ଦେଶ୍ୟ। ଜୀବନର ସବୁଠୁଁ ଘଡିସନ୍ଧି ମୁହୂର୍ତ୍ତ- ଏକ ଆହ୍ୱାନ- କର ବା ମରର ଡାକରା। ଗୋଟିଏ ଦୃଢ଼ ସଂକଳ୍ପ କରିନେଲି ମନେ ମନେ- ବାଘକୁ ମାରିବି ବା ନିଜେ ମରିବି। ଜୀବନରେ ଜିଦି ବା ପ୍ରତିଜ୍ଞା ବେଳେବେଳେ ଆବଶ୍ୟକ ହୋଇଥାଏ। ମଉଳା ମନ, ଦୁର୍ବଳ ପ୍ରାଣ, ଭଙ୍ଗା ହୃଦୟକୁ ଉଜ୍ଜୀବିତ ଓ ମଜବୁତ କରିବା ପାଇଁ ଦରକାର ପଡେ ଦୃଢ଼ ସଂକଳ୍ପ ଏବଂ ଶପଥ।

ଶୁଣିଲି, ଶର୍ମାଙ୍କର ସ୍ତ୍ରୀ ଗୌନ୍ତିଆଣୀ କନକ ଦେଈ ଅନ୍ତଃସତ୍ତ୍ୱା। ଅନ୍ଧାର ଭିତରେ ଏକ ଆଲୋକର ସତ୍ତା ଅନୁଭବ କଲି ଯେମିତି ! ପୁଣି ଶଙ୍କିତ ହେଲି। କନ୍ୟା

ମୃତ୍ୟୁର ଧକ୍କାରେ ଯଦି ସେ ଭାଙ୍ଗି ପଡ଼ନ୍ତି, ଭ୍ରୁଣ ନଷ୍ଟ ହୋଇ ଯିବାର ସମ୍ଭାବନା ରହିଛି। ଏପରି ବିପଦ ବେଳେ ଆଗନ୍ତୁକ- ଆଶାଯଟିକୁ ସୁରକ୍ଷିତ ରଖିବା ଏକାନ୍ତ ଜରୁରୀ। ସେ ବିଛଣା ଉପରେ ମୁହଁ ଲୁଚାଇ କାନ୍ଦୁ ଥା'ନ୍ତି। ଆମ ଆଡ଼କୁ ଆଦୌ ଚାହିଁଲେ ନାହିଁ। କିଛି ସମୟ ନୀରବତା ପରେ ମୁଁ କହିଲି- "ଯାହା ହେବାର ହେଲାଣି ଭଉଣୀ, କାଳର ନିଷ୍ଠୁର ନିର୍ଦ୍ଦେଶକୁ କିଏ ବା ଏଡାଇପାରିବ? କିନ୍ତୁ ଭଉଣୀ କଥା ଦେଉଛି, ଜିନିହନ୍ତା ବାଘକୁ ଏଇ ବନ୍ଧୁକରେ ନିପାତ ନ କଲା ପର୍ଯ୍ୟନ୍ତ ମୁଁ ଏଠୁ ଆଉ ଯାଉ ନାହିଁ। ଯଦି ବନ ଦେବତୀ କୃପା କରନ୍ତି, ଦୁଷ୍ଟକୁ ସଂହାର କିରବାକୁ ମୋତେ ଶକ୍ତି ଦିଅନ୍ତି, ତାକୁ ବଧ କରି ତୁମ ପାଦ ତଳେ ଅର୍ପଣ କରିବି (ଯେମିତି ମହାଭାରତରେ ଦିନେ ବୀର ଭୀମସେନ ଦୁରାଚାର ଦୁଃଶାସନର ମୁଣ୍ଡ ଆଣି ଦେବୀ ଦ୍ରୌପଦୀଙ୍କ ପାଦତଳେ ଅର୍ପଣ କରିବାକୁ ବଜ୍ରଶପଥ କରିଥିଲା।) ଦୁଷ୍ଟର ଯଥୋଚିତ ଶାସ୍ତି ତ ବିଧିର ନିୟମ। ଭଉଣୀ ମୋର ଅନୁରୋଧ, ଧୈର୍ଯ୍ୟଧରି ଦୁଃଖକୁ ସମ୍ଭାଳି ନିଅ, ଆମ ରାଣ...."

ଶର୍ମାଙ୍କ ଘରେ ଆଉ ମୂହୂର୍ତ୍ତେ ରହିବାର ବେଳ ନ ଥିଲା। ମାରିବି ନଚେତ ମରିବିର ପଣ ମୋ ମନରେ ବଳବତ୍ତର ହେଲା ପ୍ରବଳ ଭାବେ। ଗୁରୁ ଦାୟିତ୍ୱ ଓ ପରମ କର୍ତ୍ତବ୍ୟର ଆହ୍ୱାନରେ ତେଜି ଉଠିଥିଲି। ପ୍ରେମ୍‌ଙ୍କ ସହିତ ଗାଁର ଦୁଇଜଣ ସାହସୀ ବ୍ୟକ୍ତିଙ୍କୁ ଧରି ରକ୍ତମୁଖା ଅନ୍ୱେଷଣରେ ବାହାରି ପଡିଲି। ପୁରାହତ ଉଷମ୍ ପୋଷାକ, ମୁଣ୍ଡରେ ଟୋପି, ଅଣ୍ଟାରେ ଗୁଳିଭର୍ତ୍ତି ଚମଡା ବେଲ୍ଟ, ଗୋଡ଼ରେ ସେଭେନଷ୍ଟାର ସ୍ପୋର୍ଟିଂ ଜୋତା, ହେଡ୍ ଲାଇଟ୍ ଏବଂ ବନ୍ଧୁକ ଦେହକୁ ଓ ମନକୁ ଉଷ୍ମକରି ତୋଳିଥିଲା ଯେମିତି ମୁଁ ରଣଭୂମିରେ ଅବତୀର୍ଣ୍ଣ।

ରାତି ତମାମ ତନ୍ନ ତନ୍ନ କରି ଅନ୍ୟୂନ କୋଡ଼ିଏ କିଲୋମିଟର ବର୍ଗାଞ୍ଚଳ ଘୂରି ବାଘକୁ ଖୋଜିଥିଲୁ। ବାଘର ଚିହ୍ନବର୍ଣ୍ଣ ନାହିଁ। ଅଭିଯାନରେ ଭେଟ ହୋଇଥିଲା ଦଳେ ବଣୁଆ ହାତୀଙ୍କ ସହିତ। ଆମ ଆଗରେ ସମତଳ ଜଙ୍ଗଲଟିଏ। ଗୁଡ଼ିଏ ଶାଳବୃକ୍ଷର ଅରଣ୍ୟ। ଏହାକୁ ଅତିକ୍ରମ କରି ଆରପର ମହୁଲଡିହା ଜଙ୍ଗଲକୁ ଯିବାକୁ ହେବ। ଫୋକସ୍ ଲାଇଟ୍ ପଡ଼ିବା ମାତ୍ରେ ଗୁଡ଼ିଏରେ ହାତୀର ଆଖି ଦପ୍ ଦପ୍ କଲା। ବାଟ ଓଗାଳି ଦଳେ ହାତୀ ଛିଡ଼ାହୋଇଛନ୍ତି ଛୁଆଠୁ ବଡ଼ ପର୍ଯ୍ୟନ୍ତ। ସେମାନଙ୍କ ଶୁଣ୍ଢ ହଲୁଥିବାର ଦେଖି ପାରିଥିଲି। ଆମର ଗତିରୋଧ ହେଲା। ସେମାନେ ଆଗ ରାସ୍ତାରୁ ଅପସରି ନ ଯିବା ପର୍ଯ୍ୟନ୍ତ ଆମେ ପାଦେ ଆଗେଇବା ମଧ୍ୟ ଅସମ୍ଭବ। ପ୍ରେମ୍ ତାଙ୍କ ରାଇଫଲକୁ ଜାଗତିଆରି ଢଙ୍ଗରେ ଉତ୍ତୋଳନ କଲେ। ରାଇଫଲ ମ୍ୟାଗାଜିନ୍‌ରେ ମାତ୍ର ଦଶଟି ଗୁଳି ବ୍ୟବହାର କରାଯାଇପାରେ ଉପର୍ଯ୍ୟୁପରି। କିନ୍ତୁ ଏଠାକାର ହାତୀମାନେ ହିଂସ୍ର ନୁହନ୍ତି, ଜଙ୍ଗଲୀ ବାସିନ୍ଦାମାନଙ୍କ ସହିତ ପରିଚିତ। ବିନା କାରଣରେ ସେମାନେ ଆକ୍ରମଣ କରନ୍ତି ନାହିଁ। ସେମାନଙ୍କର କ୍ଷତି ଘଟାଇଲେ ଯାହା ପ୍ରତିଶୋଧପରାୟଣ

ହୁଅନ୍ତି । ଭୟ କରବାର କୌଣସି କାରଣ ନାହିଁ । ପ୍ରେମ୍‌ଙ୍କ କାନରେ ଫିସ୍ ଫିସ୍ କରି କହିଲି । ରାଇଫଲରେ ଗୋଟେ ଅଧେ ହାତୀକୁ ମାରି ଟଳେଇ ହେବ, କିନ୍ତୁ ସେମାନେ ଅଛନ୍ତି ଦଳେ, ସଂଘବଦ୍ଧ ହୋଇ ଆକ୍ରମଣ କଲେ ଆୟର କରିବା ଅସମ୍ଭବ ହୋଇପଡ଼ିବ । ହାତୀମାନେ ଆମର ଲକ୍ଷ୍ୟ ନୁହନ୍ତି । ବାଘ ଠାବ ଏବଂ ଉଚିତ ଜବାବ ଆମର ଉଦ୍ଦେଶ୍ୟ । ହାତୀମାନେ ଯଦି ଆମ ଆଗରୁ ଦୂରେଇ ନ'ଯାଆନ୍ତି ଆମେ ବରଂ ଦୂରେଇ ଯିବା ଶ୍ରେୟସ୍କର । ତେବେ ଆମେ ଏଠାରେ ଉପସ୍ଥିତ ଅଛୁଁ, ଆମେ ଆଗକୁ ଯିବାକୁ ଚାହୁଁ, ସେମାନେ ଆମ ଗତିରୋଧ କରି ବାଟ ଓଗାଳିଛନ୍ତି ବୁଝି ପାରିଲେ ହାତୀମାନେ ଆପେ ଆପେ ଅପସରି ଯିବେ । ପ୍ରେମ୍‌ଙ୍କୁ ବୁଝାଇ କହିଲି । ସେମାନଙ୍କୁ ବିରକ୍ତ କାହିଁକି କରିବା ?

ଏବେ ଆମେ ସେହିଠାରେ ଛିଡ଼ା ହୋଇ ବଡ଼ ପାଟିରେ କଥାବାର୍ତ୍ତା ହେଲୁ । ଗାଁବାଲା ଗାଇଡ଼ ଦୁଇ ଜଣଙ୍କୁ ମଧ ଉଚ୍ଚ ସ୍ୱରରେ କଥା କହିବାକୁ ନିର୍ଦ୍ଦେଶ ଦେଲି । ଫ୍ଲାସ୍କରୁ ଚା ପିଇ ପ୍ରେମ୍ ସିଗାରେଟ ଟାଣିଲେ । ସତକୁ ସତ ହାତୀମାନେ ଆସ୍ତେ ଆସ୍ତେ ଦୃଷ୍ଟିରୁ ଅନ୍ତର୍ହିତ ହୋଇଗଲେ । ପଶୁ ସହିତ ମଧ ମିତ୍ରତା ଆଚରଣ କରାଯାଇପାରେ ଏବଂ ପ୍ରତିଦାନ ଆଶା କରିବା ସମ୍ପୂର୍ଣ୍ଣ ନିଷ୍ଫଳ ପ୍ରୟାସ ନୁହେଁ- ମୁଁ ଅନୁଭବ କରିଥିଲି । ହାତୀମାନେ ଚୁପ୍ ଚାପ୍ ଚାଲି ଯିବା ପରେ ଆମେ ପୁଣି ଆଗ ମହୁଲଡିହା ଜଙ୍ଗଲରେ ପ୍ରବେଶ କରିଥିଲୁ । କେତୋଟି ବାରହା, ପଲେ ହରିଣ, ଗୋଟିଏ କୁଟୁରା, ଝିଙ୍କ ଏବଂ କେତେ ନା କେତେ ଠେକୁଆ । ପ୍ରେମ୍ ଲୋଭ ସମ୍ବରଣ ନକରିପାରି ରାଇପଲ ଉଠାଇଥିଲେ, ମୁଁ କିନ୍ତୁ ବାରଣ କରିଥିଲି । ଜଙ୍ଗଲୀ ମାଂସ ପାଇଁ ଆଗ୍ରହ ନ ଥିଲା, ଅଭିପ୍ରାୟ ନ ଥିଲା । ଲକ୍ଷ୍ୟ ଥିଲା ମଣିଷଖିଆ ବାଘଠେଇଁ । କିନ୍ତୁ ଟାଳାଖ ବାଘର ଦର୍ଶନ ନ ଥିଲା, ନ ଥିଲା, ତା'ର ଚିହ୍ନ-ବର୍ଣ୍ଣ । ଅପରାଧ ଘଟାଇ ଆତ୍ମଗୋପନ କରିଛି ଏକ ଅଜ୍ଞାତ ସ୍ଥାନରେ, ଖୋଜି ପାଇବା ମୁସ୍କିଲ ହୋଇପଡ଼ିଛି ।

ଏଠି ଚିତାବାଘର ଦୁଷ୍ଟ ପ୍ରକୃତି ସମ୍ବନ୍ଧରେ ପଦେ କହି ରଖୁଛି । ମହାବଳଠାରୁ ଚିତା ବାଘର ଦୁସରା ପ୍ରକୃତି । ମହାବଳ ବାଘ ରାତିରେ ମାରେ ନାହିଁ ପ୍ରାୟ, ଗାଁ ଗଣ୍ଡା ବସ୍ତିରେ ପଶି ମଣିଷ, ପ୍ରାଣୀ ଶିକାର କରେ ନାହିଁ । ତା' କାର୍ଯ୍ୟକଳାପରେ ଚୌର୍ଯ୍ୟବୃତ୍ତି ପ୍ରାୟତଃ ନ ଥାଏ । କିନ୍ତୁ ଚିତାବାଘ ଚୋର ପ୍ରକୃତିର ଦିନବେଳେ ବି ଘରେ ପଶିଯାଏ, ଶିକାର ଟେକିନିଏ, ଲୁଚିଛପି କାମ କରେ । ମହାବଳ ବାଘର କାର୍ଯ୍ୟରେ ରାଜକୀୟତା ଲକ୍ଷ୍ୟ କରାଯାଏ । ତା'ସହିତ ମୁହାଁମୁହିଁ ଭେଟ ହେଲେ ସେ ହଠାତ୍ ଆକ୍ରମଣ କରେନାହିଁ । ରାସ୍ତାରେ ଗାଡିର ଉଜ୍ଜ୍ୱଳ ଆଲୋକ ଆଖିରେ ପଡ଼ିଲେ, ସେ ଡରିଯାଏ ନାହିଁ । ଆଖି ଦୁଇଟି ନୀଳବର୍ଣ୍ଣ ଅଗ୍ନି ପିଣ୍ଡୁଳା ଭଳି ଉଜ୍ଜ୍ୱଳି ଉଠେ ଏବଂ ଖୁବ୍ ସରଳ ଭାବେ ଧୀରେ ଧୀରେ ରାଜକୀୟ ଠାଣିରେ ରାସ୍ତା ଧାରକୁ ଓହ୍ଲାଇ ଯାଏ । ସେଠି ଠୁଙ୍କା

ହୋଇ ବସି ରହେ ଏବଂ ପଥଚାରୀକୁ ପଥ ଛାଡ଼ି ଦିଏ। କିନ୍ତୁ ଚିତାବାଘର ଢଙ୍ଗ ବିପରୀତ। ସେ ଲାଇଟ୍ ପଡ଼ିବା ମାତ୍ରେ ଇ ଦୌଡ଼ି ପଳାଏ, ପଥର ବା ଗଛ ଆଢୁଆଳରେ ନିଜକୁ ଲୁଚାଏ। ଏଣୁ ବାଘ ଅପେକ୍ଷା ଚିତା ବାଘ ବିପଜ୍ଜନକ, ମାରାତ୍ମକ ବାଘକୁ ମାରିହୁଏ। କାରଣ ତାକୁ ଠାବ କରିବା ଅପେକ୍ଷାକୃତ ସହଜ, କିନ୍ତୁ ଚିତାକୁ ମାରିବା ଦୁଷ୍କର ଦୁରୂହ ହୋଇପଡ଼େ। ଏଣୁ ଏହି ମଣିଷଖିଆ ଚିତାବାଘ ଆମ ପାଇଁ ଘୋର ଚିନ୍ତାର ବିଷୟ ହୋଇପଡ଼ିଥିଲା।

ଶୁଣିଲି, ଅଳ୍ପଦିନ ତଳେ ପତରାପାଲି ଗାଁର ଦୁର୍ଦ୍ଧର୍ଷ କାଠୁରିଆ ବୁଖ୍ରା ମୁଣ୍ଡାକୁ ଅଣ୍ଡିରା ଚିତା ବାଘଟା ମୁହାଁମୁହିଁ ମାଡ଼ି ବସିଥିଲା। ବୁଖ୍ରା ମୁଣ୍ଡା କମ୍ ସାହସୀ ନୁହେଁ, ବାଘକୁ ବିଲେଇ ସମଝେ। ଯେତେବେଳେ ମହାବଳ ବାଘମାନେ ଏ ଅଞ୍ଚଳରେ ହାଉଯାଉ ହେଉଥିଲେ, ସେ ଥିଲା ଯୁବକ, ବାହୁରେ ଥିଲା ଅନେକ ବଳ, ମନରେ ଥିଲା ଅପରିମିତ ସାହସ। ବହୁବାର ବାଘ ସଙ୍ଗେ ଭେଟା ଭେଟି ହୋଇଛି ତା'ର। କନ୍ତୁ ବାଘ ବୁଖ୍ରାର କିଛି କ୍ଷତି କରିନାହିଁ। ବରଂ ବୁଖ୍ରାର ସାହସକୁ ସମ୍ମାନ ଜଣାଇ ବାଟ ପରିଷ୍କାର କରି ଦେଇଛି। ବାଘମାନେ ଏଇ ବିସ୍ତୀର୍ଣ୍ଣ ବନଭୂଇଁରେ ସହବାସୀ ଭଳି ଚଳି ଆସିଛନ୍ତି, କେବେ ଗୋରୁ ବା ମଣିଷ ମାରିବା ତା'ର ନଜରରେ ନ ଥିଲା। କ୍ରମଶଃ ବାଘମାନଙ୍କ ସଂଖ୍ୟା ହ୍ରାସ ପାଇ ବସିଲାଏବଂ ଏ ଅଞ୍ଚଳରୁ ମହାବଳ ବାଘ ବିବାକେ ଲୋପ ପାଇଗଲେ, ସମ୍ପୂର୍ଣ୍ଣ ଅବଲୁପ୍ତ। ଏବେ ବାଘ ନ ଥିଲେ ମିରିଗ ନାଟ କଲା ଭଳି ଗୋଟେ ଦୁଇଟା ଚିତାବାଘ କେଉଁଆଡୁ ଉଠି ଆସି ଏଠି ମାତିଛନ୍ତି। କେତୁଟା ଗାଇଗୋରୁ ଓ ମଣିଷ ଖାଇଲାଣି ବୋଲି ବୁର୍ଖା ଶୁଣିଥିଲା, କିନ୍ତୁ ଖାତିର କରି ନ ଥିଲା ଆଦୌ। ଯେଉଁ ସାପୁଆ କେଳା ସର୍ପ ସମ୍ରାଟ ଅହିରାଜକୁ ବଶୀଭୂତ କରପାରେ, ତା'ର ପ୍ରଭୁ ବନିପାରେ, ସେ କେଳା କ'ଣ ଅନ୍ୟ ସାପକୁ ଭୟ କରିପାରେ? ସେଦିନ ଗାଁ ବାଲାଙ୍କ ଆକଟ ନ ମାନି ବୁଖ୍ରା ବନ ଭିତରକୁ କାଠ କାଟିବାକୁ ସଅଳ ପଶି ଯାଇଥିଲା। କନ୍ତୁ ପରିଣାମ ଭୋଗିଲା ସତକୁ ସତ। ଚିତାବାଘୁଣୀ ଛପି ଛପି ଆସି ତା ଉପରକୁ ଝାମ୍ପି ପଡ଼ିଲା। କିନ୍ତୁ ବୃଦ୍ଧ ବୁଖ୍ରା ମୁଣ୍ଡା ଛାଡ଼ିବାର ଲୋକ ନୁହେଁ। ଯେଉଁ ଧାରୁଆ ଟାଙ୍ଗିଆରେ ସେ ବୃହତ୍ ବୃକ୍ଷକୁ କେଇ ଚୋଟରେ ସଫା କରିଦିଏ, ସେଟା ତା ହାତରେ ଥିବା ପର୍ଯ୍ୟନ୍ତ ଯମକୁ ମଧ୍ୟ ସେ ଡରିବନି। ବାଘ ବେକକୁ ସେଇ ଶାଣଦିଆ ଟାଙ୍ଗିଆରେ ମାରିଥିଲା ଏକ ଶକ୍ତ ଚୋଟ। ବାଘ ଦେହରୁ ଟୋପା ଟୋପା ମୁଣ୍ଡା ରକ୍ତ ଭୂଇଁ ଉପରେ ପଡ଼ିଥିବାର ଦେଖିଥିଲା ବୁଖ୍ରା। ଘାଏଲା ବାଘକୁ ଆଉ ପିଛା କରି ନ ଥିଲା ବୁଖ୍ରା। ଆବଶ୍ୟକ ନ ଥିଲା। ଯେଉଁ ଟାଙ୍ଗିଆ ଚୋଟ ଖାଇଛି, ତା'ର ମୃତ୍ୟୁ ଅବଶ୍ୟମ୍ଭାବୀ- ଏହା ଥିଲା ବୁଖ୍ରାର ଦୃଢ଼ୋକ୍ତି।

ଜନମୁଖରୁ ବୁଖ୍ରା ମୁଣ୍ଡାର ସାହସିକତାର କାହାଣୀ ଶୁଣି ବ୍ୟକ୍ତିଗତ ଭାବେ ତା' ପାଖକୁ ଯାଇ ବଧେଇ ଦେବାକୁ ପ୍ରବଳ ଇଚ୍ଛା ହେଲା ମୋର। ତାହା ହିଁ କଲି। ନିକଟ ଅତୀତରେ ଚିତାବାଘ ସହିତ ତା'ର ମୁକାବିଲା ତା ନିଜ ମୁହଁରୁ ଶୁଣି ସ୍ତବ୍ଧ ସ୍ତମ୍ଭୀଭୂତ ହେଲି। ଜଙ୍ଗଲର ଜାନୁଆରମାନଙ୍କ ସହିତ ତା' ଦୀର୍ଘ ଅନୁଭୂତିର କାହାଣୀ ସେ ବିସ୍ତୃତ ଭାବେ ବର୍ଣ୍ଣନା କଲା। ବିସ୍ମୟ ବିସ୍ଫାରିତ ନେତ୍ରରେ ମନଧ୍ୟାନ ଦେଇ ଶୁଣି ରହିଥିଲି ବୁଖ୍ରା ମୁଣ୍ଡାର ଅଲିଖିତ ଜୀବନାନୁଭୂତି। ଏଭଳି ସାହସୀ ବ୍ୟକ୍ତିଙ୍କ ପ୍ରତି ମୋ ହୃଦୟରେ ସମ୍ମାନ ସ୍ୱତଃ ଜନ୍ମିଉଠେ।



ଏଇ ପ୍ରସଙ୍ଗରେ ମୋ କିଶୋର ବେଳର ଅଚ୍ୟୁତ ଦାଦାଙ୍କ ସାହସ ପୁନଃ ପୁନଃ ମନେ ପଡ଼େ; ଚିଦାଛନ୍ନ କରେ-

କୁହୁକର ଇନ୍ଦ୍ରଜାଲରେ ବାନ୍ଧି ହୋଇଗଲା ପରି ଆମେ ସମସ୍ତେ ସନ୍ଧ୍ୟାରେ ଅଚୁ ଦାଦାଙ୍କ ମୁହଁରୁ ବାଘ ଗପ ଶୁଣିବାକୁ ମଜ୍ଜି ଯାଉଁ। ପିଲାଦିନେ ଡାହାଣୀ, ଚିରୁଗୁଣୀ, ଭୂତ ପ୍ରେତ ଗପ ଶୁଣିବାକୁ ଯେତିକି ମଜା ଲାଗେ, ଅଚୁତ ଦାଦାଙ୍କ ମୁହଁରୁ ବାଘଗପ ଶୁଣିବାକୁ ଆମକୁ ତାଠୁଁ ଅଧିକ ଆନନ୍ଦ ଲାଗିବା ସଙ୍ଗେ ସଙ୍ଗେ ମନରେ ଭୟ ଜାତ ହୁଏ। ଶୈଶବାବସ୍ଥା ପାର୍ ହୋଇଗଲେ, କ୍ରମେ ଭୂତପ୍ରେତଙ୍କ ସ୍ଥିତି ଉପରେ ସନ୍ଦେହ ଜାତ ହୋଇଥାଏ ଏବଂ ଗଳ୍ପଗୁଡ଼ିକ ଆଈମା' କାହାଣୀ ଭଳି କାଳ୍ପନିକ ମନେହୁଏ। କିନ୍ତୁ ବାଘ ଗପ ସର୍ବଦା ଶ୍ରୋତାମାନଙ୍କୁ ଓ ପାଠକମାନଙ୍କୁ ଆଲୋଡ଼ିତ କରିଥାଏ। କାରଣ ଏହା ପ୍ରକୃତ ଘଟଣା ଉପରେ ପର୍ଯ୍ୟବସିତ। ସୃଷ୍ଟିର ସବୁ ଜୀବନ୍ତ ପ୍ରାଣୀମାନଙ୍କ ମଧ୍ୟରେ ବାଘ ସବୁଠାରୁ ବଳୀୟାନ ଓ ଗାମ୍ଭୀର୍ଯ୍ୟପୂର୍ଣ୍ଣ ନିବିଡ଼ ଅରଣ୍ୟରେ ଥରେ ଯିଏ ବ୍ୟାଘ୍ରର ଭୁବନକମ୍ପିତ ଭୟଙ୍କର ଗର୍ଜନ ଅତି ନିକଟରେ ନିରାଶ୍ରୟ ଅବସ୍ଥାରେ ଶୁଣିଛି, ତା'ର ହୃତ୍‌ପିଣ୍ଡ ଶିଥିଳ ହୋଇଯାଇ ଶିରାପ୍ରଶିରାରେ ରକ୍ତ ଜମାଟ ବାନ୍ଧିଲା ପରି ଲାଗିବ- ବନଚାରଣ ବେଳେ ମୋର ଅନୁଭୂତି ରହିଛି।

ଅଚ୍ୟୁତ୍ ଦାଦାଙ୍କ ଘର ଆଠଗଡ଼ ଅନ୍ତର୍ଗତ ରଘୁନାଥପୁର ଗାଁରେ। ସୁଦୀର୍ଘ ସପ୍ତଶଯ୍ୟା ପର୍ବତମାଳା ଗ୍ରାମର ପଶ୍ଚାତ୍‌ଭାଗରେ। ଏହି ପର୍ବତମାଳା ଢେଙ୍କାନାଳର କପିଳାସ ପର୍ଯ୍ୟନ୍ତ ବିସ୍ତୃତ। ମୋର ବଡ଼ ଭଉଣୀ ରମା ଦେବୀ ଅଚୁ ଦାଦାଙ୍କ ପୁତୁରାଙ୍କୁ ବିବାହ କରିଥିଲେ। ଖରାଦିନ କି ବଡ଼ଦିନ ଛୁଟି ହେଲେ ପାଠପଢ଼ାରୁ ସାମୟିକ ମୁକ୍ତି ମିଳେ। ମୋ ବାପା ବୋଉଙ୍କ ବିରୋଧ ସତ୍ତ୍ୱେ ମୁଁ ବାଙ୍କୀରୁ ଚୁଟ୍‌କିନା ମୋ ଭଉଣୀ ଘରକୁ ଚାଲିଯାଏ ମୁଖ୍ୟତଃ ଅଚୁ ଦାଦାଙ୍କ ଠାରୁ ବାଘ ଗପ ଓ ଅରଣ୍ୟ କାହାଣୀ ଶୁଣିବା ଆଶାରେ। ଭଉଣୀର ଶାଶୁଘର ଗାଁ, ମୋତେ ସମସ୍ତେ ଆଦର କରନ୍ତି ସେଠି। ମୋର

ପିଲାଦିନର ଗୁଲୁଗୁଲିଆ କଥା ଅନ୍ୟମାନଙ୍କୁ ସୁଖଲାଗେ। ମୋର ସାମାନ୍ୟ ଦୁଷ୍ଟାମି କି ବାଲ୍ୟ ହେଞ୍ଜଡ଼ାମିକୁ କେହି ଧରି ବସନ୍ତି ନାହିଁ। କହନ୍ତି, ଅଷ୍ଟମୀ ବନ୍ଧୁ, ଟିକି କୁଣିଆ ! ତାଙ୍କ ଭାଇଆଳିଙ୍କ ଘରେ ମୋର ଅବାଧ ପ୍ରବେଶ, ମୋତେ ସବୁ ମାଫ୍। ଅଚ୍ଚୁ ଦାଦା ମୋ ଭିଣୋଇଙ୍କ ଭାଇଆଳି। ଗାଁର ସମସ୍ତଙ୍କ ଦାଦା ହିସାବରେ ସେ ଅଭିହିତ। ସଞ୍ଜ ହେଲେ ମୋର ସମବୟସ୍କ ସେଇ ଗାଁର ପିଲାମାନେ ଦାଦାଙ୍କ ଟୁଙ୍ଗି ଘରେ ଭିଡ଼ ଲଗାଉ ଶିକାର ଗପ ଶୁଣିବା ଉଦ୍ଦେଶ୍ୟରେ।

ସେତେବେଳକୁ ଅଚ୍ୟୁତ ଦାଦାଙ୍କୁ ପଚାଶ ଟପିଲାଣି। ତଥାପି ଦେହରେ ଅମାପ ବଳ। ସହସ ଅସୀମ। ଦୁଇଟା ବାହୁରେ ଏକାବେଳକେ ଦୁଇଟା ଅମହଣିଆ ଦାମୁଡ଼ିକୁ ଅଟକାଇବା ଲୋକ। ସୋରିଷକୁ ହାତ ପାପୁଲିରେ ଦଳି ତେଲ ନିଗାଡ଼ି ପାରିବାର ଦକ୍ଷତା ତାଙ୍କର ଥାଏ। ଲମ୍ବା ହାଡୁଆ ଦେହ। ଉଚ୍ଚତା ସାତ ଫୁଟରୁ କମ୍ ହେବନି। କାମ କଲାବେଳେ ଖୋଲା ଦେହର ବଳିଷ୍ଠ ମାଂସପେଶୀ ସବୁ ଉତ୍ତେଜିତ ଦିଶନ୍ତି, ଅଙ୍ଗ ପ୍ରତ୍ୟଙ୍ଗ ସଙ୍ଗେ ତାଳ ଦେଇ ପ୍ୟାରେଡ୍ କରନ୍ତି। ଥରକେ କୁଆଡ଼େ ପାଞ୍ଚସେର ଚାଉଳର ଭାତ ପାର କରି ପାରନ୍ତି। ଭୋଜିଭାତ, ବାହାନିମତରେ ଜିଦାଜିଦି ପଡ଼ିଲେ, ସବୁ ଲୋକଙ୍କ ଆହାର ସେ ଏକା ଚଳୁ କରିପାରନ୍ତି। ସେଥିପାଇଁ ଖାଇଲା ବେଳେ ତାଙ୍କ ସହିତ କେହି ବାଜି ପକାନ୍ତି ନାହିଁ। ଆମକୁ ଲାଗେ, ବନା ପହିଲିମାନ ମଧ୍ୟ ତାଙ୍କ ସମାନ ହେବନି। ଆମ ଆଖିରେ ସେ ଯେମିତି ଭୀମଙ୍କ ଦ୍ୱିତୀୟ ଅବତାର ! ଯାଙ୍କଠୁ ବଳବାନ ଲୋକ ଆଜି ପର୍ଯ୍ୟନ୍ତ କେହି ମୋ ନଜରକୁ ଆସି ନାହାନ୍ତି। ତାଙ୍କରି ମୁହଁରୁ ଶିକାର କାହାଣୀ ଶୁଣିବାକୁ ଆମେ ସର୍ବଦା ଉତ୍କର୍ଣ୍ଣ ଥାଉ, ଯେମିତି ତାଙ୍କ କାହାଣୀରେ ଯାଦୁ ଅଛି !

ଦାଦାଙ୍କ ଭେଣ୍ଡାବେଳ କଥା। ଆଜିକାଲିକା ପରି ଜନବସତିବହୁଳ ନ ଥିଲା। ବରଞ୍ଚ ଜଙ୍ଗଲ ଥିଲା ଘଞ୍ଚ, ଦୁର୍ଭେଦ୍ୟ। ଯୁଆଡ଼େ ଚାହିଁବ, ଖାଲି ଅରଣ୍ୟ, ବଣ, ନଟା, ପ୍ରକୃତିର ଗାଁରୁ ଶ୍ୟାମଳ ବେଶ, ସବୁଜ ପରିବେଶ, ଲୋକଙ୍କ ତୁଳନାରେ ବନ୍ୟଜନ୍ତୁଙ୍କ ସଂଖ୍ୟା ବେଶୀ। ବଣର ହରିଣ ପଲ ଗାଈଗୋଠ ପରି ଦିଶନ୍ତି। ଗାଁଗୁଡ଼ିକ ଲାଗି ଲୁଗି ନ ଥାଏ। ଗୋଟିଏ ଗାଁରୁ ଅନ୍ୟ ଗାଁକୁ ଯିବା ଭୟ-ଶଙ୍କୁଳ। ରାସ୍ତା ସଂକୀର୍ଣ୍ଣ ଓ ବିପଦପୂର୍ଣ୍ଣ। ପାଦ ଓ ଶଗଡ଼ ଛଡ଼ା ଅନ୍ୟ ଯାନବାହନ ପ୍ରାୟତଃ ନ ଥାଏ। ସେଥିପାଇଁ ଗାଁଗୁଡ଼ିକ ମୋଟାମୋଟି ଥିଲେ ଆତ୍ମନିର୍ଭରଶୀଳ। ପ୍ରାୟ ସବୁ ଜାତିର ଲୋକେ ବାସ କରନ୍ତି- ବ୍ରାହ୍ମଣଠାରୁ ଆରମ୍ଭ କରି ବାଉରୀ ପର୍ଯ୍ୟନ୍ତ।

ସେ ସନ ହଇଜା ବ୍ୟାପି ଥାଏ। ରୋଗର ପ୍ରକୋପ କ୍ରମେ ସାଂଘାତିକ ଅବସ୍ଥା ଧାରଣା କଲା। ଏ ରୋଗ ଥରେ ଗାଁକୁ ପଶିଲେ, ସୁଅରେ ଭାସିଗଲା ପରି ଲୋକମାନେ ଟଳିପଡ଼ନ୍ତି। ଯେଉଁ ଘର ଉପରେ ରୋଗର କୋପ ପଡ଼ିଲା, ଘରଟି ସମ୍ପୂର୍ଣ୍ଣ ଭାବେ

ଜନଶୂନ୍ୟ ହୋଇଯାଏ। ମଡ଼ା ଉଠାଇବାକୁ କେହି ରହନ୍ତି ନାହିଁ। ସେ ସାଲ ଗୁଡ଼ିଆ ସାହିର ଅବସ୍ଥା କ୍ରମେ ଶୋଚନୀୟ ହୋଇପଡ଼ିଲା। ବେଳବୁଡ଼କୁ ସପନି ଗୁଡ଼ିଆର ବଅଁଶଯାକ ଗୋଟାଏ ଝାଡ଼ାବନ୍ତିରେ ଶେଷ ହୋଇଗଲେ। କେବଳ ରହିଥାଏ ସପନି। କଂସେଇ ହାତରେ ହଣା ଖାଇଲା ପୂର୍ବରୁ ଛେଳି ନିଶ୍ଚଳ ଭାବେ ଠିଆ ହୋଇ ରହିଲା ପରି ସପନି ଯମ ଡାକରାକୁ ଅପେକ୍ଷା କରିଥାଏ। ଅନ୍ଧକାର ଘନେଇ ଆସୁଛି। ଘରେ ମାଇପର ମୁର୍ଦ୍ଦାର କାଲିକି ବାସି ହୋଇଯିବ। ରାତାରାତି ଶ୍ମଶାନ ଭୂଇଁକୁ ଯିବା କଥା। ମଲା ମଣିଷ କାନ୍ଧେଇବାକୁ ବାହାରୁଛି କିଏ? ଏ ସବୁ କାମକୁ ଅଚ୍ୟୁ ଦାଦା ହୁମ୍ ଦୁମ୍ ହୋଇ ବାହାରି ପଡ଼ନ୍ତି। ସୂର୍ଯ୍ୟାସ୍ତ ପରେ, ଗାଁ ଏମୁଣ୍ଡ ସେମୁଣ୍ଡ ଭୟାର୍ତ୍ତ ଲୋକଙ୍କ ମନରେ ଦମ୍ଭ ଆଣିବା ପାଇଁ ଉଚ୍ଚ ଗଳାରେ କହନ୍ତି, "ଜନମ ହୋଇଛେ, ଦିନେ ନା ଦିନେ ମରିବା। ଆକୁ ଏତେ ଡର କାହିଁକି? କିଏ ତମ୍ବାମୁଣ୍ଡ ବାନ୍ଧିଛି ହୋ! ଯାହାର ନିଦାନ ପୂରିବ, ତାକୁ କେହିଦଣ୍ଡେ ରଖିପାରିବ ନାହିଁ। ଆଉ ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ?" ଗାଁ ଦାଣ୍ଡ ମଝିରେ, ନିମ୍ବ କାଠରେ ଅଗ୍ନି ସଂଯୋଗ କରି ଧୂଆଁ ପ୍ରସ୍ତୁତ କରନ୍ତି, ଭୟଦୂର ପାଇଁ ଚହଳ ପକାନ୍ତି ଓ ଗାଁରୁ ମଡ଼ା ଉଠାଇବାରେ ତତ୍ପରତା ପ୍ରକାଶ କରନ୍ତି।

ଏତିକିବେଳେ ଦୁର୍ଯୋଗକୁ ମହାବଳ ବାଘ ମାଡିଥାଏ। ବିପତ୍ତି ଉପରେ ବିପତ୍ତି ମାଡ଼ି ବସିଥାଏ ଦୁର୍ଗତ ଜନତାକୁ। ଦଇବର ଦାଉ। ପୁଣି ବୋଝ ଉପରେ ନଳିତା ବିଡା ପରି ନିରୀହ ଲୋକଙ୍କ ଉପରେ ନରହନ୍ତା ପଶୁର ନୃଶଂସ ଅତ୍ୟାଚାର ଆରମ୍ଭ ହୋଇଯାଇଥାଏ। ଏଣୁ ମୁଲକରେ ବ୍ୟାପିଥାଏ କୋକୁଆ ଭୟ। ସଞ୍ଜ ହେଲେ ଗାଁ ନିଶୂନ, ତାଟିକବାଟ ବନ୍ଦ। ଗାଁରୁ ମୁର୍ଦ୍ଦାର ଉଠିବ କିପରି? ଅଚ୍ୟୁତ ଦାଦା ଅଣ୍ଟା ଭିଡ଼ି ବାହାରିଲେ। କାନରେ ଚିଲମ। ଗାମୁଛା କାନିରେ ଗଞ୍ଜେଇ ଆଉ ହାତରେ ଧାରୁଆ ଟାଙ୍ଗିଆଟା ଥିଲେ ସେ କାହାରିକୁ ଡରିବାବାଲା ନୁହନ୍ତି। ତାଙ୍କ କୁହାଟରେ ଗର୍ଭିଣୀ ଗାଈ ବାଟ ଛାଡ଼ିଦେବ। ହାତରେ ଲଣ୍ଠନ ଧରି, ପାଞ୍ଚ ସାତ ଲୋକଙ୍କୁ ମେଳି କରି ଗୁଡ଼ିଆ ସାହିରୁ ସପନି ଭାରିଯାର ଶବ ଉଠା କରାଇଲେ ଓ ଶ୍ମଶାନ ଆଡ଼କୁ ମୁହାଁଇଲେ। ବାଘୁଆ ଶୀତର ଘୋର ଅନ୍ଧାର ରାତି। ଦେହ ହାତ ହେମାଳ ପାଲଟି ଯାଇଥାଏ। ମଶାଣି ନିକଟତର ହେବାରୁ ଶବମାନଙ୍କ ଉତ୍କଟ ଦୁର୍ଗନ୍ଧ ନାକ ଫଟାଇ ଦେଉଥାଏ।

ଇସ୍, ଏ କି ନାରକୀୟ ଦୃଶ୍ୟ ଆଖିର ଡୋଳା ଓଲଟି ଗଲାପରି ଲାଗୁଛି। ଲଣ୍ଠନ ଆଲୁଅରେ ସ୍ପଷ୍ଟ ଦେଖାଯାଉ ନ ଥିଲେ ମଧ୍ୟ ନର୍କ କୁଣ୍ଡ ପାଖରେ ବସି ଯମରାଜ ପାପୀକୁ ଦଣ୍ଡ ଦେଲା ପରି ମହାବଳ ବାଘୁଣୀ ବୀର ଦର୍ପରେ ମଡ଼ ପାଖରେ ବସିଛି। ତା'ର ତିନିଟା ଛୁଆ ମଶାଣିର ମଡ଼ଗୁଡ଼ାକୁ ବିଦୀର୍ଣ୍ଣ କରି ଖାଉଛନ୍ତି, କଙ୍କାଳରୁ ପୁଳା ପୁଳା ମାଂସ ଟାଣୁଛନ୍ତି। ହାଡକୁ କଡମଡ କରି ଚୋବାଇବାରେ ଲାଗିଛନ୍ତି। ବାଘକୁ

ଦେଖି ଶବବାହକମାନେ ତତ୍‌କ୍ଷଣାତ୍ ଶବକୁ ଫିଙ୍ଗ ଦେଇ ଯେ ଯୁଆଡ଼େ ପ୍ରାଣ ବିକଳରେ ଇତସ୍ତତଃ ଧାଇଁଲେ ଶତ୍ରୁର ପ୍ରବଳ ଆକ୍ରମଣରେ ରଣଭୂମିରେ ଦୁର୍ବଳ ସୈନିକ ଛତ୍ରଭଙ୍ଗ ଦେଲା ପରି। କିନ୍ତୁ ଅଚୁ ଦାଦାଙ୍କୁ ଗଞ୍ଜେଇ ନିଶା ଖୁବ୍ ଧରିଥାଏ। ବିପଦବେଳେ ସାମାନ୍ୟ ପଶୁଠାରୁ ପଛଘୁଞ୍ଚା ଦେବା ତାଙ୍କ ଜାତକରେ ନାହିଁ। ଶ୍ମଶାନ ପଡ଼ିଆରେ ସେ ରହିଲେ ଏକା ଆଉ ସପନି ମାଇପର ଲାସ୍। ବାଘ ଭୟରେ ସପନି ମଧ୍ୟ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଇ ଗଛ ଉହାଡରେ କି ଉଇହୁଙ୍କା ପଛପଟେ ଆତ୍ମଗୋପନ କରିଛି, କିମ୍ବା ଏକା ନିଃଶ୍ୱାସରେ ପଡ଼ିଉଠି ଖଣ୍ଡିଆ ଦଣ୍ଡିଆ ହୋଇ ଘରକୁ ଦୌଡ଼ିଛି- ଜଣା ନ ଥିଲା ! ଆଃ, ଜୀବନ ପ୍ରତି ମଣିଷର କେତେ ଆକର୍ଷଣ ! ବଞ୍ଚି ରହିବାର କି ଆକୁଳତା !!

ଆଉ ରହି ନ ପାରି କୌତୂହଳୀ ହୋଇ ଦାଦାଙ୍କୁ ପ୍ରଶ୍ନ କରିଥିଲି- "ବାଘ ଏମିତି ମଲା ମଣିଷ ଖାଏ ?" ଦାଦାଙ୍କ କଥାର ସାରାଂଶ ହେଲା- ହଁ, ବାଘ ଏହି ମଲା ମଣିଷ ଖାଇ ମଣିଷର କାଳ ହୁଏ। ମହାମାରୀ, ହଇଜା, ବସନ୍ତ ଆଦି ସଂକ୍ରାମକ ରୋଗରେ ମୃତ୍ୟୁବରଣ କରିଥିବା ଲୋକଙ୍କୁ ନ ପୋଡ଼ି ନ ପୋତି ଜଙ୍ଗଲ ପାଖେ ଫିଙ୍ଗି ଦେଇ ଆସିଲେ ମାଂସାଶୀ ପଶୁମାନେ ଆକୃଷ୍ଟ ହୁଅନ୍ତି। ଏପରିକି ତୃଣଭୋଜୀ ଭାଲୁ, ବାରହା ମଧ ମୁର୍ଦ୍ଦାର ଖାଇଥାନ୍ତି। କିନ୍ତୁ ବାଘ ଥରେ ବିନା ପରିଶ୍ରମରେ ଏ ସହଜଲବ୍ଧ ଖାଦ୍ୟ ପାଇଲେ ତା'ର ସ୍ୱାଦ ଆଉ ଛାଡ଼ି ପାରେ ନାହିଁ। ଫଳରେ ମଣିଷ ମାଂସ ପାଇଁ ଅଧିକ ଲାଳାୟିତ ହୁଏ। ମଢ଼ ନ ପାଇଲେ ଜୀବନ୍ତ ମନୁଷ୍ୟକୁ ଆକ୍ରମଣ କରେ। ସେ ହୁଏ 'ମଣିଷଖିଆ ବାଘ'। ଆମର ଦୁର୍ଭାଗ୍ୟ ପାଇଁ ଆମେ ଦାୟୀ।

ପୁଣି ଦାଦାଙ୍କୁ ପଚାରିଲି- "ଖାଲି କ'ଣ ମଢ଼ ଖାଇ ବାଘ ମଣିଷଖିଆ ହୋଇଯାଏ ?"

ସେ କହିଥିଲେ- "ନାଁ, ବାଘ ଅତି ବୁଢ଼ା ହୋଇଗଲେ, ଶିକାର ଅନ୍ୱେଷଣ କରି ଜୀବନ ବଞ୍ଚାଇବାକୁ ଅକ୍ଷମ ହୋଇପଡ଼େ। ନିଘଞ୍ଚ ବନସ୍ତ ମଧରେ ସହଜରେ ମଣିଷଟାଏ ପାଇଲେ, ତାକୁ ଉଦରସ୍ଥ କରେ। ମଣିଷ ରକ୍ତର ନିଶା ତା' ମୁହଁରେ ଲାଗିଯାଏ।"

ଅଚୁ ଦାଦା ଯାହା ନିଜ ଅଭିଜ୍ଞତାରୁ ତଥ୍ୟ ଆହରଣ କରିଥିଲେ, ତାହା ଯେ ଅକ୍ଷରେ ଅକ୍ଷରେ ସତ୍ୟ- ମୁଁ ମୋର ପରବର୍ତ୍ତୀ ଜୀବନରୁ ଜାଣି ପାରିଥିଲି। ବାଘ କାହିଁକି ମଣିଷ ଖାଏ, ସେ ପ୍ରଶ୍ନ ପ୍ରସିଦ୍ଧ ଶିକାରୀ ଓ ଜଙ୍ଗଲ ବିଜ୍ଞାନ୍‌ବିତ୍ ଜିମ୍ କରବେଟ୍, ଷ୍ଟିଭେନ୍‌ସନ୍, ଅଗଷ୍ଟସ୍ ସମରଭାଇଲ ଆଦି ବିଶଦ୍ ଭାବେ ବର୍ଣ୍ଣନା କରି ଯାଇଛନ୍ତି। ସେମାନେ ଯେଉଁ ତଥ୍ୟ ପରିବେଷଣ କରିଛନ୍ତି, ତାହା ମୋଟା ମୋଟି ଆମ ଅଚୁ ଦାଦାଙ୍କ ଅନୁଭୂତିର କାହାଣୀ। ଏତଦ୍ ବ୍ୟତୀତ ବାଘ ମଣିଷଖିଆ ହେବାର ଅନ୍ୟ କାରଣ ମଧ ଅଛି। ବନ୍ଧୁକର ଗୁଳି ଚୋଟ ଅଥବା ଶିକାରୀର ଲୌହତୀରର

ବିଷାକ୍ତ ଜ୍ୱାଳାରେ ବାଘ ଅକର୍ମଣ୍ୟ ହୁଏ। ଫଳତଃ ସେ ତା'ର ପ୍ରାକୃତିକ ଖାଦ୍ୟ ସଂଗ୍ରହ କିରବାକୁ ସମ୍ପୂର୍ଣ୍ଣ ଅକ୍ଷମ ହୁଏ। ଆଉ ଏହି ଅବସ୍ଥାରେ ଦୁର୍ଗମ ଗିରି ପଥରେ ଅସହାୟ ମଣିଷଟିଏ ପାଇଲେ ତା'ର ଅନେକ ଦିନର କ୍ଷୁଧା ମେଣ୍ଟିଯାଏ।

ଝିଙ୍କ ମଧ ବାଘର ଏକ ପ୍ରଧାନ ଓ ସ୍ୱାଦୁକର ଖାଦ୍ୟ। ଝିଙ୍କଟିଏ ଶିକାର କଲାବେଳେ ତା' ଦେହର ମୁନିଆ ଶରରେ ବାଘ ଆକ୍ରାନ୍ତ ହୁଏ ଓ ତା' ମୁହଁରେ ଶରାଘାତ ଜନିତ କ୍ଷତ ସ୍ଥାନ ସଂଘଠିକ ହୋଇଉଠେ। କ୍ରମେ ଘା' ପାଚି ବାଘକୁ ରୁଗ୍‌ଣ କରିଦିଏ। ଏହି ପୀଡ଼ିତାବସ୍ଥାରେ ପେଟର ଜ୍ୱାଳା ସମ୍ଭାଳିବା ପାଇଁ ସମ୍ମୁଖରେ ମଣିଷ ପାଇଲେ ଝାମ୍ପ ମାରେ ଓ ଅକ୍ଳେଷରେ କ୍ଷୁଧା ନିବାରଣ କରେ। ବାଘର ସ୍ୱାଭାବିକ ଖାଦ୍ୟ ମଣିଷ ନୁହେଁ; ପରିସ୍ଥିତିର ଚାପରେ ସେ ନର ମାଂସ ଭକ୍ଷଣ କରେ ଓ କ୍ରମେ ଏହି ସହଜ ଶିକାର ପ୍ରତି ପ୍ରଲୋଭିତ ହୁଏ। ରକ୍ତମୁହାଁ ହୋଇ ମଣିଷ ମାଂସ ପାଇଁ ପାଗଳ ପରି ଖୋଜିବୁଲେ। ତାକୁ ଆମେ କହୁ- ନରଖାଦକ, ମଣିଷଖିଆ ବାଘ। ସୁନ୍ଦର ବନରେ ବାଘ ମଣିଷମାନଙ୍କ ମାଂସ ପ୍ରତି ଆକୃଷ୍ଟ ହୋଇ କେବଳ ମଣଇଷମାନଙ୍କୁ ଖାଇ ବସିଲା; ଏବଂ ପରିଶେଷରେ ଗୋଟିଏ ଗାଁର ସବୁ ପୁରୁଷମାନଙ୍କୁ ଖାଇଗଲା, ଫଳରେ ଗାଁଟା ପୁରୁଷ ଶୂନ୍ୟ ହୋଇଗଲା। ଲୋକ ମୁଖରେ ସେଇ ଗାଁ ଅଦ୍ୟାବଧି 'ବିଧବାପୁର' ଭାବେ ପରିଚିତ ହୋଇ ଆସୁଛି।

ହଁ, ଶବ ବାହକମାନେ ବାଘ ଆତଙ୍କରେ ଯେତେବେଳେ କିଲିକାଛିଆ ହୋଇ ଯେ ଯୁଆଡ଼େ ପଳାଇଗଲେ, ଅଚୁ ଦାଦା ନିର୍ଭୀକ ଭାବେ ଠିଆ ହୋଇ ରହିଲେ। ବାଘକୁ ଦେଖି ଅତର୍କ ହୋଇ ପଳାଇବା ମହା ବିପଦର କଥା। ଏ କଥା ସେ ତାଙ୍କ ବାପା ଅଜାଙ୍କଠାରୁ ପିଲାଟି ଦିନରୁ ଶିକ୍ଷା କରିଥିଲେ। ଅତି ଅପ୍ରତ୍ୟାଶିତ ଭାବେ ସେ ଅନେକ ବାର ବାଘ ହାବୁଡ଼ରେ ପଡ଼ିଛନ୍ତି, କିନ୍ତୁ ତାଙ୍କ ଦମ୍ଭ ଓ ସାହସ ସର୍ବଦା ସହାୟ ହୋଇଥିବାରୁ ଆସନ୍ନ ବିପଦରୁ ରକ୍ଷା ପାଇଛନ୍ତି। ଆଜି ବାଘୁଣୀ ତା'ର ଶାବକମାନଙ୍କୁ ଆଣି ଏହି ମଶାଣି ଭୂଇଁରେ ଶବମାନଙ୍କୁ ଆହାର କରୁଛି। ଏ ପ୍ରକାର ଅଭୂତପୂର୍ବ ପରିସ୍ଥିତି ସେ ଆଗରୁ କେବେ ମୁକାବିଲା କରି ନ ଥିଲେ। କ'ଣ କରିବେ ? ଯାହା ମୁଣ୍ଡକୁ ଚୁକିଲା ସେଇଆ କଲେ। ବାଘକୁ ତାଙ୍କର ଆଦୌ ଭୟ ନ ଥିଲା। ବାଁ ହାତରେ ଲଣ୍ଠନ ଉପରକୁ ଟେକି ବଡ଼ ପାଟିରେ ଚିତ୍କାର କରି କହିଲେ- "ଆରେ ବଳିଆ, ତୋତେ ଦଇବ ଛାଡ଼ିଲାଣି ? ଏ ସଙ୍କଟ ବେଳେ ତୋର ଆମ ଉପରେ ଦାଉ ସାଧିବାକୁ ଥିଲା !"

ଲଣ୍ଠନକୁ ପଥର ଉପରେ ଥୋଇ, ପତର, କାଠି, କାଠରେ ନିଆଁ ଜାଳିଲେ। ଧୁନି ଜଳିଲା ହୁତ୍ ହୁତ୍। ପାଇକଛା ମାରି ଠେଙ୍ଗାକୁ ବନାଟି କରି ଘୁରାଇ ନାଚିଲେ ତାଣ୍ଡବ ନୃତ୍ୟ ଏବଂ ଭୂଇଁରେ ବାରମ୍ବାର ପିଟି ରହିଲେ ତାଙ୍କ ଠେଙ୍ଗେଣିଟିକୁ। ଅନ୍ୟର

ଶକ୍ତି ଓ ସାହସକୁ କଳିବାରେ ବାଘ ପାରଙ୍ଗମ। ବାହାରକୁ ବଳବାନ ଦିଶୁଥିବା ବ୍ୟକ୍ତି ଅନ୍ତରରେ ଦୁର୍ବଳ। ସତକୁ ସତ ବାଘୁଣୀ ତା' ଛୁଆକୁ ନେଇ ନିକଟର ପର୍ବତମାଳା ଭିତରକୁ ଧୀରେ ପ୍ରବେଶ କଲା। ଦାଦା ଦୀର୍ଘଶ୍ୱାସ ମାରି ଚିଲମ ଧରିଲେ, ଦୁଇ ପୁଳା ଖୁବ୍ ଜୋର୍‌ରେ ଟାଣି ଧୂଆଁ ଛାଡ଼ିଲେ। ସପନି ସପନି ଡାକ ଛାଡ଼ି ନିକଟସ୍ଥ ଆମ୍ବ ଗଛ ମୂଳେ ଯାଇ ବସିଲେ। ସପନିର ଦେଖା ଦର୍ଶନ ନାହିଁ। ତା' ମାଇପର ମର ଶରୀରଟା କୋକେଇରେ ସେଇମିତି ମଶାଣି ପାଖେ ପଡ଼ିଥାଏ। ସାରା ରାତିଟା ଶୀତ କାକରରେ ବୃକ୍ଷମୂଳେ କାଟିଲେ।

ତେଣେ ଗାଁରେ ହାହୁଳର ପଡ଼ିଗଲାଣି- ଅଚୁକୁ ବାଘ ଖାଇଗଲା। ସମସ୍ତେ କହିଲେ, ଅଚୁଟା ଗୁଣ୍ଡା, ହୁଣ୍ଡା, ମୋଟା ବୁଦ୍ଧିଆ, ଟେଳାଏ ଅଫିମ ପଡ଼ିଲେ କି ପୁଳାଏ ଗଞ୍ଜେଇ ଟାଣିଦେଲେ, ତାକୁ ତିନିପୁର ଦିଶିଯାଏ। ବାଘକୁ କୁକୁର ବିଲେଇ ମଣେ। ହଇରେ, ବଳ ବୟସ ଅଛି ବୋଲି ଏମିତି ଜାଣି ଶୁଣି ମରଣକୁ ବରଣ କରିବ ସିନା! ରାତାରାତି ଗାଁ ସାରା ଅନେକ ଗୁଜବ ପ୍ରଚାର ହୋଇଗଲା। ମଶାଣି ଚଣ୍ଡୀ ରକ୍ତମୁଖା ସାଜିଛନ୍ତି। ତାଙ୍କ ଶ୍ୟେନ ଦୃଷ୍ଟି ଏ ଗାଁ ଉପରେ ପଡ଼ିଛି। ଦେଶକୁ ପଠାଣ, କିରସ୍ତାନ ଶାସନ କଲେ; ଅନ୍ୟାୟ, ଅତ୍ୟାଚାର, ଦୁର୍ନୀତି ସୀମା ଲଂଘନ କଲା। ଠାକୁରାଣୀ କୋପୀ ହେଲେଣି- ମାଳିକା କହିଛି। କଳିଯୁଗ ଶେଷ ହେବାକୁ ଯାଉଛି। ପ୍ରଳୟ ମାଡ଼ି ଆସୁଛି ଖାଁ ଖାଁ। ସବୁ ଲୋକ ଏହିପରି ଟଳିପଡ଼ିବେ। ଆଉ ରକ୍ଷା ନାହିଁ, ...ହେ ମା' ଚଣ୍ଡୀ, ତୁ ସାହା ଭରସା, ରକ୍ଷା କର। ଏପରି ଅନେକ କଥା, ଅନେକ ବିଶ୍ୱାସ, ଅନେକ ଦୁର୍ଭାବନା, ଗାଉଁଲି ଦୁର୍ବଳ ମନରେ ବଳବତ୍ତର ଥିଲା।

ସକାଳ ହେଲାରୁ ଗାଁ ଲୋକେ ତକାତକି ହୋଇ ମଶାଣିରେ ଉପସ୍ଥିତ ହେଲେ। ମୁର୍ଦ୍ଦାର ସବୁ ବିକୃତ ହୋଇ ଦୁର୍ଗନ୍ଧ ଛାଡୁଥାନ୍ତି। ଶାଗୁଣାମାନେ ଶବଗୁଡ଼ିକୁ ବେଢ଼ି ରହି ସତ୍କାର କରୁଥାନ୍ତି। ଗୋଟିକିଆ ଆମ୍ବଗଛ ମୂଳେ ଲଣ୍ଠନଟି ଜଳୁଛି। କାଚର ଉପର ଭାଗ ଧୂଆଁରେ କଳା ପଡ଼ି ଆସିଛି। ଅଚୁ ଦାଦା ମୁର୍ଦ୍ଦାର ପରି ଛିଣ୍ଡା କମ୍ବଳ ଭିତରେ ପଡ଼ି ରହିଛନ୍ତି ଗୋଟିକିଆ ଗଛମୂଳେ। ତାଙ୍କୁ ସମସ୍ତେ ଭାବିଲେ ସେ ମୃତ। କିନ୍ତୁ ପାଖକୁ ଯାଇ ଦେଖିଲେ ସେ ଘୁଙ୍ଗୁଡ଼ି ମାରୁଛନ୍ତି। ଭୂତ ନା କ'ଣ?

ଲୋକଙ୍କ କୋଳାହଳ ଶୁଣି ଦାଦା ଉଠିଲେ, ଭୀଷଣ ବିରକ୍ତ ହେଲେ ଏବଂ ମୁହଁରୁ ତାଙ୍କର ଛୁଟିଲା ଦୋ ଅକ୍ଷରୀ, ଅଶ୍ଳୀଳ ଭର୍ତ୍ସନା। ଲୋକେ, ଶବ ବାହାକମାନେ ନିଜ ଭୀରୁତା ପାଇଁ ଲଜ୍ଜା ବୋଧକଲେ। ମୁହଁ ସମସ୍ତଙ୍କର ତଳକୁ। ଦାଦାଙ୍କର ଅପୂର୍ବ ନିର୍ଭୀକତା ପାଇଁ ସମସ୍ତେ ତାଙ୍କୁ ସାବାସ୍ କହିଲେ।

ଅଚୁ ଦାଦାଙ୍କ ବିଷୟରେ ଲେଖି ବସିଲେ ପୁରାଣଟିଏ ହେବ। ତାଙ୍କର ବିଶେଷ ଭୂ-ସମ୍ପତ୍ତି ନ ଥିଲା। ଅବଶ୍ୟ କ୍ଷେତରୁ ଯାହା ଅମଳ ହୁଏ ବର୍ଷକ ଯାକ ଯଥା ତଥା

ଚଲିଯାଏ । ସନ୍ନିକଟ ଜଙ୍ଗଲ ଉପରେ ନିର୍ଭର କରି ତାଙ୍କ ନିଶାପାଣି ଖୋରାକ ଉଠାନ୍ତି । ଦିବାଲୋକରେ ଜଙ୍ଗଲ କାଟିବା ବିଶେଷ ସୁିଧାଜନକ ହୁଏନି । ତାଙ୍କ ପରି ଦୁର୍ଦ୍ଧାନ୍ତ ଲୋକଙ୍କୁ ବନରକ୍ଷୀମାନେ ଭୟ କଲେ ମଧ୍ୟ ସେ ଅଯଥାରେ ସେମାନଙ୍କ ସହିତ ସାମ୍ନା ସାମ୍ନି ମୁକାବିଲା କରିବାକୁ ଚାହାନ୍ତି ନାହିଁ । ଯେତେହେଲେ ଚୋରିବିଦ୍ୟା । ସେମାନଙ୍କୁ ଆଡ଼େଇ ରହିଲେ ଭଲ । ତେଣୁ ଅନ୍ଧାର ରାତିରେ ସପ୍ତଶଯ୍ୟା ପର୍ବତରୁ କାଠ କାଟିବା ଓ ଶଗଡ଼ରେ ଗାଁକୁ ଚାଲାଣ କରିବା ସୁବିଧା ଓ ବାଧାଶୂନ୍ୟ ମଧ୍ୟ ।

ଖରାଦିନ । ଜହ୍ନରାତି । ରାତି ଅଧରେ ଦାଦାଙ୍କ ନିଦ ଭାଙ୍ଗିଲା । ସାହିର ଭାଇମାନଙ୍କୁ ଉଠାଇଲେ ଓ ଶଗଡ଼ ବଳଦ ଯୋଚି ସପ୍ତଶଯ୍ୟା ଅଭିମୁଖେ ଚାଲିଲେ । ଦଳର ଦଳପତି ସେ । ତାଙ୍କ ଶଗଡ଼ ସବା ଆଗରେ । କାଠ କଟା ହେବ । କେଉଁ କାଠ କେଉଁ ଆକାରର, କେଉଁଠାରେ ଅଛି ଇତ୍ୟାଦି ବିଷୟରେ ତାଙ୍କ ଅନୁଗାମୀମାନଙ୍କୁ ବିଶଦ୍ ଭାବେ ବୁଝାଇ ଚାଲିଥାନ୍ତି । ସେ ବୟୋଜ୍ୟେଷ୍ଠ, ଅଭିଜ୍ଞ ଓ ସବୁଠୁଁ ସାହସୀ । ତାଙ୍କ ଆଦେଶ, ନିର୍ଦ୍ଦେଶ ଓ ଉପଦେଶ ସମସ୍ତେ ଅକ୍ଷରେ ଅକ୍ଷରେ ପାଳନ କରନ୍ତି ।

ଶଗଡ଼ ସବୁ ଯାଇ ଢୁକିଲା ପର୍ବତମାଳାର ପାଦଦେଶରେ । ବଳଦମାନଙ୍କୁ ଗଛରେ ବାନ୍ଧିଦେଇ ପୂର୍ବ ନିର୍ଦ୍ଦେଶାନୁଯାୟୀ ପ୍ରତ୍ୟେକ ଲୋକ ନିଜ ନିଜ ସ୍ଥାନକୁ ଚାଲିଗଲେ କାଠକାଟିବା ଉଦ୍ଦେଶ୍ୟରେ । ପର୍ବତର ସବୁଠୁଁ ଉଚ୍ଚ ଓ ଦୁର୍ଭେଦ୍ୟ ଅଞ୍ଚଳରେ ସବୁ ଅସଲ ଦାମିକା ଗଛ- କଙ୍ଗଡ଼ା, ଶାଳ, ପିଆଶାଳ, ଅସନ୍, ବାନ୍ଧଣ, ଶିଶୁ । ମନ ମୁତାବକ ଗଛ କାଟିବାରେ କିଛି ଅସୁବିଧା ନାହିଁ । ସେଇ ନିଘଞ୍ଚ ଅଞ୍ଚଳକୁ ଦାଦା ନିଜେ ଏକଲା ଉଠିଲେ । ପର୍ବତର ତୀଖ ସ୍ଥାନ । କୃଷ୍ଣପକ୍ଷ ଅଷ୍ଟମୀ ପାର ହୋଇଯାଇଥିଲେ ମଧ୍ୟ, ମେଘଶୂନ୍ୟ ଆକାଶରେ ଅର୍ଦ୍ଧଚନ୍ଦ୍ରର ଆଲୋକ ଆଭା ବିଞ୍ଛି ହୋଇ ରହିଥିଲା । ଗହଳ ଗଛ ଡାଳ ଅତିକ୍ରମ କରି ଚନ୍ଦ୍ର ଆଲୋକ ଭୂତଳ ସ୍ପର୍ଶ କରିପାରି ନ ଥାଏ ଅବଶ୍ୟ । ଫଳରେ ବୃକ୍ଷ ମୂଳ ଛାଇଛାଇଆ । ଅତି ସନ୍ତର୍ପଣରେ ପାହାଡ଼ ଚଢ଼ି ଅଚୁ ଦାଦା ଲକ୍ଷ୍ୟସ୍ଥଳରେ ପହଞ୍ଚିଲେ । ମୁଣ୍ଡକୁ ଗଞ୍ଜେଇ ନିଶା ଚଢ଼ିଥାଏ । ମଧ୍ୟମ ମୋଟେଇର ଶିଶୁ ବୃକ୍ଷ କାଟିବାକୁ ଉଦ୍ୟତ ହୁଅନ୍ତେ ବୃକ୍ଷ ମୂଳରେ ଶୋଇଛି ମହାବଳ । ଦୁଇ ହାତ ତାଙ୍କର ଶାଣିତ ଟାଙ୍ଗିଆ ସହିତ ଢିଙ୍କିରୁ ପାହାର ଉଠିଲା ପରି ଉତ୍ତୋଳିତ । ବାଘକୁ ଦେଖି ତାଙ୍କ ହାତ ଅଟକି ରହିଲା ଶୂନ୍ୟରେ ମହିଷ ମର୍ଦ୍ଦିନୀ ଦୁର୍ଗାଙ୍କ ବିସ୍ତାରିତ ଖଡ୍ଗ ପରି । ବାଘ ବୃକ୍ଷମୂଳରେ ସେହିପରି ଶୋଇ ରହି ଚାହିଁଥାଏ । ଏତେବେଳେ ବାଘ ମୁହଁରୁ ପଛଘୁଞ୍ଚା ଦେଇ ପଳାୟନ କରିବା ଅର୍ଥ ଆସନ୍ନ ମରଣକୁ ବରଣ କରିବା । ଏକଥା ସେ ଜାଣନ୍ତି ଭଲ ଭାବେ । ବଳୀୟାନ୍ ଶତ୍ରୁ ସହ ଯୁଦ୍ଧ କରିବାକୁ ହେଲେ ସାହସ ଓ ଦମ୍ଭର ପ୍ରଦର୍ଶନ କରାଯାଇ ପ୍ରତିବାଦୀ ଶତ୍ରୁର ମନୋବଳକୁ ଦମନ କରିବାକୁ ହୁଏ- ଦାଦା ଜାଣନ୍ତି ଏକଥା । ଆଗରୁ କହିଛି, ଦାଦାଙ୍କର ବାଘକୁ ତିଳେମାତ୍ର ହେଲେ

ଭୟ ନ ଥିଲା। ସେ ତ ବହୁବାର ବାଘ ସଙ୍ଗେ ଭେଟାଭେଟି ହୋଇଛନ୍ତି। ଏମିତି ଅରଣ୍ୟ ରାସ୍ତାରେ ଭ୍ରମଣ କଲା ସମୟରେ ବାଘ ଶଗଡ଼ ଆଗରେ ବାଟ ଓଗାଳେ। ତାଙ୍କ ପାଟିରୁ ଗୁରୁ ଭାଷାଟିଏ ଶୁଣିଲା ପରେ ଯାଇଁ ବାଘ ବାଟ ଛାଡ଼େ। ଆଉ କେତେଥର ମଧ ବାଘ ଗାଈ ଗୋଠରୁ ଗାଈଟିଏ ଘୋଷାରି ନେବା ସମୟରେ ଦାଦା ଟାଙ୍ଗିଆ ଧରି ବାଘର ପିଛା କରିଛନ୍ତି। ସେଥର ସେମିତି ଗାଁ ମଶାଣିରେ ବାଘୁଣୀ ସହିତ ମୁହାଁମୁହିଁ ହେଇଥିଲେ। ଏଥର କିନ୍ତୁ ଆଉ ଏକ ଅଭୂତପୂର୍ବ ପରିସ୍ଥିତି। ସିଧାସଳଖ ସଂଘର୍ଷ ପାଇଁ ଉଭୟେ ଉଦ୍ୟତ। ଉଭୟେ ଆଜି ରଣଭୂମିରେ ଅବତୀର୍ଣ୍ଣ। ଧାରୁଆ ଅସ୍ତ୍ରଟିକୁ ଉପରକୁ ଟେକି ଉଞ୍ଚାଇଥାନ୍ତି ବୀରଦର୍ପରେ। ବାଘ ପୂର୍ବପରି ପଡ଼ିରହି ଗର୍ ଗର୍ ହେଉଥାଏ। ନିଶକୁ ଫୁଲାଇ ଲାଞ୍ଜକୁ ବାରମ୍ବାର ଭୂଇଁରେ ପିଟୁଥାଏ। ଦାଦାଙ୍କ ମୁହଁରୁ ଛୁଟିଲା ଅସରନ୍ତି ବଜ୍ରବାଣ- ଆଜି ତୁ ରହିବୁ ନ ହେଲେ ମୁଁ ରହିବିରେ ବଳିଆ। ଏ ଧାରୁଆ ଗୁରାଢ଼ିରେ ଏକ ଚୋଟରେ ତୋର ମୁଣ୍ଡ ଗଣ୍ଡି ଦୁଇ ଗଡ଼ ନ କରି ପାରିଲେ ମୋ ନାଁ ଅଚ୍ୟୁତ ନୁହେଁ, ହାଁ- ଇତ୍ୟାଦି। କିଛି ସମୟ ଅନ୍ତେ ବାଘ ପରାଜୟ ସ୍ୱୀକାର କରିବାକୁ ବାଧ ହେଲା ଏବଂ ଧୀରେ ପଛେଇ ପଛେଇ ଗଛ ଗହଳରେ ଅଦୃଶ୍ୟ ହୋଇଗଲା। ଦାଦା ଦୀର୍ଘ ନିଶ୍ୱାସ ନେଇ ଚିଲମ ଧଇଲେ। ଦେହରେ ଝାଳର ଝରଣା ଛୁଟିଥିଲା। ଗାମୁଛା ଅଣ୍ଟାରୁ ଖୋଲି ମେଦବହୁଳ ମୁହଁକୁ ପୋଛିଲେ ଓ ପଥର ଉପରେ ଘଡ଼ିଏ ଦମ୍ ନେଲେ।

ଆଜି ବହୁ ବର୍ଷ ପରେ ଅଚ୍ୟୁଦାଦାଙ୍କ ଭଳି ଆଉ ଏକ ଜଙ୍ଗଲୀ ବ୍ୟକ୍ତି ବୁଖ୍ରା ମୁଣ୍ଡାର ପରିଚୟ ପାଇଲି। ଏଇପରି କେତେ ସାହସୀ ଲୋକଙ୍କୁ ନେଇ ସିନା ଅଭୟାରଣ୍ୟ ଭିତରେ ଗିରିଜନ ସମାଜ ତିଷ୍ଠି ରହିଛି ଯୁଗ ଯୁଗ।



ଶର୍ମାଙ୍କର ପ୍ରକାଣ୍ଡ ବାରିପଟର ଶେଷ ଭାଗକୁ ଏକୁଟିଆ ମାଣ୍ଡୁ ଘରଟିରେ ଆମେ ରହିଥାଉଁ ପ୍ରାୟ ସବୁଥର। ଏକ ପରିତ୍ୟକ୍ତ ଗୃହ। ବନ ଘେରା ଅଞ୍ଚଳରେ ଗୋଟାଏ ପୁରାତନ ଜୀର୍ଣ୍ଣ ଫାର୍ମ ହାଉସ୍‌ର ବିକଳ୍ପ କହିଲେ ଭୁଲ୍ ହେବ ନାହିଁ। ଅତ୍ୟନ୍ତ ନିରୋଳା, ନିର୍ଜନ ଓ ନିକାଞ୍ଚନ ଏହି ପରିତ୍ୟକ୍ତ ଘରଟି। କୋଉ କାଳର ଜଅଙ୍କଲଗା ଟିଣ ଛାତକୁ ବୁଢ଼ା ଡିମିରି ଓ ବୃହତ୍ କରଞ୍ଜ ବୃକ୍ଷର ଡାଳସବୁ ଆବୋରି ଆଚ୍ଛାଦିତ କରିଛନ୍ତି। ସେଇଠୁଁ ପାହାଡ଼ର ସ୍ତର ଉଚ୍ଚରୁ ଉଚ୍ଚକୁ ବ୍ୟାପିଛି ଦୃଷ୍ଟିର ଶେଷବିନ୍ଦୁ ପର୍ଯ୍ୟନ୍ତ। ଟିଣଛାତ ତଳେ କଙ୍କଡ଼ା କାଠର ଭାଡ଼ି; ତା' ଉପରେ ଛ'ଇଞ୍ଚ ମୋଟେଇର ମାଟିସ୍ତର। ଶର୍ମାଙ୍କ ଗୋସେଇଁ ବାପା ଅମଳର ଘର ଯେତେବେଳେ ଶର୍ମା ପରିବାରଏଇ ଅଗନାଅଗନି ବନସ୍ତ ଅଞ୍ଚଳକୁ ଉଠି ଆସିଥିଲେ ବାହାର ଜଗତରୁ, ବୋଧହୁଏ ବେପାର ଉଦ୍ଦେଶ୍ୟରେ। ଏଠାରେ ଥିଲା ପର୍ବତ ଫାଙ୍କରେ କୃଷିପୋଯୋଗୀ ମାଳାଞ୍ଚଳ ଏବଂ ବଣିଜ ପାଇଁ ବନଜାତ ଦ୍ରବ୍ୟମାନ। କ୍ରମଶଃ ଶର୍ମା ପରିବାର ବନିଗଲେ ଅଞ୍ଚଳର ସ୍ଥାୟୀ ବାସିନ୍ଦା ଏବଂ ଜମିଜମାର ଅଧିକାର ସୂତ୍ରରେ ହୋଇଗଲେ ଗୌନ୍ତିଆ। ଏଠାକାର ଏକମାତ୍ର ଟିଣଛପର ମାଣ୍ଡୁ ଘରଟି ଏପରି ଅଲୋଡ଼ିତ ଅବହେଳିତ ଅବସ୍ଥାରେ ଦେଖି ଆମେ ଏହାର ଇତିହାସ ଖୋଳିଥିଲୁ। ଏଇ ଘରେ ଶର୍ମାଙ୍କର ଗୋସେଇଁ ମା' କୌଣସି ପାରିବାରିକ କଳହରୁ ବେକରେ ଦଉଡ଼ି ଲଗାଇ ଆତ୍ମହତ୍ୟା କରିଥିଲେ ବୋଲି ଶୁଣିଲି। ସେଥିରେ ଭୂତପ୍ରେତ ବାସ କରୁଥିବାର ଜନରବ ମିଳେ। ଠିକ୍ ଘରକୁ ଲାଗି ଗୋସେଇଁ ମା' ସମାଧିସ୍ଥ, କିନ୍ତୁ ଆମକୁ ଘରଟି ବେଶ୍ ଭଲଲାଗେ। ନିରୋଳା। ଶିକାର ଭ୍ରମଣ ଅନ୍ତେ ଥକି ପଡ଼ିଥିବାବେଳେ ନିକାଞ୍ଚନ କୋଠରିରେ ସୁଷୁପ୍ତିରେ ଘୁଙ୍ଗୁଡ଼ି ମାରୁଁ। ବେଳ ମିଳିଲେ ମୁଁ ବହି ପଢ଼ାରେ ଲାଗିଯାଏ ଅଥବା ବଂଶୀବାଦନରେ ନିମଜ୍ଜି ଯାଏ। ରାତିରେ ଖୁବ୍ କମ୍ ସମୟ ସେଠି ରହିବାକୁ ହୁଏ। କାରଣ ଆମେ ହୋଇଥାଉଁ ବାରବୁଲା ନିଶାଚର ପ୍ରାଣୀ, ରାତିତମାମ ଜଙ୍ଗଲ ଭ୍ରମଣ, ଦିନରେ ବିଶ୍ରାମ। ସେଠି ଆମେ ରହିଲା ଦିନରୁ ଲୋକମାନଙ୍କ ଧାରଣା ବଦଳିବାର ଅନୁମାନ କରାଯାଏ। କେବେ ଭୂତର

କରାମତି ଆମେ ଅନୁଭବ କରିନାହୁଁ। କେବଳ ବେଳେବେଳେ ପାହାଡ଼ି ମୂଷାମାନଙ୍କର ଆତଯାତ ଶବ୍ଦ, କାମୁଡ଼ା କାମୁଡ଼ି, ଚିଁ ଚାଁ ସ୍ୱର ବା ମାଣ୍ଟୁ ଭିତରେ ଓଧମାନଙ୍କର ଅବାଧ ଗତି ଲକ୍ଷ୍ୟ କରିଥାଉଁ। କିନ୍ତୁ ସେଥିପ୍ରତି ଆମର ଆଦୌ ନିଘା ନ ଥାଏ। ଗଭୀର ନିଶା କାଳରେ ନିଶାଚରୀ ପେଚକ ପକ୍ଷୀମାନେ ଛାତ ଉପର ଡାଳରେ ବସି ହୁଁ ହାଁ ହୁଅନ୍ତି, ନିଶୀଥର ନିବିଡ଼ତା ଘୋଷଣା କରନ୍ତି। ଆମକୁ ଏମିତି ଜାଙ୍ଗଲିକ ପରିବେଶ, ନିଭୃତ ନିବାସ ବେଶ୍ ପ୍ରୀତିପଦ ଏବଂ ସୁଖଦ ହୋଇଥାଏ, ଯେଉଁଥି ପାଇଁ ତ ସହର ସଭ୍ୟତାର ପ୍ରାଣ ପ୍ରାଚୁର୍ଯ୍ୟକୁ ପଛରେ ପକାଇ ଧାଇଁଯାଉ ତୁରନ୍ତ ଅଭୟାରଣ୍ୟ ପରିବେଶକୁ। ଅରଣ୍ୟ ଗର୍ଭରେ ଏଇ ମନୋପଯୋଗୀ ବିଶ୍ରାମାଗାରଟି ପାଇ ଆମେ ମୁଗ୍ଧ ଥାଉଁ। ଗୋଟାଏ ଆନ୍ତରିକତା ଆଉ ଆକର୍ଷଣରେ ବନ୍ଧା ଥାଉଁ।

ଗତ ରାତିର ବିଫଳତା ଆମକୁ ହତାଶାର ମହାସାଗରରେ ଭସାଇ ଦେଲା। ଆମର ଦୁଶ୍ଚିନ୍ତା ବହୁଗୁଣିତ ହୋଇଗଲା। ବାଘକୁ ତୁରନ୍ତ ନ ମାରିଲେ ବିପଦ ବଢ଼ି ଚାଲିବ ଏବଂ କେତେ ଲୋକଙ୍କର ଜୀବନ ହାନିହେବ କିଏ କହି ପାରିବ ? ଏମିତି ସନ୍ତାପିତ ମନରେ ବିଷାଦ ଓ ପରାଜୟର ଗ୍ଳାନି ନେଇ ମୁହଁ ଶୁଖାଇ ଘର ବାରନ୍ଦାରେ ତକ୍ତପୋଷ ଉପରେ ମୁଁ ଓ ପ୍ରେମ୍ ମୁହାଁମୁହିଁ ବସି ଚା' ପିଉଥିଲୁ। ମୁହଁ ସଞ୍ଜବେଳ, ଦିବସର ଆଲୋକ ଆସ୍ତେ ଅନ୍ତର୍ହିତ ହେଉଥିଲା, ରଜନୀର ଅନ୍ଧାର କ୍ରମଶଃ କବଳିତ କରୁଥିଲା ବନ ଜଗତକୁ। ସନ୍ଧ୍ୟା ସମୀର ପର୍ବତ ପଟୁ ପ୍ରବାହିତ ହେଉଥିଲା ଧୀରେ ଧୀରେ। ମୁଁ ଘର କାନ୍ଥକୁ ପଛ କରି ବସିଥିଲି। ସମ୍ମୁଖର ଦୀର୍ଘ ପ୍ରାନ୍ତର ମୋତେ ଦୃଶ୍ୟ ହେଉଥିଲା। ପ୍ରାନ୍ତରର ଅନ୍ୟପଟେ ଅନ୍ତତଃ ଅଧ ଫର୍ଲଙ୍ଗ ଦୂରରେ ଶର୍ମାଙ୍କର ବାସଘର। ମୁଁ ଚା' ଗିଲାସରେ ସୋଢ଼କ ଦେଉଥିଲି ଏବଂ ପ୍ରେମ୍ ସିଗାରେଟ୍‌ରେ ନିଆଁ ଧରାଉଥିଲେ, ଠିକ୍ ଏହି ସମୟରେ ଗୋଟାଏ ଚିତାଭଳି ଜନ୍ତୁର ଛାୟାଚିତ୍ର ମୋ ଆଖି ଆଗରେ ଧାଇଁ ଚାଲିଗଲା। ଚିନ୍ତାଚ୍ଛନ୍ନ ଭାରାକ୍ରାନ୍ତ ମନର ଭ୍ରମ ନା ଭୂମି ସହିତ ସମାନ୍ତରାଳ ଭାବେ ଏକ ଚିତାବାଘର ବିଜୁଳି ବେଗରେ ଦୌଡ଼ଣ ! ନା, ଏ ତ ସ୍ୱପ୍ନ ନୁହେଁ, ନୁହେଁ ମଧ୍ୟ ମନର ଭ୍ରମ, ନୁହେଁ କଦାପି ଦୃଷ୍ଟିର ତ୍ରୁଟି। ପାଣିଚିଆ ଅନ୍ଧାର ଭିତରେ। ମୁଁ ସ୍ୱଚକ୍ଷୁରେ ଦେଖିଛି ଯେମିତି ପବନ ଚିରି ତୀରଟିଏ ତଡ଼ିତ୍ ବେଗରେ ଉଡ଼ିଯାଇ ହତା ଡେଇଁ ବଣ ଭିତରେ ଅଦୃଶ୍ୟ ହୋଇଗଲା ! ଶିକାରୀର ଆଖି ଧୋକା ଦେଇ ନ ପାରେ- ମୋର ବିଶ୍ୱାସ। ପଞ୍ଚେନ୍ଦ୍ରୀୟର ସମନ୍ୱୟ ଓ ସଂଯମତା ନ ଥିଲେ ଶିକାରୀର ପଦବାଚ୍ୟ ହେବା ସମ୍ଭବ ନୁହେଁ। ମୋର ଚେତନା ଶକ୍ତି ସୁଦୃଢ଼ ଅଛି। ଚିତାଟା ମୋ ସମ୍ମୁଖରେ ଅନ୍ତତଃ ପଚିଶ ଗଜ ଦୂରରେ ତୀବ୍ର ବେଗରେ ଦୌଡ଼ି ପଳାଇବାର ମୁଁ ଦେଖିଛି। ବର୍ଣ୍ଣନାର ବାକ୍‌ଶକ୍ତି ହରାଇଥିଲି। ମୂଢ଼ ହୋଇ ଯାଇଥିଲି କ୍ଷଣକ ପାଇଁ। ଖନି ବାଜିଥିଲା ମୋ ପାଟି।

ମୁଁ କ'ଣ ହଠାତ୍ ଏମିତି କହୁଛି ! ପ୍ରେମ୍ କିଛି ବୁଝି ନ ପାରି ଅବାକ୍ ହୋଇ ଆଁ କରି ରହିଲେ। ମୁଁ କହୁଥିଲି- "ଶଃ, ଖସିଗଲା... ଖସିଗଲା... ପ୍ରେମ... ଗଲା... ଶଃ, ଚାଲିଗଲା... ।"

ମୋର ଆକସ୍ମିକ ବାଚାଳତା ଓ ବିଚଳତା ଦେଖି ପ୍ରେମ୍ ଜୋର୍ କରି ମୋ ଦେହକୁ ହଲାଇ କହିଲେ - "କ'ଣ ଏମିତି ବିଳବିଳଉଛ ମୋହନ୍ ?"

ମୁଁ ପ୍ରକୃତିସ୍ଥ ହୋଇ ସତ୍ୟ କହିଲି। ତାଙ୍କ ନେତ୍ର ଯୁଗଳ ବିସ୍ଫାରିତ ହୋଇ ଉଠିଲା। ସତର୍କ ଘଣ୍ଟି ବାଜି ଉଠିଲା ଆମ ପ୍ରାଣ କେନ୍ଦ୍ରରେ। ଦୁନ୍ଦୁଭିର ସ୍ୱର ଚେଇଁ ଉଠିଲା ହୃଦୟ କନ୍ଦର ଭିତରୁ। ଧଡ଼ପଡ଼ ହୋଇ ଦୌଡ଼ିଲୁ ଘର ଭିତରକୁ। ନିଜ ନିଜ ଗୁଳିଭରା ବନ୍ଧୁକ ଓ ରାଇଫଲକୁ ହାତରେ ଧରିଲୁ। ଉଜ୍ଜ୍ୱଳ ସର୍ଚ୍ଚ ଲାଇଟ୍‌କୁ ଜଳାଇ ରଖି ଚଉଦିଗକୁ ଲକ୍ଷ୍ୟ କଲୁ। ଚିତା ହତା ପାର ହୋଇ ପଳାଇ ଯାଇଛି। ଯେ ସେଇ ଦୁରାଚାରୀ ଚିତାବାଘ ଯିଏ ଶର୍ମାଙ୍କର ଅଲିଅଳି କନ୍ୟାକୁ ଏଇ ବାଗିଚା ହତା ଭିତରୁ ହରଣଚାଳ କରିଛି।

ପ୍ରେମ୍‌ଙ୍କ ଅନୁସନ୍ଧିତ୍ସୁ ଆଖି ମୋର ମତକୁ ସମର୍ଥନ କଲା ଦୃଢ଼ ଭାବେ। ଚିତା ଏଇ ପାଖରେ କେଉଁଠି ବାସ କରୁଛି- ଏଥିରେ ଦ୍ୱିମତ ନାହିଁ। ଘଡ଼ିସନ୍ଧିର ବେଳ ଉପସ୍ଥିତ। ସତର୍କତାର ଧ୍ୱନିରେ ଛାତି ଭିତରର ହୃତ୍‌ପିଣ୍ଡଟା ଉଠୁଥାଏ, ପଡୁଥାଏ, ସମଗ୍ର ଶରୀରରେ ରକ୍ତ ସଞ୍ଚାଳନର ବେଗ ବଢ଼ି ଯାଇଥାଏ ବହୁଭାବେ। ଅନୁସନ୍ଧାନରେ ଲାଗି ପଡ଼ିଲୁ ବନ୍ଧୁଦ୍ୱୟ। ମୋର କାହିଁକି ମନେହେଲା, ଘରର ଏଇ ମାଣ୍ଟୁ ଭିତରୁ ଚିତାଟା ଖପ୍ କରି ଡେଇଁ ପଳାଇଲା ଭଳି। ଅତଏବ ମାଣ୍ଟୁ ଭିତର ସ୍ଥାନଟି ଭଲ ଭାବେ ଦେଖିବାକୁ ଇଚ୍ଛା କଲି ଏବଂ ପ୍ରେମ୍ ପ୍ରସ୍ତାବକୁ ଦୋହରାଇଲେ। ସମ୍ଭାବ୍ୟରୁ ସର୍ବଦା ସତ୍ୟ ଉତ୍ପନ୍ନ ହୋଇଥାଏ। ସମ୍ଭାବନାକୁ ଆଖି ଆଗରେ ରଖି ପ୍ରେମ୍ ପ୍ରଥମେ ମୁଣ୍ଡରେ ହେଡ୍ ଲାଇଟ୍ ଖଞ୍ଜି କାଠ ଶିଡ଼ି ଚଢ଼ିଲେ ଓ ଆଟୁ ଭିତରକୁ ପ୍ରବେଶ କଲେ। ମୁଁ ମଧ ସେଇପରି ତାଙ୍କୁ ଅନୁଧାବନ କଲି। ଅନେକ ଅଳନ୍ଧୁ, ମାଙ୍କଡ଼ସା, ମାଙ୍କଡ଼ ଗୁହ, ପକ୍ଷୀ ପର, ହାଡ଼ ଇତ୍ୟାଦି ଦେଖି ଗୋଟାଏ ଭୂତସ୍ଥଳୀ ପରି ମନେହେଲା। ଡବଲ ସେଟ୍ ଲାଇଟ୍‌କୁ ବ୍ୟବହାର କରି ଗୁରୁଣ୍ଡି ଗୁରୁଣ୍ଡି ପ୍ରବେଶ କଲୁ ମାଣ୍ଟୁ ଭିତରକୁ।

ମୁଁ ପ୍ରଥମେ ଚମକି ପଡ଼ିଲି ଜିନିର ନାଲି ଜାମାଟା ସେଠି ପଡ଼ିଥିବାର ଦେଖି। କୋହ ତଥା କ୍ରୋଧରେ ଜର୍ଜରିତ ହେଲି। ବାଘ ଜିନିକୁ ଉଠାଇ ଆଣି ଏଇ ମାଣ୍ଟୁରେ ତାଙ୍କୁ ଆହାର କରିଛି। ଘର ଭିତରେ ବାସ କରୁଚି ଶତ୍ରୁ, ଆମେ ବାହାରେ ଭୁଆଁ ବୁଲୁଛୁ ଭକୁଆଙ୍କ ଭଳି। ଶିକାର ଜୀବନରେ ଯା ଠୁଁ ବଳି ବଡ଼ ଆଶ୍ଚର୍ଯ୍ୟ ଘଟଣା ଆଉ କ'ଣ ହୋଇପାରେ ? ଘଟଣାଟା କାଳ୍ପନିକ ମନେହେଲେ ମଧ ଦିବାଲୋକ ଭଳି ସ୍ପଷ୍ଟ ଓ ସତ୍ୟ।

ପୁଣି ଟିକିଏ ଆଗକୁ ଗଲି ଗୁରୁଣ୍ଡି ଗୁରୁଣ୍ଡି। ଆଲୋକରେଖା ପଡ଼ିଲା ଉଗୁଡ଼ା ହୋଇ ରହିଥିବା ହାଣ୍ଡି ପାଖର ବସ୍ତୁ ଉପରେ। ଆରେ ଏ ତ ବସ୍ତୁ ନୁହେଁ, ଚିତା ଶାବକ ! ବିଲେଇ ଛୁଆ ପରି ଜକିଜୁକି ହୋଇ ଶୋଇଛନ୍ତି ! ଆଶ୍ଚର୍ଯ୍ୟର ସୀମା ରହିଲା ନହିଁ। ପରମ ବିସ୍ମୟରେ ଅଭିଭୂତ ହୋଇପଡ଼ିଲି। ଅପରିମିତ ଆନନ୍ଦରେ ଅଧୀର ହୋଇଗଲି। ବୈଜ୍ଞାନିକ ଆର୍କମିଡିସ୍ ରୁଦ୍ଧ ସ୍ଥାନ କୋଠରିରେ 'ୟୁରେକା' ଚିତ୍କାର କଲା ପରି ପ୍ରେମ୍ ଚିତ୍କାରି ଉଠିଲେ- ମିଳିଗଲା, ମିଳିଗଲା। ମୁଁ ବିହ୍ୱଳିତ ଥିଲି କେହି ନ ଦେଖି ଥିବା ଏକ ନୂତନ ପଦାର୍ଥ ଲାଭକଲା ଭଳି। ବୋଧହୁଏ ସମୁଦ୍ରଯାତ୍ରୀ

କଲମ୍ବସ୍ ତାଙ୍କ ଜାହାଜ ପିଣ୍ଟା, ନୀନା, ଶାନ୍ତାଗୋରିଆରୁ ଓହ୍ଲାଇ ନୂତନ ଭୂଖଣ୍ଡ ଆମେରିକା ଆବିଷ୍କାର କଲାବେଳେ ଏମିତି ଆନନ୍ଦ ବିହ୍ୱଳ ହୋଇ ନ ଥିବେ !

ଜୀବନ ଯାତ୍ରାର ଅନୁଭୂତି ସ୍ରୋତରେ ଏକାବେଳେ ଏପରି ଗୁଡ଼ିଏ ଘଟଣା ସଙ୍ଘଟିତ ହୋଇଉଠେ ଯାହା ମଣିଷର କଳନା, କଳ୍ପନା, ଚିନ୍ତା ଓ ଚେତନାର ବାହାରେ, କିନ୍ତୁ ନିରାଟ ବାସ୍ତବ ହୋଇଥାଏ । ମାଈ ଚିତାଟା ଏଠି ପିଲା ପ୍ରସବ କରିଛି କେଇଦିନ ହେଲା, ବେଶ୍ ଆଡ୍ଡା ଜମାଇଛି ନିର୍ଭୟରେ । ଏଠି ବିସ୍ତୀର୍ଣ୍ଣ ଅରଣ୍ୟ, ନିଭୃତ ପଥର କୋରଡ଼, ପ୍ରକୃତିର ପ୍ରଶସ୍ତ ବାସସ୍ଥଳୀ ଥାଉଁ ଥାଉଁ, ମଣିଷ ରହୁଥିବା ଜାଗା ବାଛି ନେଇଛି- ଯାଠୁ ବଳି ବଡ଼ ଆଶ୍ଚର୍ଯ୍ୟ କଥା କ'ଣ ହୋଇପାରେ ? ଚିତାର ସାହସ ଓ ଚତୁରତାକୁ ସ୍ୱୀକାର କରିବା କଥା । ସବୁଠୁଁ ଉଦ୍‌ବେଗର ବିଷୟ ହେଉଛି, ଏହି ପରିତ୍ୟକ୍ତ ନିର୍ଜନ ଗୃହଟିରେ ଆମେ ବେନି ବନ୍ଧୁ ବେଶ୍ ଆରାମରେ ରହି ଆସିଛୁ ଆଜି ପର୍ଯ୍ୟନ୍ତ, କବାଟକୁ ବନ୍ଦ କରି କୋଠରିରେ ଶୋଇବା ଅଭ୍ୟାସ ଆମର ନାହିଁ, କେବେ ନ ଥିଲା ମଧ । ଏପରିକି ଗତକାଲି ରାତିରେ ଆମେ ଏଇ ଘରେ ଅବସ୍ଥାନ କରିଥିଲୁ ଦ୍ୱାରକୁ ଉନ୍ମୁକ୍ତ କରି । ତଥାପି ଆମେ ନରଭକ୍ଷୀ ଚିତାର ଆହାର ହୋଇ ନାହୁଁ, ଏବେ ବି ଗୋଟାପଣେ ବଞ୍ଚିଛୁ କେବଳ ନିୟତିର ଅସୀମ କରୁଣାରୁ ସିନା ! ବଡ଼ ବିଚିତ୍ର ବୋଧ ହୁଏ ଏଇ ଜନ୍ମମୃତ୍ୟୁର ଅସାମାନ୍ୟ ଇସ୍ତାହାର, ନିୟନ୍ତାର ଅଦ୍ଭୁତ କାରବାର । ଜନମ, ମରଣ, ବରଷା; କହି ନ ପାରନ୍ତି ପୁରୁଷା- ଯଥାର୍ଥ ମନେହୁଏ ।

ପ୍ରେମ୍ ଗଦ୍ ଗଦ୍ ହୋଇ ଦୁଇଟିଯାକ ଚିତା ଛୁଆଙ୍କୁ ଟେକି ଆଣିଲେ । ଆଖି ଫିଟି ନ ଥିଲା ସେମାନଙ୍କର । ଏଇ ପାଞ୍ଚ ସାତ ଦିନର ଶାବକ । ଆକାରରେ ବିଲେଇ ଛୁଆଠୁଁ ବଡ଼, ଆଲ୍‌ସେସିଆନ୍ କୁକୁର ଛୁଆର ଆକୃତି ହେବ । ଛୁଆ ଦୁଇଟାଙ୍କୁ ପ୍ରେମ୍‌ଙ୍କ ହାତରୁ ଛଡାଇ ଆଣି ଧରି ବହେ ନାଚିଗଲି । ଭୂଖନନ ବେଳେ ରତ୍ନଟିଏ ଲାଭକଲା ଭଳି ଆନନ୍ଦରେ ବିଭୋର ହୋଇଯାଇଥିଲୁ ଦୁଇ ବନ୍ଧୁ ।

ମୁଁ ଟିପ ଗଣି ହସିବ କଲି । ସେଦିନ ରାତିରେ ବାଘର ହେଣ୍ଡାଳ ଶୁଣି ସହବାସର ସମୟ ସମ୍ବନ୍ଧରେ ଧାରଣା କରିଥିଲି, କିନ୍ତୁ ବରଳ ଦୃଶ୍ୟଟି ଦେଖିବାରୁ ବଞ୍ଚିତ ହୋଇଥିଲି । ଆଜି ଫଳ ସ୍ୱରୂପ ସେଇ ବାଘୁଣୀର ଛୁଆ ଦେଖୁଛି ଠିକ୍ ପନ୍ଦର ସପ୍ତାହ ପରେ । ଚିତା ବାଘୁଣୀର ଗର୍ଭଧାରଣ ସମୟ ପନ୍ଦର ସପ୍ତାହ । ତାଜୁବ ଲାଗିଲା ମୋତେ ! ବାଘର ବିଚିତ୍ର ଅବସ୍ଥାନ ଯୋଗୁଁ ଗୌନ୍ତିଆଙ୍କ ଗେହ୍ଲା କନ୍ୟା, ମୋର ଆଦରରର ଜିନିକୁ ଜୀବନପାତ କରିବାକୁ ପଡ଼ିଛି । ଏସବୁ ଘନଘଟା ଭିତରେ ମୁଁ ଆଦିଅନ୍ତ କିଛି ପାଉ ନ ଥିଲି । ସୃଷ୍ଟିର ବିଚିତ୍ର ଧାରା ଓ ଘଟଣାର କିଂଭୂତ କିଂ ଆକାରରେ ମୁଁ ଚିନ୍ତାଶକ୍ତି ହରାଇଥିଲି । କ୍ରୋଧ ତଥା ବିସ୍ମୟରେ ମୁଁ ଫାଟି ପଡ଼ିଥିଲି ।

ମୋ କେମଲ ଟର୍କିସ ତଉଲିଆକୁ ଗୋଟିଏ ଟୋକେଇରେ ପାରି ତହିଁରେ କଅଁଳିଆ ବାଘଛୁଆ ଦି'ଟାଙ୍କୁ ରଖି ନେଇ ଘର ଭିତରେ ଯତ୍ନରେ ଥୋଇଲି ଯେମିତି ବାଘୁଣୀ ଗନ୍ଧ

ବାରି ଶାବକ ପାଖକୁ ନ ଯାଇପାରେ। ଦୃଷ୍ଟିଶକ୍ତି ଏବଂଘ୍ରାଣଶକ୍ତିରେ ବାଘ ଅନ୍ୟ ପଶୁମାନଙ୍କ ତୁଳନାରେ ଅନୁପମ। ଟୋକେଇ ଭିତରେ ଛୁଆ ଦି'ଟା ଗୁଞ୍ଜାଗୁଞ୍ଜି ହୋଇ ଶୋଇ ରହିଲେ। ମା'ଠୁଁ ପେଟେ ସ୍ତନାହାର କରିଛନ୍ତି। ଆହାର ପେଟରେ ରହିଛି। କୁଁ କାଁ ଶବ୍ଦ ନାହିଁ। ମୁଁ ନିଶ୍ଚିନ୍ତ ହେଲି। ଘର କବାଟ ବାହାର ପଟୁ ଭଲଭାବରେ ବନ୍ଦ କରିଦେଲି।

ଏଣେ ଆସନ୍ନ ବିପଦ ମାଡ଼ି ଆସୁଛି ହୁ ହୁଖ। ପୋଖତି ବାଘୁଣୀ ତା ଆହାର ଅନ୍ୱେଷଣରେ ବାହାରି ଯାଇଛି। ନବଜାତ ଶିଶୁଙ୍କୁ ସ୍ତନଦାନ କରିବାକୁ ଯେ କୌଣସି ସମୟରେ ଆସିଯାଇପାରେ। ଆଖି ଓ କାନକୁ ସତର୍କ ରଖିଲୁ। ବନ୍ଧୁକ ଓ ରାଇଫଲ ଘୋଡ଼ାକୁ ଉଠାଇ ସଜାଗ ରହିଲୁ। ବାଘୁଣୀର ସମ୍ଭାବ୍ୟ ପ୍ରସ୍ଥାନ ପଥ ଉପରେ ତୀକ୍ଷ୍ଣ ଦୃଷ୍ଟି ଜାରି ରଖିଲୁ, ହୁଏତ ଆଖି ପିଛୁଳାକେ ଗୁଳି ଚଳାଇବାକୁ ପଡ଼ିବ ଠିକ୍ ଶବ୍ଦଭେଦୀ ବାଣ ପରି। କଠିନ ପରୀକ୍ଷାରେ ଆମେ ଅବତୀର୍ଣ୍ଣ। ଏପରି ସୁଯୋଗ ଆଉ ଆସି ନ ପାରେ। ସୁଯୋଗକୁ ହାତଛଡ଼ା କଲେ ବା ବିଫଳ ହେଲେ, ପରିଣତି ଭୟାବହ ହୋଇ ପଡ଼ିବ, ଆଜୀବନ ପସ୍ତେଇବାକୁ ହେବ। ମୋର ହୃତ୍‌କମ୍ପନ ବହୁମାତ୍ରାରେ ବଢ଼ିଯାଇଥାଏ। ଗୋଟେ ରେଳଯାନ ଛାତି ଉପରେ ଦୌଡ଼ିଲା ଭଳି ଅନୁଭୂତ ହେଉଥାଏ।

ଆମ ସ୍ନାୟୁରେ ଉଷ୍ମତା ଓ ଉତ୍ତେଜନା ଭରି ଯାଇଥାଏ। ଘଡ଼ିଏ, ଦି' ଘଡ଼ି ରାତି ହେଲା। ଶର୍ମାଙ୍କ ଘର ଆଡୁ କିଏ ଜଣେ ଲଣ୍ଠନ ଧରି ଆସୁଥିବାର ଦେଖିଲୁ। କାହ୍ନୁଆ ଆମ ପାଇଁ ରାତ୍ରାହାର ନେଇ ଆସୁଥିଲା ବୋଧେ। ଆମକୁ ସାବଧାନ ଠାଣିରେ ଦେଖି ତଟସ୍ଥ ହୋଇଗଲା। ସେ କିମ୍ ଆଶ୍ଚର୍ଯ୍ୟମ୍ ଦୃଷ୍ଟିରେ ପାଖକୁ ଆସନ୍ତେ, ଘଟଣାର ଗୁରୁତ୍ୱ ତା କାନରେ ଫିସ୍ ଫିସ୍ କହିଲାବେଳେ ପ୍ରେମ୍ ସମ୍ଭାବ୍ୟ ଲକ୍ଷ୍ୟ ଉପରେ ଦୃଢ଼ ନଜର ରଖିଥନ୍ତି।

କହ୍ନେଇକୁ ଘଟଣାଟି ଗୋପ୍ୟ ରଖିବାକୁ ତାଗିଦ୍ କଲି। ଅଯଥା ପ୍ରଘଟ କରି ଲାଭ ନାହିଁ, ହୁଏତ ଲକ୍ଷ୍ୟ ଭଣ୍ଡୁର ହୋଇଯାଇପାରେ। ଉଦ୍ଦେଶ୍ୟ ଥିଲା, ସବୁ ଦିନ ରାତି ଭଳି ଚିର୍ମିରା ଗାଁର ଆଜି ରାତିରେ କୌଣସି ବ୍ୟତିକ୍ରମ ନ ଘଟୁ, କାରଣ ଚାଲାଖି ବାଘୁଣୀ ସାମାନ୍ୟ ବ୍ୟତିକ୍ରମରେ ତରକି ଯାଇପରେ; ଏଣୁ ସଂଯମ ଓ ସାବଧାନତା। ବର୍ତ୍ତମାନ ସମ୍ପୂର୍ଣ୍ଣ ନୀରବତା ଆମର କାମ୍ୟ।

ସିଆଣିଆ କହ୍ନେଇ ସବୁ ବୁଝି ପାରିଲା। କାହାକୁ ହାତ ଯୋଡ଼ିଲା। କଥା ମାନି ନିଃଶବ୍ଦରେ ଚାଲିଗଲା।

ରାତି ବଢ଼ି ଚାଲିଲା। ଅର୍ଦ୍ଧ ରାତ୍ର। ସମୟେ ସମୟେ ଚେଁଚେଁୟା ଚଢ଼େଇଟା ନୀରବତା ଭଙ୍ଗ କରି ରାବି ବିରକ୍ତ କରୁଥାଏ ଅବଶ୍ୟ। କିନ୍ତୁ ତା ସ୍ୱରରେ କିଛି ଅସ୍ୱାଭାବିକତା ନ ଥିଲା, ରାତିରେ ନିଶାଚର ପକ୍ଷୀର ପ୍ରକୃତିଗତ ରାବ। ବ୍ୟସ୍ତ ହେବାର ନାହିଁ।

ନିଶା ଗର୍ଜୁଛି। ପ୍ରଚ୍ଛନ୍ନ ଅନ୍ଧକାର ବନ୍ୟ ଜଗତକୁ ଆଚ୍ଛନ୍ନ କରିଛି। ନିଶ୍ଚଳ ଅଥଚ ଜାଗ୍ରତ ଦୁଇଟା ଶରୀର ଭୂଇଁରେ ନେପେଟି ରହି ବନ୍ଧୁକ ମାଛିକୁ ଲକ୍ଷ୍ୟସ୍ଥଳ ଆଡ଼କୁ ଏକାଗ୍ର ଚିତ୍ତରେ ନିଶାଣ ସ୍ଥିର କରିଥାଉଁ। ନିଜ ନିଃଶ୍ୱାସ ନିଜେ ବାରିବା ସମ୍ଭବ ହେଉ

ନ ଥାଏ। ଏଣେ ମଶା-ଡାଆଁଶମାନେ ଏତିକି ବେଳେ ଆମ ଉପରେ ଦାଉ ସାଧିବାରେ ବ୍ୟସ୍ତ। ବିନା ପ୍ରତିରୋଧରେ ମଶାମାନଙ୍କ ଉପଦ୍ରବ ସହ୍ୟ କରିବାକୁ ପଡ଼ିଥାଏ। ବଡ଼ ଅସହାୟ ଏବଂ ବିରକ୍ତିକର ବୋଧ ହେଉଥାଏ, କିନ୍ତୁ ଉପାୟ ନ ଥାଏ। ଅତଏବ ଅନନ୍ୟୋପାୟ ହୋଇ ରକ୍ତରଙ୍କା ମଶାମାନଙ୍କୁ ସମ୍ପୂର୍ଣ୍ଣ ସ୍ୱାଧୀନତା ଦେଇଦେଲୁ। କେତେବା ରକ୍ତ ଶୋଷିବେ କ୍ଷୁଧାର୍ତ୍ତ ମଶାମାନେ ? ଉଲ୍‌କାପାତରେ ପୃଥିବୀର ଓଜନ ବଢ଼ି ଯାଏ ନାହିଁ କି ପୋଷେ ପାଣି ନଦୀରୁ ପିଇଲେ ନଦୀଜଳ କମିଯାଏ ନାହିଁ। ମଶାମାନେ ମନବୋଧ କରି ଆଜି ରକ୍ତପାନ କରନ୍ତୁ ଆଜି ତ ସେମାନଙ୍କ ପାଳି !

ପ୍ରେମ୍ ବଡ଼ ଅଡୁଆରେ ପଡ଼ିଥିଲେ। ଏମିତି ବକଧ୍ୟାନରେ ଘଣ୍ଟା ଘଣ୍ଟା ବସିବା ହୁଏତ ତାଙ୍କର ପ୍ରଥମ। ସଦା ସଚଳ ବ୍ୟକ୍ତି। ପାଦରେ ପଥ ବୁଲିବା ତାଙ୍କର ଅଭ୍ୟାସ, ଅଭିରୁଚି। ପଦଚାରଣରେ ସାଥୀ ହୋଇଥାଏ ତାଙ୍କ ପ୍ରିୟ ସିଗାରେଟ। ଏମିତି ନିଶ୍ଚଳ ଭାବେ ସ୍ଥିର ଚିତ୍ତରେ ବସି ରହିବା ତାଙ୍କୁ ଅସୁବିଧାରେ ପକାଇଥାଏ। ବିଶେଷ କରି ଧୂମପାନର ଅଭ୍ୟାସ ତାଙ୍କୁ ବିବ୍ରତ କରୁଥାଏ। ସିଗାରେଟ୍‌ର ଆକର୍ଷଣ ବ୍ୟଥା ଦେଉଥାଏ। ମୁଁ କିନ୍ତୁ ତାଗିଦ୍ କରିଥାଏ। ଜୀବନରେ ସୁଯୋଗ ବାର ବାର ଆସେନି- ମାତ୍ର ଥରେ। ସଂଯମ ଓ ଉଦ୍ୟମ ହିଁ ସଫଳତାର ସୂତ୍ର। ଅଭିଷ୍ଟ ଫଳପ୍ରାପ୍ତି ପାଇଁ ଆବଶ୍ୟକ ହୁଏ ଐକାନ୍ତିକ ନିଷ୍ଠା, ତିତିକ୍ଷା ଓ ସାଧନା।

ହଟା ଆର ପାଖରୁ ହଠାତ୍ ଶୁଭିଲା ଶୁଖିଲା ପତ୍ରର କ୍ଷୀଣ ମଡ୍ ମାଡ୍ ଶବ୍ଦ। ସଚେତନ କାନ ସେ ଶବ୍ଦ ଶୁଣିପାରେ ମାତ୍ର। କିନ୍ତୁ ସେ ଶବ୍ଦଟା ଆଉ ଶୁଣାଗଲା ନାହିଁ, ପୁଣି ନୀରବତା। କାହାର ଶବ୍ଦ ହୋଇପାରେ ? ଏ ତ କୌଣସି ବଡ ଜନ୍ତୁର ପାଦ ଶବ୍ଦ ନିଶ୍ଚୟ। ପତର ଉପରେ ପାଦ ଗଣି ଜନ୍ତୁର ସାବଧାନ ପଦପାତ ଛଡା ଆଉ କିଛି ହୋଇ ନ ପାରେ। ମୁଁ ଜାଣିପାରିଲି, ଚିତା ହଟା ସେ ପାଖ ଧାରରେ ଜଙ୍ଗଲରୁ ଚରି ଆସି ଚୁପ୍ ହୋଇ ବସି ଯାଇଛି। ହଟା ଭିତର ଖୋଲା ଜାଗାକୁ ଆସିବା ପୂର୍ବରୁ ସେ ପ୍ରଥମେ ଲକ୍ଷ୍ୟ କରେ, ତା' ପରେ ଲମ୍ଫମାରେ। ଶବ୍ଦ ନ ଶୁଭିବାର ଅର୍ଥ ଚିତା ନିଶ୍ଚିତ ଭାବେ ସେ ବସି ରହିଛି ଆରପାଖ ହଟା ଧାରରେ। ସମ୍ଭାବ୍ୟକୁ ଆଖି ଆଗରେ ରଖି ସତର୍କତା ଶକ୍ତିକୁ ଯଥେଷ୍ଟ ଭାବେ ଦୃଢ଼ ରଖିଲି। ଜାଗ୍ରତ ପ୍ରହରୀ ଟେଁଟେଁୟା ଚଢ଼େଇ ପୁଣି ବୋବାଳି ଛାଡ଼ିଲା- ଏଥର କିନ୍ତୁ ଭିନ୍ନ ଢଙ୍ଗରେ, ବୋଧହୁଏ ସୂଚାଇ ଦେବାକୁ ଚାହୁଁଥିଲା ଶତ୍ରୁର ଆଶୁ ଉପସ୍ଥିତି। ଠିକ୍ ଏତିକି ବେଳେ ମୋ ଆଡକୁ ଗୋଟେ ଛାଇଟେ ମାଡି ଆସୁଥିବାର ବାରି ପାରିଲି ଏବଂ ଲକ୍ଷ୍ୟ କରି ଟ୍ରିଗର୍ ଚିପିଲି। ବନ୍ଧୁକର ଘଡ଼ଘଡ଼ି ଗର୍ଜନରେ ନିର୍ଜନ ବନସ୍ଥଳୀ ପ୍ରକମ୍ପିତ ହେଲା, ପ୍ରତିଧ୍ୱନି ତୋଳି ଶବ୍ଦକୁ ସମର୍ଥନ କଲେ ଗିରିଶୃଙ୍ଗ ରାଜି ଲହରେଇ ଲହରେଇ।

ସଟ୍ ଲାଇଟ୍ ଜାଳି ପ୍ରେମ୍ ଧାଇଁଲେ ଆଗକୁ ଯେଉଁଠି ଜନ୍ତୁଟା ପଡ଼ି ଛଟ୍ ଛଟ୍ ହେଉଥିଲା। ମୁଁ ପାଖକୁ ଯାଇ ଶକ୍ତିଶାଳୀ ଆଲ୍‌ଫାମ୍ୟାକ୍‌ସର ଆଉ ଏକ ଗୁଳି ତା' ମୁଣ୍ଡରେ ଭେଦକଲି, ତା' ଦେହରୁ ପ୍ରାଣଟା ସମ୍ପୂର୍ଣ୍ଣ ଲିଭାଇ ଦେଲି।

ମା' ବାଘୁଣୀଟା ମୁହଁ ମାଡ଼ି ମରି ପଡ଼ିଛି। ପ୍ରେମ୍ ରାଇଫଲ ତଳେ ଥୋଇ ମୋତେ କୁଣ୍ଢାଇ ପକାଇଲେ ଓ ଅଭିନନ୍ଦନ ଜଣାଇ କହିଲେ- ଧନ୍ୟ ମୋହନ, ଥ୍ରି ଚିଅର୍ସ ଟୁ ୟୁ... ଦୀର୍ଘଜୀବୀ ହୁଅ ମୋହନ...

ପୁଣି ପ୍ରେମ୍ ମୋ ପିଠି ଥାପୁଡ଼ାଇ ସାବାସ ପ୍ରଦାନ ଢଙ୍ଗରେ କହି ଚାଲିଲେ- ତୁମକୁ ଆମ ଯୁଗର ଅର୍ଜୁନ ଆଖ୍ୟା ଦେଲେ ଅତିରଂଜିତ ହେବନି ଆଦୌ...

ମୁଁ ସେତେବେଳେ ମୋର ଦକ୍ଷତା, ସଫଳତା କଥା ନ ଥିଲି, ଦୁରାଚାରୀ ବାଘର ଧୃଷ୍ଟତା ଏବଂ ତା' ଦୁଷ୍କାର୍ଯ୍ୟର ଶେଷ ପରିଣାମ ଚିନ୍ତା କରୁଥିଲି।

ବନ୍ଧୁକରୁ ବିସ୍ଫୋରଣ ଧ୍ୱନିରେ ସୁପ୍ତ ଗ୍ରାମଟି ଚେଇଁ ଉଠିଲା। ବାଘ ମରିଛି, ବାଘ ମରିଛି ଧ୍ୱନିରେ ଚତୁର୍ଦ୍ଦିଗ କମ୍ପିତ ହେଲା। ଅନ୍ଧକାର ଦୂରେଇ ଯାଉଥିଲା ଆସ୍ତେ ଆସ୍ତେ, ପୂର୍ବ ଆକାଶରୁ ରକ୍ତିମ ଆଲୋକ ଆଭା ଉଠି ଆସୁଥିଲା। ଗାଁ ଲୋକେ ଶଯ୍ୟା ଛାଡ଼ି ବହୁ ଆକାଙ୍‌କ୍ଷିତ ଦୃଶ୍ୟଟି ଦେଖିବାକୁ ଚାଲି ଆସୁଥିଲେ ତଥାକଥିତ ଏଇ ଭୂତ କୋଠି ଆଡକୁ- ଆମର ଏଇ ନିଭୃତ ଅପନ୍ତରା ବିଶ୍ରାମକକ୍ଷ ଆଡ଼କୁ। ଭୂତକୋଠିଟା ପ୍ରକୃତରେ ବାଘକୋଠି ବନିଥିଲା। ସଭିଙ୍କ ମୁହଁରେ ପରମାଶ୍ଚର୍ଯ୍ୟର ଚିହ୍ନ। ସେମାନେ ଦୁଇଟି ଅଭୂତପୂର୍ବ ଦୃଶ୍ୟ ଦେଖୁଛନ୍ତି- ମଲା ବାଘୁଣୀଏବଂ ତା'ର ଦୁଇଟି ଜିଅନ୍ତା ଛୁଆ। ଅଗଣିତ ଜନତା ମୁହଁରେ କୃତଜ୍ଞତାର ଅଂସଖ୍ୟ ମୁଦ୍ରା। ଗୌନ୍ତିଆ ଶ୍ରୀଚରଣ ଶର୍ମା ଆନନ୍ଦାତିଶଯ୍ୟରେ କହିଲେ- "ପ୍ରକୃତରେ ତୁମେ ରକ୍ଷାକର୍ତ୍ତା। ବିପଦରୁ ଆମମାନଙ୍କୁ ଉଦ୍ଧାରିଲ ସିନା! ବାଘକୁ ନ ମାରିଥିଲେ ସେ ଆମକୁ ଗୋଟି ଗୋଟି କରି ଖାଇଥାନ୍ତା...ଶଃ ଚିତାଟା ମୋ ନନୀକୁ ଖାଇଛି। ତାକୁ ମୁଁ ଟିକ୍ ଟିକ୍ କରି କାଟିବି।"

ବାଘମରା ସମ୍ବାଦ ଦ୍ରୁତ ବେଗରେ ବ୍ୟାପିଲା। ଆବାଳ ବୃଦ୍ଧ ବନିତାଙ୍କ ସୁଅ ଛୁଟିଲା ଗୌନ୍ତିଆଙ୍କ ଗୃହାଭିମୁଖେ। ସମସ୍ତଙ୍କ ମୁହଁରେ ଆଶ୍ୱସ୍ତିର ଚିହ୍ନ, ବିପୁଳ ହର୍ଷୋଲ୍ଲାସ, ଅପ୍ରମିତ ଆନନ୍ଦର ଧାରା ପ୍ରବାହିତ ହେଉଥିଲା। ଗୋଟେ ମଉଛବର ଦୃଶ୍ୟ, ଏକ ପଲ୍ଲୀମେଳା ପରି।

ଦେଖିଲି ଗୌନ୍ତିଆ ଶର୍ମା, କହ୍ନେଇ, ମନୁଆ ମୋ କତିକୁ ପ୍ରଫୁଲ୍ଲ ମନରେ ପାଖେଇ ଆସୁଛନ୍ତି। ଶର୍ମାଙ୍କ ଗୋଟିଏ ହାତରେ ଡାଳ, ଅନ୍ୟ ହାତରେ ପିତଳ ଥାଳି ଓ ସେଥିରେ ଛୋଟ ଛୋଟ ଗିନା ପାତ୍ରରେ କିଛି ସିନ୍ଦୂର, ଚନ୍ଦନ, ହଳଦୀ, ଅରୁଆ ଚାଉଳ, ଫୁଲ, ଦୁବ ଓ ବରକୋଳି ପତ୍ର।

କାହାକୁ ଅର୍ଚ୍ଚନା କରିବାର ଏକ ସଂକ୍ଷିପ୍ତ ଆୟୋଜନ ମନେ ହେଉଥିଲା। ସେମାନେ ମୋର ଖୁବ୍ ନିକଟତର ହେଲେ। ଶର୍ମା ଏକ କ୍ଷୁଦ୍ର ଖଡ଼ିକା କାଠିରେ ଚନ୍ଦନ ସିନ୍ଦୂର ଆଣି ମୋ କପାଳର ଠିକ୍ ମଧ୍ୟ ଭାଗରେ ତିଳକଟିଏ ଅଙ୍କନ କଲେ। ତା' ଉପରେ ହଳଦୀମଖା ଅରୁଆ ଚାଉଳ ଥାପିଲେ।

ମୁଁ ସରମରଙ୍ଗା ସ୍ୱରରେ କହିଲି- " ଏ କ'ଣ କରୁଛ ଶର୍ମା!"

ସେ ସଂଭ୍ରମ ସ୍ୱରରେ ଧୀରେ କହିଲେ- "ମହାପ୍ରୁ, ଏ ତ ଆମର ଅର୍ଘ୍ୟ, ବିଜୟ ତିଳକ, ପିନ୍ଧିବାକୁ ହୁଏ। ତମକୁ ତିଳକୀ କରିବା ଆମର କାମ, ପିନ୍ଧିବନି କିପରି ?"

ମୁଁ ହସି ହସି କହିଲି- "ମୁଁ କ'ଣ ବଡ଼ କାମଟେ କରିଛି ଯେ !"

ସେ ସ୍ୱୀକାରପୂର୍ଣ୍ଣ ଗଳାରେ କହିଲେ- "ତୁମେଇ ତ ଆମକୁ ବିପତ୍ତିରୁ ରକ୍ଷା କଲ। ବାଘୁଣୀକୁ ନ ମାରିଥିଲେ ସେ ଆଉ କେଇଟା ଦିନରେ ଏ ଅଞ୍ଚଳ ଶ୍ମଶାନ କରି ଦେଇଥାନ୍ତା। ତୁମେ ଆମର ଈଶ୍ୱର ସମାନ..."

ପ୍ରେମ୍ ଦୃଶ୍ୟ ଦେଖି ସମର୍ଥନ କଲା ଭଙ୍ଗୀରେ କରତାଳି ମାରିଲେ। ଉପସ୍ଥିତ ଅଧିବାସୀମାନେ ବିଜୟ ଦୃଶ୍ୟ ଉପଭୋଗ କରୁଥିଲେ।

ଶୁକ୍ରୁ ମଳା ବାଘୁଣୀକୁ ବହେ କୁଦି ଗଲା, ତା' ପୁତ୍ର ନିଧନର ପ୍ରତିଶୋଧ ନେଉଥିଲା। ଖୁବ୍ ପାଖରେ ଚିମା ଭୋତ୍ରାର ବିଧବା 'ଦୁରା' ଛିଡା ହୋଇଥିଲା କରୁଣତାର କଣ୍ଢେଇଟିଏ ପରି। ତା' ଆଖି କୋଣର ଲୋତକ ବିନ୍ଦୁ ମୁଁ ଦେଖି ପାରିଥିଲି। ଏଇ ଦୁଷ୍ଟ ବାଘୁଣୀ ମୁହଁରେ ତା ଭେଣ୍ଡା ସ୍ୱାମୀ ପ୍ରାଣ ହାରିଛି, ତା' ନାରୀ ଜୀବନକୁ ନାରଖାର କରିଛି। ଚିମା ଭୋତ୍ରାର ମରଣ ଦୃଶ୍ୟ ମୋ ମନରେ ରେଖାଙ୍କିତ ହେଲା। ଚିମାର ମୁହଁ ମୋ ଆଖି ଆଗରେ ନାଚି ଉଠିଲା ବାରମ୍ବାର। ତା'ର ନିଃସ୍ୱାର୍ଥ ସାହାଯ୍ୟ, ନିଃସର୍ତ୍ତ ଆଚରଣ ଆମର ଅପାଶୋରା। ତା' ମୃତ୍ୟୁର ଉପଯୁକ୍ତ ପ୍ରତିଶୋଧ ନେଇ ପାରିଥିବାରୁ ମୁଁ ସନ୍ତୋଷ ଲାଭକଲି। ତା' ଆତ୍ମାର ସଦ୍‌ଗତି ପାଇଁ ଦଣ୍ଡେ ନୀରବ ପ୍ରାର୍ଥନା କଲି ମନେ ମନେ। କିନ୍ତୁ ଦୁଃଖିନୀ ଦୁରାର ସିନ୍ଦୂର କ'ଣ ଫେରି ଆସିବ ?

କିନ୍ତୁ ବିଗତ ବିପତ୍ତି ପାଇଁ ଶୋଚନା କରି ଲାଭ ନାହିଁ। ଯାହା ଘଟିବାର ଥାଏ, ତାହାହିଁ ହୁଏ। ଗୋଟିଏ ପ୍ରସ୍ତାବ ମନକୁ ଛୁଇଁଲା। ପ୍ରେମ୍‌କୁ ପରାମର୍ଶ କଲି। ସେ ନେତ୍ର ବିସ୍ତାରିତ କରି ସମର୍ଥନ କଲେ। ମୋ ବିଚକ୍ଷଣ ଚିନ୍ତାଧାରା ଓ ବିଚାରଶକ୍ତିକୁ ତାରିଫ କଲେ। ଶର୍ମାଙ୍କୁ ପାଖକୁ ଡାକି ଚୁପ୍ କରି ତାଙ୍କ କାନରେ କହିଲି। ଶର୍ମା ମଧ ଏକ ସ୍ୱରରେ ପ୍ରସ୍ତାବକୁ ସ୍ୱାଗତ କଲେ, ମଧ୍ୟସ୍ଥିର ଦାୟିତ୍ୱ ନେଲେ।

ଏଠାକାର ପ୍ରଥା ଅନୁଯାୟୀ ଗୋଟାଏ ବିଧିପର୍ବ ଆରମ୍ଭ ହେଲା। ଗୌନ୍ତିଆଣୀ କନକ ଦେଇ ଥିଲେ ଅନ୍ତଃସତ୍ତ୍ୱା, ଆଗାମୀ ଶିଶୁ ତାଙ୍କ ଗର୍ଭରେ ବଢୁଥିଲା। ଏହି ଅବସରରେ ତାଙ୍କ ସନ୍ତାନକୁ ବାଘ ଖାଇଲା। ଏଣୁ ତଥାକଥିତ ବିଧି ଅନୁଯାୟୀ ଗ୍ରହକୋପ ଦୂର ପାଇଁ ଏବଂ ଶୁଭ ଫଳପ୍ରାପ୍ତି ଉଦ୍ଦେଶ୍ୟରେ ଗର୍ଭବତୀ ଗୌନ୍ତିଆଣୀ ବାଘ ଉପରେ ଛିଡ଼ା ହୋଇ ସ୍ନାନ କରିବା ଉଚିତ। ତଦନୁଯାୟୀ ଆଦିବାସୀ ମାଇପିମାନଙ୍କ ମେଳ, ଲୁହର ବାରିପାତ ଭିତରେ କନକ ଦେଇଙ୍କୁ ରାଣୀ ଭାବେ ଅଣାହେଲେ। ତାଙ୍କୁ ମୃତ ବାଘୁଣୀ ଉପରେ ଠିଆ କରାଗଲା ଏବଂ ରମଣୀମାନେ କଳସରେ ଜଳ ଆଣି ତାଙ୍କୁ ସମ୍ପୂର୍ଣ୍ଣ ଭାବେ ସଲିଳ ସ୍ନାନ କରାଇଲେ। ଦୃଶ୍ୟଟି ବେଶ୍ କୌତୁହଳଜନକ ଏବଂ ଉପଭୋଗ୍ୟ ଥିଲା। ମୁଁ କ୍ୟାମେରାଟା ନ ଆଣି ପସ୍ତାଉଥିଲି ଖାଲି....

ଇତି ମଧ୍ୟରେ ଶ୍ରୀଚରଣ ଶର୍ମା ଶୁକ୍ରୁ ଓ ଦୁରାକୁ ପୃଥକ୍ ଭାବେ ଭେଟିଥିଲେ। ଦୋହରା ବିବାହରେ ଉଭୟେ ରାଜି। ଯେଉଁଠି ସ୍ୱୟଂ ଗୌନ୍ତିଆ ପ୍ରସ୍ତାବ ବାଢ଼ିଛନ୍ତି ଏବଂ ସାହେବ ବାବୁମାନେ ଇଚ୍ଛା ପ୍ରକାଶ କରିଛନ୍ତି, ସେଥିରେ ସେମାନେ ଅରାଜି ହେବେ କାହିଁକି? ପ୍ରସ୍ତାବ ତ ସମସ୍ତଙ୍କ ଭଲ ପାଇଁ। ସନ୍ତାନହରା ଶୁକ୍ରୁର ଭାର୍ଯ୍ୟାହୀନ ଜୀବନରେ କର୍ମିଣୀ ସାଥିନୀଟିଏ ମିଳିଯିବ, ଆଉ ଦୁଃଖିନୀ ଦୁରାର ସୋହାଗ ଫେରି ଆସିବ ଶୁକ୍ରୁର ସ୍ୱାମୀ ସାନ୍ନିଧ୍ୟରେ। ଉଭୟଙ୍କ ଯୋଡ଼ିତ ବେଶ୍ ସୁନ୍ଦର ଦିଶିବ, ଉଜୁଡ଼ା ସଂସାର ପୁନର୍ବାର ଜୀଇଁ ଉଠିବ। ବିଗତ ପାଇଁ ବ୍ୟଥିତ ନ ହୋଇ ଆଗତ ପାଇଁ ଆଶୁ ପନ୍ଥା ଅବଲମ୍ବନ କରିବା ସର୍ବଦା ବିଧେୟ- ମୋର ଥିଲା ପରାମର୍ଶ। ସେମାନଙ୍କ ସମ୍ମତିରେ ମୁଁ ଖୁସି ହେଲି।

ଏଥର ମୃତ ବାଘୁଣୀର ପରୀକ୍ଷା ଚାଲିଲା। ତା'ର ମୁଣ୍ଡଠୁଁ ଲାଞ୍ଜ ପର୍ଯ୍ୟନ୍ତ ପ୍ରେମ୍ ତନ୍ନ ତନ୍ନ କରି ପରୀକ୍ଷା କଲେ ଜଣେ ଅଭିଜ୍ଞ ପ୍ରାଣୀ ବିଜ୍ଞାନୀ ଭଳି। ତା'ର ଲମ୍ବ ୫ ଫୁଟ ୩ ଇଞ୍ଚ (ଲାଞ୍ଜକୁ ଛାଡ଼ି), ଉଚ୍ଚତା ୩ ଫୁଟ ୩ ଇଞ୍ଚ। ମୁଣ୍ଡ, ଦାନ୍ତ, ପଞ୍ଝା, ନାକ, କାନ, ଜିହ୍ୱାଦି ଅଙ୍ଗ ପ୍ରତ୍ୟଙ୍ଗର ବବରଣୀ ଟିପି ନେଉଥିଲି ମୋ ଶିକାର ଡାଇରୀରେ। ତାପରେ ଆରମ୍ଭ ହୁଏ କଂସେଇ କାମ; ଛାଲ ଉତରା ପର୍ବ। ପ୍ରେମ୍ ଛୁରି ସାହାଯ୍ୟରେ ଭଲଭାବେ ଛାଲଟି ଉତାରି ସେଥିରେ ଦେଶୀ ପ୍ରଣାଳୀରେ ଦହି ଓ ଲୁଣ ଦେଇ ଖରାରେ ଶୁଖାଇଲେ ଏବଂ ଚମଡ଼ାଟି ଗୌନ୍ତିଆଙ୍କ ପାଇଁ ଉଦ୍ଦିଷ୍ଟ ରଖିଲେ। ବାଘୁଣୀର ପେଟ ଚିରି ଦେଖାହୁଏ, ଖୁବ୍ ଆଶ୍ଚର୍ଯ୍ୟ ଭାବେ ଦି'ପଟ ସୁନା ଖଡୁ ତା' ପେଟ ଭିତରେ ରହିଥିଲା। ଏ ତ ଆମ ଜିନିର ସ୍ୱର୍ଣ୍ଣ ନିର୍ମିତ ହସ୍ତଖଡୁ! ପ୍ରେମ୍ ତାକୁ ଆଣି ଗୌନ୍ତିଆଙ୍କୁ ଫେରସ୍ତ ଦେଇ କହିଲେ- "ଭଉଣୀ, ଆମେ ଜିନିର ଅକାଳ ମୃତ୍ୟୁରେ ମର୍ମାହତ। ମୁଁ ଆଶୀର୍ବାଦ କରୁଛି ଆମ ଜିନି ପୁଣି ତମ କୋଳକୁ ଫେରି ଆସିବ।"

କନକ ଦେଈ ଛଳ ଛଳ ଆଖିରେ ଖଡୁକୁ ମୁଣ୍ଡରେ ଛୁଆଁଇ ମଙ୍ଗଳାଙ୍କ ପାଇଁ ମାନସିକ କଲେ।

ବାଘମାଂସ, ଚର୍ବି, ଜିଭ, ଦାନ୍ତ, ନଖ ଗାଁ ଲୋକେ ବାଣ୍ଟି ନେଲେ- କିଛି ଆହାର ଓ କିଛି ଔଷଧ ଉଦ୍ଦେଶ୍ୟରେ।

ଏହାପରେ ଆମର ବିଦାୟ ପର୍ବ ଆରମ୍ଭ ହେଲା। ଅଞ୍ଚଳର ଅର୍ଦ୍ଧେକ ଲୋକ ଆମକୁ ବାଟେଇ ଆସିଥିଲେ ଡାଘୋରା ଷ୍ଟେଶନ ପର୍ଯ୍ୟନ୍ତ। ବାଘ ଭୟ ସବୁଦିନ ପାଇଁ ଦୂର ହୋଇଛି। ସନ୍ଧ୍ୟା ପରେ ମଧ୍ୟ ସେମାନେ ଗାଁକୁ ଫେରିବାକୁ ଆଉ ଭୟ ନାହିଁ।

ସାଙ୍ଗରେ ନେଇ ଆସିଥିଲି ବାଘ ଶାବକ ଦିଓଟିଙ୍କୁ। ଗୋଟିଏ ଅଣ୍ଡିରା ଓ ଅନ୍ୟଟି ମାଈ। ମାତୃହୀନ ଶିଶୁ ଦ୍ୱୟଙ୍କର ଲାଳନପାଳନ ଦାୟିତ୍ୱ ଗ୍ରହଣ କରିନେଲି ଏକ ନୈତିକ ଅବବୋଧର ଆହ୍ୱାନରେ। ଜଣକର ନାମ ରଖିଲି ବନରାଜ, ଅନ୍ୟଟି ଗଙ୍ଗା। ନାଁ ଧରି ଡାକିଲେ ସେମାନେ ପାଖକୁ ଦଉଡ଼ି ଆସନ୍ତି, ପୋଷା ବିରାଡ଼ି ଭଳି ଦେହରେ ଘଷି ହୁଅନ୍ତି, ମୋଠୁଁ ସାଉଁଳା ଖା'ନ୍ତି। ମୋ ସ୍ତ୍ରୀ ପାଖ ଛାଡ଼ନ୍ତି ନାହିଁ।

ଶର୍ମାଙ୍କଠୁଁ ଚିଠି ପାଇଲି। ଖୁସି ଖବର। ଜିନି ପୁଅଟିଏ ହୋଇ ଫେରି ଆସିଛି ସେମାନଙ୍କ ଶୂନ୍ୟ କୋଳକୁ ଠିକ୍ ନନ୍ଦ ଘରେ ଗୋବିନ୍ଦ ଭଳି। ତା ନାଁ ମଧ୍ୟ ରଖିଛନ୍ତି ଗୋବିନ୍ଦ। ଯେଉଁଦିନ ଶୁକ୍ରୁ ଓ ଦୁରାର ପୁନଃ ବିବାହ ପର୍ବ ସେ ଅନୁଷ୍ଠିତ କରାଉଥିଲେ, ସେଥି ସକାଶେ ନିଜ ତରଫରୁ ଭୋଜିଭାତର ଆୟୋଜନ କରିଥିଲେ ଆଦିବାସୀ ସମ୍ପ୍ରଦାୟ ପାଇଁ, ସେଇ ଉଲ୍ଲାସ ସମୟରେ ପତ୍ନୀ କନକ ଦେଇ ଗର୍ଭଯନ୍ତ୍ରଣା ଭୋଗ କରୁଥିଲେ ଏବଂ ଠିକ୍ ଅର୍ଦ୍ଧରାତ୍ରରେ 'ଗୋବିନ୍ଦ' ଭୂମିଷ୍ଠ ହୋଇଥିଲା।

ମୋର ପୃଷ୍ଠା ବହୁଳ ଡାଇରୀରେ ଗୋବିନ୍ଦର ଆଗମନ ଏକ ସ୍ୱତନ୍ତ୍ର ସ୍ମରଣୀୟ ଘଟଣା ବହନକରେ।

X X X

କ୍ରମଶଃ ଗଙ୍ଗା ଓ ବନରାଜ ହୃଷ୍ଟପୁଷ୍ଟ ହୋଇ ବଢ଼ିଲେ। ଏଥି ପାଇଁ ଆମେ ଅବଶ୍ୟ ଯଥେଷ୍ଟ ଯତ୍ନବାନ ହୋଇଥିଲୁ, ଠିକ୍ ସନ୍ତାନ ଭଳି ପାଳିଥିଲୁ। ଏତିକି ବେଳକୁ ମୋର ଭୁବନେଶ୍ୱର ବଦଳି ହୁଏ। ବାଘଶାବକମାନଙ୍କୁ ଘରେ ରଖି ପାଳିବା ସମ୍ଭବ ନୁହେଁ। ସେଥିପାଇଁ ଆବଶ୍ୟକ ହୁଏ ଭିନ୍ନ ପରିବେଶ। ଏଣୁ ସେମାନଙ୍କୁ ମୁଁ ପ୍ରାକୃତିକ ଚିଡ଼ିଆଖାନା ନନ୍ଦନକାନନରେ ଦେଇ ଆସିଲି। ଯେଉଁଠି ସେମାନେ ସୁଖ ସ୍ୱାଚ୍ଛନ୍ଦ୍ୟରେ ବାସ କରିବାର ବ୍ୟବସ୍ଥା ଅଛି। ସେମାନଙ୍କର ଏକ ବର୍ଷ ପାଇଁ ଖାଦ୍ୟପେୟ ଖର୍ଚ୍ଚ ବହନ କରିବି ବୋଲି କର୍ତ୍ତୃପକ୍ଷଙ୍କ ସହ ଚୁକ୍ତିକଲି ଆନ୍ତରିକତାର ନିଦର୍ଶନ ସ୍ୱରୂପ। ନନ୍ଦନକାନନର ମୁଖ୍ୟ ପଶୁପାଳକ-ଅଧ୍ୟକ୍ଷ ମହାଶୟ (ମୋ ପିଲାଙ୍କର ଯୋଗେନ୍ଦ୍ର ମଉସା) ମୋ ଦ୍ୱାରା ପ୍ରଦତ୍ତ 'ଚିତାବାଘ' ବୋଲି ଶିରୋନାମା ଫଳକରେ ଉଲ୍ଲିଖିତ କଲେ। ଏବେ ବି ସେଇ ସାଇନ୍‌ବୋର୍ଡ "ମୋହନଙ୍କ ଗଙ୍ଗା ଓ ବନରାଜ" ନନ୍ଦନକାନନର ବ୍ୟାଘ୍ରକୁଟୀରରେ ଦର୍ଶକଙ୍କ ଅବଗତି ନିମନ୍ତେ ସୁରକ୍ଷିତ ରହିଛି।







ରାଧାମୋହନ ମହାପାତ୍ରଙ୍କ ଅନ୍ୟାନ୍ୟ କୃତି-

**ଉପନ୍ୟାସ:**

ପ୍ରଥମ ପ୍ରଭାତ
ଝରେ ଶ୍ରାବଣ ଝୁରେ ଫଗୁଣ
ତମସାତୀର୍ଥ
ବ୍ୟାଘ୍ରନିନାଦ
ଅରଣ୍ୟ ଅତିଥି
ରକ୍ତର ରଙ୍ଗ
ଭୂମିତୃଷା
ସତ୍ୟମ୍‌ଏବ
ଜିଅନ୍ତା ଶବ
ବୃକ୍ଷ ଆମର ବନ୍ଧୁ
ଓଲଟପାଲଟ
ମିଷ୍ଟର ଖରସେଲ୍

**ଅନ୍ୟାନ୍ୟ:**

ଭଂଗାମୁନର ଭାଷା (ଗଳ୍ପ)
ସତ ହେଲେ ବି ଗପ (ଗଳ୍ପ)
ମୋହନ ମାନସ (ପ୍ରବନ୍ଧ)
ୱାଇଲ୍ଡ ମିରର୍





www.dakshyabooks.com

JANGALARA JAMANBANDI
Novel by
Radhamohana Mohapatra

Dakshya Books
(A unit of dakshya venture pvt. ltd.)

Cover Design : Subash Barik


